*BARSA, PAKSHI O SWAPNA* : Oriya Short Story collection by Supriya Pal. Nabodaya Scheme, Sahitya Akademi, 2006, Price : Rs. 80.



ISBN : 81-260-2456-9

Navodaya Scheme : Kolkata

ପ୍ରଥମ ପ୍ରକାଶ : ୨୦୦୬

ସାହିତ୍ୟ ଅକାଦେମି

ରବୀନ୍ଦ୍ର ଭବନ, ୩୫ ଫିରୋଜ ସାହ ରୋଡ୍, ନୂଆଦିଲ୍ଲୀ ୧୧୦୦୦୧

ବିକ୍ରୟ କେନ୍ଦ୍ର :'ସ୍ୱାତୀ', ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦୦୦୧

ଜୀବନ ତାରା, ୨୩ ଏ/୪୪ ଏକ୍ସ, ଡାଇମଣ୍ଡ ହାର୍ବର୍ ରୋଡ୍, କୋଲକାତା ୭୦୦୦୫୩

ଗୁଣ କମ୍ପ୍ଲେକ୍ସ, ମେନ୍ ବିଲ୍ଡିଂ, ୪୪୩(୩୦୪) ଆନ୍ନାସଲାଇ, ତେନାମପେଟ୍,

ଚେନ୍ନାଇ ୬୦୦୦୧୮

୧୭୨ ମୁମ୍ବାଇ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବାଇ ୪୦୦୦୧୪

ସେଣ୍ଟ୍ରାଲ କଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲ୍ଡିଂ, ଡ. ଆମ୍ବେଦକର ବିଧୀ,

ବାଙ୍ଗାଲୋର ୫୬୦୦୦୧

ମୂଲ୍ୟ : ୮୦ ଟଙ୍କା

ପ୍ରଚ୍ଛଦ : ରାଜେଶ ନାୟକ

ଅକ୍ଷର ବିନ୍ୟାସ :

ଜୟଗୁରୁ ପ୍ରିଣ୍ଟର୍ସ ଏଣ୍ଡ ପବ୍ଲିସର୍ସ, ୧୯୯, ବି. ବି. ଗାଙ୍ଗୁଲି ଷ୍ଟ୍ରୀଟ୍, କୋଲକାତା ୭୦୦୦୧୨

ମୁଦ୍ରଣ :

ଡି.ଜି. ଅଫସେଟ୍, ୯୬/ଏନ୍, ମହାରାଣୀ ଇନ୍ଦିରାଦେବୀ ରୋଡ୍, କୋଲକାତା ୭୦୦୦୬୦

# ଅନେକ ସ୍ୱପ୍ନର ଅନ୍ତରଂଗ ଅନ୍ୱେଷଣ

'ବର୍ଷା, ପକ୍ଷୀ ଓ ସ୍ୱପ୍ନ' ସାହିତ୍ୟ ଅକାଦେମିର 'ନବୋଦୟ' ଯୋଜନା ଆନୁକୂଲ୍ୟରେ ପ୍ରକାଶିତ ହେଉଥିବା ଆନନ୍ଦର ବିଷୟ । ଅଧ୍ୟାପିକା ସୁପ୍ରିୟା ପାଲ ଏହାର ସ୍ରଷ୍ଟା । ସୁପ୍ରିୟା ପାଲ ଓଡ଼ିଆ ସାହିତ୍ୟର ନବପ୍ରଜନ୍ମର ଶକ୍ତିଶାଳୀ କଥାଶିଳ୍ପୀ । ତାଙ୍କର ଗଳ୍ପଗୁଡ଼ିକ ଭବିଷ୍ୟତର ଅଜସ୍ର ସମ୍ଭାବନାରେ ପରିପୂର୍ଣ୍ଣ । ଜୀବନର ଅନେକ ରଂଗରାଗରେ ଏହି ଗଳ୍ପଗୁଡ଼ିକ ଜୀବନ୍ତ ।

ଗଳ୍ପ କଥନର ପରଂପରା ପ୍ରାଚୀନ ମାତ୍ର ପ୍ରତ୍ୟେକ ଯୁଗରେ ଗଳ୍ପ ଜଗତରେ ନୂଆ ସ୍ୱର ଶୁଭେ । ନୂଆ ଦିଗ ଓ ବାଗ ନେଇ ଗଳ୍ପ ରୂପ ପରିଗ୍ରହ କରେ । ଗଳ୍ପ କହିବା ଓ ଶୁଣିବା ଭିତରେ ସୀମିତ ନହୋଇ ଲିଖିତ ହୁଏ । ତାହା ଗୋଟାଏ ସମୟର ପ୍ରତିନିଧିତ୍ୱ କରିବା ସହିତ କାଳୋତ୍ତୀର୍ଣ୍ଣ ମଧ୍ୟ ହୋଇପାରେ । ସମୟର ଦ୍ରୁତ ପରିବର୍ତ୍ତନ ସହିତ ଗଳ୍ପର କଥାବସ୍ତୁରେ ନୂତନତା ଓ ଶୈଳୀରେ ଅନେକ କାରୁକାର୍ଯ୍ୟ ପରିଲକ୍ଷିତ ହୋଇଥାଏ । ପ୍ରାୟ ଦଶବର୍ଷ ଧରି ବିଭିନ୍ନ ଉଚ୍ଚାଙ୍ଗ ଓଡ଼ିଆ ପତ୍ରପତ୍ରିକାର ଅଂଗ ମଣ୍ଡନ କରିଥିବା ସୁପ୍ରିୟାଙ୍କ ଗଳ୍ପସ୍ୱରରେ ତାରୁଣ୍ୟର ସ୍ଫୁର୍ତ୍ତି ସହିତ ପ୍ରବୀଣର ଅଂଗୀକାରବୋଧ ଏକୀଭୂତ ହୋଇଥିବା ଅନୁଭବ କରିହୁଏ ।

ଏହି ସଂକଳନରେ ବାରଗୋଟି ଗଳ୍ପ ସ୍ଥାନିତ । ପ୍ରଥମ ଗଳ୍ପ 'ବର୍ଷା, ପକ୍ଷୀ ଓ ସ୍ୱପ୍ନ'ର ନାମ ଅନୁସାରେ ସଂକଳନଟିର ନାମକରଣ କରାଯାଇଛି । ଏହି ଗଳ୍ପ ୧୯୯୩ରେ ଦୈନିକ 'ସମ୍ବାଦ'ର ଗଳ୍ପ ପ୍ରତିଯୋଗିତାରେ ପ୍ରଥମ ହୋଇ ପୁରସ୍କୃତ ହୋଇଥିଲା । 'ବର୍ଷା, ପକ୍ଷୀ ଓ ସ୍ୱପ୍ନ'ରେ ଶିଶୁ ସ୍ୱପ୍ନର ମନସ୍ତତ୍ତ୍ୱ ଓ ପରିବେଶର କାରୁଣ୍ୟ ପାଠକକୁ ଚକିତ କରିଦିଏ । 'ସେଇ ଛାଇ'ରେ ସାଧାରଣ ପରିବାରର ବଧୂ ଗୌରୀ ସ୍ୱାମୀର ପ୍ରେମ ପାଇବାକୁ ବ୍ୟାକୁଳ । ସ୍ୱାମୀକୁ ବିଶ୍ୱାସ ସହିତ ନିଜର ଅଳଂକାର ଟଙ୍କା ସୁନା ଦେଇ ସାରିବା ପରେ ସେ ବିଶ୍ୱାସଘାତକତା ହିଁ ପାଇଛି । ମନ୍ଦିରର ପୂଜକ ମଧ୍ୟ ତାର ସରଳତାର ସୁଯୋଗ ନେଇଛନ୍ତି । ସ୍ୱାମୀ ସୋହାଗ ଆଉକୌଣସି ଦିନ ପାଇବାର ନାହିଁ ବୋଲି ଜାଣିବା ପରେ ସେ ମନକୁ ଦୃଢ଼ କରିଛି । ଲେଖିକାଙ୍କ ଭାଷାରେ ''ଗୌରୀ ବାରିପଟ କବାଟ ଖୋଲି ଦେଇ ପୂର୍ବାକାଶର ସୂର୍ଯ୍ୟୋଦୟକୁ ଦେଖିଲା । ଠିକ୍ କଲା ଏ ବସୁନ୍ଧରା ପରି ଧୈର୍ଯ୍ୟଶୀଳା ହେବା ସହ ସୂର୍ଯ୍ୟଙ୍କପରି ପ୍ରଖର ଓ ସତ୍ୟକାମୀ ହେବାକୁ ।'' ଏହାହିଁ ଲେଖିକାଙ୍କର ଜୀବନ ଦୃଷ୍ଟି, ଯାହା ଗୌରୀ ଚରିତ୍ରରେ ପ୍ରତିଫଳିତ । 'ଅନ୍ତରଂଗ ଅନ୍ୱେଷଣ'ର

ଆତ୍ମଭାଯା ରାଧାକାନ୍ତ ନିଜର ସ୍ୱତନ୍ତ୍ର ଦୃଷ୍ଟିଭଂଗୀ ନେଇ ଅସୁନ୍ଦରୀ କନ୍ୟା ବିବାହ କରିଛି ମାତ୍ର ସେ ଜାଣିପାରିଛି ଯେ ସୌନ୍ଦର୍ଯ୍ୟବିହୀନା ନନ୍ଦିତା ତାର ଉପଯୁକ୍ତ ପତ୍ନୀ ହୋଇପାରିନାହିଁ । ପାଳିତା ପକ୍ଷୀର ଦାୟିତ୍ୱ ବଂଧୁପତ୍ନୀକୁ ଦେଇ ସେ ଗଂଗୋତ୍ରୀ ଉଦ୍ଦେଶ୍ୟରେ ଯାତ୍ରା କରିଛି । 'ବାପା ଓ ଜହ୍ନମାମୁଁ ପ୍ରସଙ୍ଗ' ବୟସ୍କ ମଣିଷର ମନସ୍ତତ୍ତ୍ୱକୁ ଆଶ୍ରୟ କରିଛି । ବୟସ୍କ ବାପା ଜଣେ ଲେଖକ, ଯିଏ ଏକ ପୁରସ୍କାର ପାଇବାକୁ ଆଗ୍ରହୀ । ସେଥିପାଇଁ ପୁଅ ଅନେକ ପ୍ରୟାସ କରି ମେଡାଲ ଓ ମାନପତ୍ର ଯୋଗାଡ଼ କରନ୍ତି ମାତ୍ର ବାପା ତାହା ପାଇବା ପୂର୍ବରୁ ପରପାରିକୁ ଯାଇ ସାରିଥାଆନ୍ତି । 'ଗୋଧୂଳିର ରଂଗ' ରହନି ପ୍ରସିଦ୍ଧ ଲେଖିକା । ସିଏ ନିଜର ବ୍ୟକ୍ତିତ୍ୱ ବଳରେ ଜେମ୍ସଙ୍କ ଭଳି ଧନୀ ଅଥଚ ବିପଥଗାମୀ ସ୍ୱାମୀଙ୍କୁ ଆୟତ୍ତ କରିଛନ୍ତି । କୌଣସ ଏକ ନାରୀର ପରିବାର ଯେ ତାଙ୍କ ପୁସ୍ତକ ପଢ଼ିବାପରେ ଭାଙ୍ଗି ଯାଇଛି ଓ ଏଥିପାଇଁ ସେ ମହିଳା ତାଙ୍କଠାରୁ ଭରଣ ପୋଷଣ ଦାବି କରୁଛନ୍ତି । ଏହା ଜାଣି ସେ ବିବ୍ରତ । ମାତ୍ର ପରିଣତିରେ ଜଣାପଡୁଛି ଯେ ପଚିଶିବର୍ଷ ତଳୁ ପାଗଳୀ ହୋଇଥିବା ସେହି ନାରୀ ଲେଖିକାମାନଙ୍କୁ ଦେଖି ପ୍ରତିଶୋଧପରାୟଣା ହୋଇଥାଏ ଓ ଅନେକ ଲେଖକ ଲେଖିକା ତା ଆକ୍ରୋଶର ଶିକାର ହୋଇଛନ୍ତି । 'ମାୟାମୃଗ' ତଥାକଥିତ ଉଚ୍ଚମନ୍ୟତାର ବୀଭତ୍ସରୂପ ପାଠକ ଆଗରେ ଟେକିଧରେ । ନିଜର ଶାଢ଼ି ଗହଣା ଘର ଓ ସ୍ୱାମୀ ସୋହାଗକୁ ନେଇ ଅଯଥା ବଡ଼ିମା ଦେଖାଉଥିବା ଉର୍ବଶୀର ପ୍ରକୃତ ରୂପ ସହପାଠିନୀ ଜୋସ୍ନା ଆଗରେ ଉନ୍ମୋଚିତ ହୋଇଯାଏ । ଜୋସ୍ନା ଓ ତାର ଅଫିସର ସ୍ୱାମୀଙ୍କ ମନରୁ ଅଯଥା ଅସନ୍ତୋଷ ଦୂର ହୋଇଯାଏ । 'ନିଶୀଥର ସୂର୍ଯ୍ୟ' ପ୍ରତିଶୋଧର ନୂତନ ସ୍ୱରୂପ ଉଦ୍‌ଘାଟନ କରିଛି । ଦିନେ ସତ୍ୟେନ୍ ହାଜାରିକା ଲେଖିକାଙ୍କ ଅସହାୟତାକୁ ଅପମାନିତ କରି ଚାଲେ । ଏବେ ସେ ସତ୍ୟେନକୁ ଲକ୍ଷେ ଟଙ୍କା ଦେଇ ତାର ଅପରେସନ କରିବାକୁ ଚାହାନ୍ତି ମାତ୍ର ଅପରେସନ ପରେ ତାକୁ ନିଜେ ଦେଖିବାକୁ ନଯାଇ ଡ୍ରାଇଭରକୁ ନିର୍ଦ୍ଦେଶ ଦିଅନ୍ତି । 'ସୂର୍ଯ୍ୟୋଦୟର ଲଗ୍ନ'ର ଆଧୁନିକା ତରୁଣୀ ସିମି ନିଜ ପାଇଁ ବର ପସନ୍ଦ କରାଇବାକୁ ଯାଇଛି । ସହରରେ ରାସ୍ତା ଅବରୋଧ ଇତ୍ୟାଦି ଅଘଟଣ ପାଇଁ ସମିତ ଘରେ ରହିଛି ଓ ତାର ଭଦ୍ରତାରେ ମୁଗ୍ଧ ହୋଇ ନିଜର ସମ୍ମତି ଖୁବ୍ କଳାତ୍ମକ ଭାବରେ ପ୍ରକାଶ କରିଛି । ସନ୍ତାନହୀନା ପତ୍ନୀପାଖରେ ମାତୃହରା ଶିଶୁଟିକୁ ପହଞ୍ଚାଇ 'ଚୋର' ନାମରେ ପରିଚିତ ବ୍ୟକ୍ତିର ମନସ୍ତତ୍ତ୍ୱ 'ଗୋଟିଏ ଚୋରର କାହାଣୀ'ରେ କୁହାଯାଇଛି । ପିଅନ ପୁଅ ସୌମ୍ୟକାନ୍ତ ଓ ଜମିଦାର ପୁଅ ଦେବକାନ୍ତଙ୍କ ଜୀବନ ବିପରୀତମୁଖୀ । ମାତ୍ର ଆତ୍ମୀୟତାର ସ୍ପର୍ଶରେ ଉଭୟଙ୍କ ଭିତରେ ଥିବା ଅଦୃଶ୍ୟପ୍ରାଚୀର ଭାଂଗିଯାଇଛି ଓ ଦେବକାନ୍ତ ଦୁରାରୋଗ୍ୟ ବ୍ଲଡ୍ କ୍ୟାନସର ଭୋଗୁଥିବା ସୌମ୍ୟକାନ୍ତଙ୍କ ପ୍ରତିଷ୍ଠିତ ସ୍କୁଲର ଦାୟିତ୍ୱ ନେବାକୁ ରାଜି

ହୋଇଛନ୍ତି । 'ଅବବାହିକା'ରେ ଫାଦର ରିଡଙ୍କ ଆଶ୍ରମରେ ପାଳିତା ଆର୍ଯ୍ୟା ନିଜର ଚାକିରି ଓ ପରିବେଶରେ ସନ୍ତୁଷ୍ଟ ନୁହେଁ । ଡାକ୍ତରଖାନାରେ ରୋଗୀ ସେବାକରିବାର ଆଗ୍ରହ ନେଇ ସେ ହୀରା ବ୍ୟବସାୟୀ ମି. ଜିନ୍ସନ୍‌ଙ୍କ ସେବା କରିବାର ସୁଯୋଗ ପାଇଛି । ତାଙ୍କର ଲୋମହର୍ଷଣକାରୀ ଜୀବନର କାହାଣୀ ଲିପିବଦ୍ଧ କରୁ କରୁ ସେ ପାଲଟି ଯାଇଛି ସେ କାହାଣୀର ଅନ୍ତିମ ଅଧ୍ୟାୟର ନାୟିକା । 'ମୁହିଁ'ରେ ତିନୋଟି ବୃଦ୍ଧଙ୍କର ଅତୃପ୍ତ ଆତ୍ମା ନିଜ ନିଜ ଜୀବନର ଯନ୍ତ୍ରଣା, ସନ୍ତାନମାନଙ୍କର ଅବବେକିତା ଓ ସ୍ୱାର୍ଥପରତାର କଥା କୁହନ୍ତି । ଏହା ପୁରୁଷପୁରୁଷର ବ୍ୟବଧାନ (generation gap)ର ଯନ୍ତ୍ରଣାଦାୟକ ପରିଣତିର କଥାକହେ ।

ଏ ସଂକଳନର ଅଧିକାଂଶ ଗଳ୍ପ ପ୍ରଥମ ପୁରୁଷରେ ରଚିତ । ଲେଖିକା ବିଦେଶର ପୃଷ୍ଠଭୂମିରେ ମଧ ଗଳ୍ପ ଲେଖିବାର ପ୍ରୟାସ କରିଛନ୍ତି । ବୟସର ଅସହାୟତା, ଶିଶୁର ମନସ୍ତତ୍ତ୍ୱ, ଭ୍ରୂଣ, ଦରିଦ୍ର ଓ ଅସହାୟର ଚିନ୍ତା ସହିତ ଧନୀର ଆଡ଼ମ୍ବର, ମିଥ୍ୟା ଆଡ଼ମ୍ବରପୂର୍ଣ୍ଣ ଜୀବନର ଅନ୍ତସାରଶୂନ୍ୟତା ଇତ୍ୟାଦିକୁ ଖୁବ୍ ସନ୍ତର୍ପଣରେ ରୂପ ଦେଇଛନ୍ତି । ତାଙ୍କ କଲମରୁ ଓଡ଼ିଆ ସାହିତ୍ୟ ଅନେକ ଗୁଣାତ୍ମକ ଗଳ୍ପ ଆଶା କରୁଛି । ଶ୍ରଦ୍ଧେୟା ସୁପ୍ରିୟା ମୋର ଛାତ୍ରୀ, ତାଙ୍କର ସାହିତ୍ୟ ପ୍ରୀତି ତଥା ସାହିତ୍ୟ ସୃଷ୍ଟିର ଦକ୍ଷତା ସହିତ ମୁଁ ପରିଚିତ । ଏ ସଂକଳନର ମୁଖବନ୍ଧ ଲେଖି ମୁଁ ଆନନ୍ଦିତ ଓ ପାଠକ ଭାବରେ ତାଙ୍କଠାରୁ ଭଲ ଗପ ପଢ଼ିବାର ଆଶା ମୋର ରହିଛି ।

ସଂଘମିତ୍ରା ମିଶ୍ର

## ସୂଚୀପତ୍ର

# ବର୍ଷା, ପକ୍ଷୀ ଓ ସ୍ୱପ୍ନ

ସ୍ୱପ୍ନ ଆଜିକୁ ଦୁଇଦିନ ହେଲା ଚାଲିଗଲାଣି । ଦୁଇଦିନ ନୁହେଁ, ବରଂ ଲାଗୁଛି ଦୁଇଶତାବ୍ଦୀ ହେଲା ସ୍ୱପ୍ନ ଯେମିତି ମୋ ଅନ୍ତରରୁ ମୋ କୋଳରୁ ବିଚ୍ଛିନ୍ନ ହୋଇଯାଇଛି । ସ୍ୱପ୍ନ ଖାଲି ଚାଲିଯାଇନି ବରଂ ମୋ ଜୀବନର ସବୁଜ ଉପତ୍ୟକାରୁ ସବୁ ସବୁଜିମା ସହିତ ଫୁଲଫଗୁଣକୁ ଛଡ଼େଇ ନେଇଛି । ମୋ ଜୀବନର ବେଳାଭୂମିରୁ ତା'ର ପାଦ ଚିହ୍ନକୁ ସବୁଦିନ ପାଇଁ ଲିଭେଇ ଦେଇଛି । ଚାଲିଗଲାବେଳେ ମୋ ମନରୁ ମୋ ହୃଦୟରୁ ଓ ମୋ ସତ୍ତାରୁ ସବୁ ସ୍ୱପ୍ନକୁ ଯେମିତି ଜବରଦସ୍ତି କରି ପୋଛି ନେଇଛି । ସ୍ୱପ୍ନ ବିନା ଏ ଘର କେମିତି ଗୋଟେ ଖାଁ-ଖାଁ ଲାଗୁଛି । ଖାଲି ତ ଏ ଘର ନୁହେଁ, ମୋ ଭିତରଟା ରିକ୍ତ ହୋଇଯାଇଛି । ହୃଦୟ ଅସୀମ ବ୍ୟାକୁଳତାରେ ହାହାକାର କରିଉଠୁଛି । ଆଃ... ସ୍ୱପ୍ନ ଯଦି ଫେରିଆସନ୍ତା !

ସ୍ୱପ୍ନ ଆସିଥିଲା ଚାରିବର୍ଷ ତଳେ ଏଇ ଘରକୁ କଳିଟିଏ ହୋଇ, ମୋ ମନରେ ତା'ର ଲୁକ୍କାୟିତ ସୌରଭକୁ ମହକାଇ ଦେଇ । ଏକୋଇଶା ବେଳକୁ ତା'ର ନାମକରଣ ସମୟରେ ରୀତାର ଓ ମୋର ସାମାନ୍ୟ ମନୋମାଳିନ୍ୟ ହୋଇଥିଲା । ରୀତାର ସେ ବେଖାପ୍ ଇଂରାଜୀ ନାଁଟା ମୋର ଜମା ପସନ୍ଦ ହୋଇନଥିଲା । ପୁଣି ସ୍ୱପ୍ନର ଜନ୍ମ ପୂର୍ବରୁ ତାକୁ ପୁଅ ଜାମାପ୍ୟାଣ୍ଟ ପିନ୍ଧି ମୋ କୋଳରେ ଶୋଇଥିବାର ସ୍ୱପ୍ନ ଦେଖିଥିଲି ।

ମୋର ସେଦିନରୁ ଇଚ୍ଛା ଥିଲା, ଯଦି ପୁଅ ହୁଏ ତେବେ ତା' ନାଁ ସ୍ୱପ୍ନେଶ ଦେବି । ଶ୍ୱଶୁର ମଧ୍ୟ ଏ ନାଁକୁ ପସନ୍ଦ କରିଥିଲେ । ତେଣୁ ସ୍ୱପ୍ନେଶ ନାଁ ହିଁ ରହିଲା । ତାକୁ ସ୍ନେହରେ ସ୍ୱପ୍ନ ବୋଲି ଡାକୁଥିଲି । ଗୋଲ୍ ମୁହଁରେ ଢଳଢଳ ଆଖି ଦୁଇଟି ଦେଖିବାବେଳେ ମୋତେ ଲାଗୁଥିଲା, ଆଖି ଦୁଇଟି ନୁହେଁ ବରଂ ବହୁ ସ୍ୱପ୍ନର ଗନ୍ତାଘରଟିଏ । ସେଇଠି କେବଳ ଖାଲି ସ୍ୱପ୍ନ ଆଉ ଅସୀମ ସ୍ୱପ୍ନ ଭରି ରହିଛି । ଖାଲି ସ୍ୱପ୍ନ ଆଉ ସ୍ୱପ୍ନର ଯାଦୁକରୀ ସମ୍ମୋହିତ ସ୍ପର୍ଶ ।

ପୁଅ ପ୍ରତି ମୋର ସ୍ନେହ ଓ 'ସ୍ୱପ୍ନ' ବୋଲି ଡାକିବାଟା ରୀତା ଦେହରେ ମୋଟେ ଯାଉନଥିଲା । ସ୍ୱପ୍ନକୁ ତିନିବର୍ଷ ହେଲା ବେଳକୁ ରୀତା ପ୍ରସ୍ତାବ ଦେଲା ଯେ ସ୍ୱପ୍ନ ଏଥର ନର୍ସରୀ ଯିବ ।

ମୁଁ ପ୍ରତିବାଦ କଲି- 'ଏତେ ଟିକି ପିଲା, ଯାହାର ଖେଳବୁଲ ଓ ଖାଇବା ଶୋଇବା ଏକମାତ୍ର କାମ । ସିଏ କ'ଣ ପାଠ ଏବେଠାରୁ ପଢ଼ିବ ? ଏଇ ବୟସରେ ତା' ମୁଣ୍ଡରେ ପାଠପଢ଼ା ଚାପ  ଦେବା ଠିକ୍ ନୁହେଁ । ବାଧ୍ୟ କରି ଅନିଚ୍ଛା ସତ୍ତ୍ୱେ କାମ କରାଇଲେ ଶିଶୁର ଉପଯୁକ୍ତ ମାନସିକ ବିକାଶ ହୋଇପାରିବ ନାହିଁ । ତେଣୁ...'

ମୋ କଥାକୁ ପୁରା କରିବା ପୂର୍ବରୁ ରୀତା ଗର୍ଜି ଉଠିଲା- 'ଦେଖ ମୁଁ ତୁମ କ୍ଲାସ୍‌ର ବାଧ୍ୟ ଛାତ୍ରୀ ନୁହେଁ ଯେ ଯାହା କହିବ ବା ପଢ଼ାଇବ ସବୁ ଶୁଣିବି । ମୁଁ ତୁମ ପତ୍ନୀ । ମୁଁ ପୁଅର ଭବିଷ୍ୟତ କଥା ଦେଖିବି । ଆଉ ତୁମ ଭଳି ତାକୁ ଅଧ୍ୟାପକଟେ କରି ଗଢ଼ି ତୋଳିବି ବୋଲି କ'ଣ ତୁମେ ଆଶା କରୁଛ ?'

ଗୀତା ଠାରୁ ଆକ୍ଷେପ ଓ ଭର୍ତ୍ସନା ଶୁଣି ମୁଁ ହତବମ୍ବ ହୋଇପଡ଼ିଲି । ମୁଁ ସାମାନ୍ୟ ଅଧ୍ୟାପକଟିଏ ବୋଲି ବିବାହ ପୂର୍ବରୁ ଗୀତା କ'ଣ ଜାଣି ନଥିଲା ? ତେବେ ବାହା ହୋଇସାରି ମୋତେ ଏମିତି ଅପମାନ ଦେବାର କାରଣ ବା କ'ଣ ହୋଇପାରେ ? କଥାକୁ ବଢ଼ାଇବା ଅନୁଚିତ୍ ମନେ କରି କଲେଜ ଚାଲିଗଲି । କ୍ଲାସ୍ ସାରି ଚାରିଟା ବେଳେ ଘରେ ପହଞ୍ଚି ଦେଖେ ତ ଗୀତା ନାହିଁ । ଚାକରାଣୀ ସ୍ୱପ୍ନକୁ ଖେଳାଉଛି । ଚାକରାଣୀଠାରୁ ଜାଣିବାକୁ ପାଇଲି ଯେ ଗୀତା ବଜାରକୁ ଯାଇଛି । ହଠାତ୍ ଏମିତି ଏକୁଟିଆ ଗୀତାର ବଜାର ଯିବାରେ କ'ଣ ଦରକାର ପଡ଼ିଲା ସେକଥା ବୁଝିପାରିଲିନି ।

ସନ୍ଧ୍ୟା ୭ଟାରେ ଗୀତା ଫେରିଲା । ସାଙ୍ଗରେ ଗୁଡ଼ାଏ ପ୍ୟାକେଟ୍ । ସେଥିରେ ସ୍କୁଲ୍‌ବ୍ୟାଗ୍, ୱାଟରେ ବଟଲ, କିଛି ଇଂରାଜୀ ବହି, ଡ୍ରଇଂସେଟ୍, ଡଟ୍ ଓ ଟିଫିନ୍ ବକ୍ସ । ଆଉ ମଧ ସ୍କୁଲ ୟୁନିଫର୍ମ, ଜୋତା, ମୋଜା ଓ ଟାଇ । ଏସବୁ ଦେଖି ମୋ ମନ ହାହାକାର କରି ଉଠିଲା । ସ୍ୱପ୍ନ ଏଇ ବୟସରୁ କଣ୍ଢେଇଖେଳ ଛାଡ଼ି ସ୍କୁଲବ୍ୟାଗ୍ ଓ ୱାଟର ବଟଲ୍ ଧରି ସ୍କୁଲ୍ ଯିବ !

ଯିଏ ହାତରେ ଖାଇ ଜାଣିନି ତା' ପାଇଁ ଆସିଛି ଟିଫିନ୍ ବକ୍ସ । ହାତରେ ଜାମାପ୍ୟାଣ୍ଟ ପିନ୍ଧି ପାରେନି ସ୍ୱପ୍ନ । ଏକ ଲାଗିଲେ ଡାକ ପକାଏ ଜାମା ପ୍ୟାଣ୍ଟ ବୋତାମ ଖୋଲିବାକୁ ସ୍ୱପ୍ନ । ଅଥଚ ସେଇ ପିଲା ୭/୮ଘଣ୍ଟା ସ୍କୁଲ୍‌ରେ କେମିତି ରହିବ ? ଯେଉଁ ଆଙ୍ଗୁଳିରେ ଫୁଲ ତୋଳୁଥିଲା, ପ୍ରଜାପତି ଧରୁଥିଲା- ସେଇ ଆଙ୍ଗୁଳିରେ ଡଟ୍ ଧରିବ ! ଯଦି ପାଠ ନ ଆସିବ ମାଡ଼ ବି ଖାଇବ । ଆଃ-ନିଜ ଭିତରେ ଗୋଟାଏ ନିଷ୍ଠୁର ଯନ୍ତ୍ରଣା ଅନୁଭବ କଲି । ମୋ ପାଇଁ ନୁହେଁ, ସ୍ୱପ୍ନ ପାଇଁ- ମୋ ପୁଅ ପାଇଁ ।

ଗୀତା ମୋ ନୀରବତା ଦେଖି ପଚାରିଲା - 'କେମିତି ହୋଇଛି ?'

'ଭଲ' - ସଂକ୍ଷିପ୍ତ ଉତ୍ତରଟେ ଦେଇ ଗୀତା ସାମ୍ନାରୁ ଉଠି ଆସିଲି ।

ଗୋଟାଏ ସପ୍ତାହ ମଧ୍ୟରେ ଘର ଠାରୁ ଦୂରରେ ଥିବା 'ଡ୍ରିମ୍‌ଲ୍ୟାଣ୍ଡ' ନର୍ସରୀରେ ସ୍ୱପ୍ନର ନାଁ ଲେଖାଇଦେଲା ଗୀତା । ପ୍ରଥମେ ପ୍ରଥମେ ସ୍ୱପ୍ନକୁ ଦେଖିଲି ନୂଆ ସାଙ୍ଗ ମେଳରେ ଖୁବ୍ ଖୁସି ଅଛି । ଯା' ହେଉ ଅନ୍ତତଃ ମୋତେ ଖୁବ୍ ଖୁସି ଲାଗିଲା ।

ଗୀତା କୁହେ- 'ବୁଝିଲ ଅଧ୍ୟାପକ ସାହେବ ! ତୁମ ଥିଓରୀ ସବୁ ଫେଲ୍ ମାରିଗଲା । ଲୋକେ ଚନ୍ଦ୍ରରେ ଘର କରିବାକୁ ବସିଲେଣି । ଆଉ ତୁମର ଯେଉଁ ବୁଦ୍ଧି ନାଁ ? ଏବେଠାରୁ ଯଦି ତାକୁ ପାଠ ନ ପଢ଼ାଇବ ତେବେ ପବ୍ଲିକ୍ ସ୍କୁଲ୍‌ରେ ଭର୍ତ୍ତି କରାଇଲା ବେଳେ କ୍ଲାସରେ କି ପୋଜିସନ୍ ରହିବ କୁହ ତ ? କ୍ଲାସରେ ତ ଫାଷ୍ଟ ହେବ । ଫାଷ୍ଟ ନ ହେଲେ ମୋ ମୁହଁ ତଳକୁ ହୋଇଯିବ ।'

ଗୀତା କଥା ଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା । ସାମାନ୍ୟ ତିନିବର୍ଷର ଶିଶୁର ପୁଣି ପୋଜିସନ୍ ଦରକାର କ୍ଲାସ୍‌ରେ । ଆଉ ତା'ର ଫାଷ୍ଟ ହେବା ନିହାତି ଦରକାର । ତା'ର ଯେତିକି ଦରକାର ନୁହେଁ, ମା'ର ତା'ଠାରୁ ଅଧିକା ଦରକାର । କାରଣ ପୁଅର କ୍ଲାସରେ ଫାଷ୍ଟ ହେବା ଘଟଣା ମା'କୁ ସମ୍ମାନ ଆଣିଦେବ ସମାଜରେ । ଏଇଟା ସତରେ କି ଯୁଗ ? ଗତି ପୁଣି କୁଆଡ଼େ ? ଗତି, ପ୍ରଗତି, ଦୁର୍ଗତି ନାଁ ଅଧୋଗତି - ଏମାନଙ୍କ ମଧ୍ୟରୁ କାହାରିକୁ ବାଛି ପାରୁନଥିଲି । ଯୁଗ କାହାସହିତ ତାଳ ଦେଇ ଚାଲୁଛି ସେ କଥା ବୁଝି ବି ପାରୁ ନଥିଲି ।

ସ୍ୱପ୍ନକୁ ନର୍ସରୀରୁ ସବୁଦିନ ନେବା ଆଣିବା କରୁଥିଲି । କିଛି ଅସୁବିଧାବଶତଃ ରୀତା ବେଳେବେଳେ ସ୍ୱପ୍ନକୁ ନେଇଆସେ । ହଠାତ୍ ମାସେ/ଦୁଇମାସ ପରେ ଆବିଷ୍କାର କରି ବସିଲି ଯେ ସ୍ୱପ୍ନର ଆଦ୍ୟ ଖୁସି କେମିତି ଗୋଟେ ଦୁଃଖ ଓ ଭୟରେ ପରିଣତ ହୋଇଯାଇଛି । ରୀତାର ଡରରେ ସେ ବାଧ ହୋଇ ନର୍ସରୀ ଯାଉଛି, ହେଲେ ଯିବାରେ ମୋଟେ ଇଚ୍ଛା କିମ୍ବା ଆଗ୍ରହ ନାହିଁ ।

ଦିନେ ସ୍ୱପ୍ନ ପଚାରିଲା - 'ପାପା ! ତୁମେ ମା'କୁ କୁହ ଯେ ମୁଁ ସ୍କୁଲ୍ ଯିବିନି । ମୋତେ ଭଲ ଲାଗୁନି । କେତେଦିନ ହେଲା ବଗିଚାରେ କଣ୍ଢେଇ ଖେଳିନି । ଏଥର ବଗିଚାରେ ଫୁଲ ଓ ପ୍ରଜାପତି ଧରି ଖେଳିବି । କୁହ ମା'କୁ କହିବ ତ ?'

ସ୍ୱପ୍ନର ଏ ଅନୁରୋଧ ଓ ପ୍ରଶ୍ନରେ ମୁଁ ବିବ୍ରତ ହୋଇପଡ଼ିଲି । ଯଦି ଏକଥା ରୀତାକୁ କୁହେ ତେବେ ତାକୁ ଆହତ ନାଗୁଣୀରେ ପରିଣତ ହେବାକୁ ମୁହୂର୍ତ୍ତେ ମାତ୍ର ସମୟ ଲାଗିବ ନାହିଁ । ସ୍ୱପ୍ନ ପୁଣି ପଚାରିଲା- 'କୁହ ବାପା ! କହିବ ତ ?' ଏଁ ହଁ ହଁ'- କହିବି' ନିଜର ପ୍ରତିଶ୍ରୁତି ଉପରେ ମୋର ବି ଆସ୍ଥା ନଥିଲା ।

ସ୍ୱପ୍ନର ଏ ଅନୁରୋଧକୁ ରୀତା ସାମ୍ନାରେ ଉପସ୍ଥାପିତ କରିଲି । ରୀତାର କପାଳ କୁଞ୍ଚିତ ହୋଇଗଲା । ମୋତେ ଆପାଦମସ୍ତକ ନିରୀକ୍ଷଣ କରିବା ପରେ କହିଲା- 'ତୁମେ ପିଲାଟାକୁ ନଷ୍ଟ କରି ଦେଲଣି । ଶେଷରେ ଏମିତି ଗୋଟାଏ ଦୁସ୍ଥ ଅଧ୍ୟାପକଟିଏ କରିବ ବୋଲି ଆଶା କରିଛ, ନାଇଁ ? ମୁଁ କିନ୍ତୁ ସେକଥା କରାଇଦେବିନି ।'

ବେଶି ଆଉ କିଛି କହିପାରିବା ଭଳି କିମ୍ବା ସ୍ୱପ୍ନ ସପକ୍ଷରେ ଯାହା କହିବି ବୋଲି ଭାବିଥିଲା ସେକଥା ରୀତା କୁହାଇ ନ ଦେଇ ମୋ ପାଖରୁ ପାଦ ଦୁମ୍‌ଦ୍ରୁମ୍ କରି ଚାଲିଗଲା । ରୀତାର ପାଦ ଦୁମ୍‌ଦ୍ରୁମ୍‌ରୁ ଝଡ଼ଟିଏ ତା' ଚାଲିରେ ଆସିଗଲା । ହେଲେ ସ୍ୱପ୍ନ ଯେମିତି ସେ ଝଡ଼ର ଶିକାର ନ ହେଉ ।

ସ୍ୱପ୍ନତ ବିଚାରା ଧରଣୀର କୃଷ୍ଣସାର । ସେ ଝଡ଼ର ଈଗଲ୍ ନୁହେଁ । ଗୋଟାଏ ଅଶାନ୍ତ ଝଡ଼ର ଈଗଲ୍ ଗର୍ଭରୁ ଜନ୍ମ ନେଇଥିଲେ ବି ସେ ସବୁଜ ଧରଣୀର ନିରୀହ କୃଷ୍ଣସାର ଶାବକଟେ । ହେ ଭଗବାନ୍- ସ୍ୱପ୍ନ ରୀତା କ୍ରୋଧର ଶୀକାର ନ ହେଉ । ଯା'ହେଉ ସେଦିନ ରୀତା ସେମିତି କିଛି ଦୁର୍ଘଟଣା ଘଟାଇ ନଥିଲା ।

ସେଦିନ ସିନା ଦୁର୍ଘଟଣା ଘଟି ନଥିଲା । ତାର ତିନିଦିନ ପରେ ହୋମ ଟାସ୍କ କଲାବେଳେ ସ୍ୱପ୍ନକୁ ନିଦ ଲାଗିଲା । ବହି ଉପରେ ମୁଣ୍ଡ ଲଦି କେତେବେଳେ ଶୋଇପଡ଼ିଛି ଯେ ସେ ନିଜେ ବି ଜାଣେନି ।

ରୀତା ସ୍ୱପ୍ନକୁ ଶୋଇଥିବାର ଦେଖି ରାଗିଯାଇ ସ୍ୱପ୍ନର ଗୋଟାଏ ହାତକୁ ଧରି ନିଷ୍ଠୁର ଭାବରେ ଝିଙ୍କି ଉଠାଇ ଦେଲା । 'ଗଧ, ଅଳସୁଆ । ଏଇଟାର ମୋଟେ ପାଠ ହେବନି । ମୁହଁ ଧୋଇ ପାଠପଢ଼ ।'

'ନାଇଁ ମା' ! ମୁଁ ପଢ଼ିବିନି । ମୋତେ ଜ୍ୱର ଲାଗୁଛି ।' ନିରୀହ ସ୍ୱରରେ ଉତ୍ତର ଦେଲା ସ୍ୱପ୍ନ ।

'ଦେଖ୍ ମୋତେ ଏମିତି ଢଙ୍ଗ ମୋଟେ ଭଲ ଲାଗେନି । ସିଧା ପଢ଼ି ବସ । ପାଠ

ନପଢ଼ିବା ପାଇଁ ଦିନକୁ ଦିନ ନୂଆ ନୂଆ ବାହାନା ବାହାରୁଛି ।' ରୀତାର ଚଡ଼ାଗଳାରୁ ଶାସନ କରିବାର ଦାୟିତ୍ୱ ଯେ ଏକା ତା'ର ଏକଥା ସ୍ପଷ୍ଟ ଜଣା ପଡୁଥିଲା ।

ରୀତାକୁ କିଛି ନ କହି ସ୍ୱପ୍ନର ଦେହରେ ହାତ ରଖିଲି । ସତରେ ତ ଜ୍ୱର । ସ୍ୱପ୍ନକୁ କୋଳରେ ଧରିଲି । ମୋ ମୁହଁକୁ ଚାହିଁ ନିଦୁଆ ହସଟେ ହସି ଆଖିବନ୍ଦ କରିଲା । ମୋ ବେକ ଚାରିପଟେ ଦୁଇ କୋମଳ ବାହୁକୁ ଛନ୍ଦି ଦେଲା । ତା' ଜ୍ୱର ମୁହଁରେ ବି ନିର୍ଭୟ ଆଶ୍ରୟ ପାଇଯିବାର ଚରମ ତୃପ୍ତିର ଲକ୍ଷଣ ଭରିଗଲା ।

ରୀତା ରାଗିଲା- 'ତୁମେ ଛୁଆଟାକୁ ନଷ୍ଟ କରିଦେଉଛ । ପାଠ ନ ପଢ଼ିବାର ବାହାନା କରୁଛି । ଚାରିଟା ବେଳ ସାରା ଖେଳକୁଦରେ ସମୟ ନଷ୍ଟ କଲା । ଏବେ... ।'

'ଚୁପ୍‌କର । ସବୁକଥାର ସୀମା ଥାଏ । ଏଇଟା ତା'ର ଖେଳିବା ବୟସ ଆଉ ଚାରିଟା ବେଳ ତା'ର ଖେଳିବା ସମୟ । ତା' ଦେହ ଖରାପ ବେଳେ ତୁମେ ତା'ର ମାନସିକ ଶାନ୍ତି ନଷ୍ଟ କରନା ।' ଚଡ଼ାଗଳାରେ ଉତ୍ତର ଦେଲି ।

ରୀତା ଚୁପ୍ ରହିଲା । ସ୍ୱପ୍ନ ରାତିରେ କିଛି ବି ଛୁଇଁଲାନି । ମୋତେ ବି ଇଚ୍ଛା ଲାଗିଲାନି ଖାଇବାକୁ । ସାରାରାତି ସ୍ୱପ୍ନକୁ କୋଳରେ ଧରି ଶୋଇଗଲି । ସିଏ ବି କେଡ଼େ ଶାନ୍ତିରେ ଶୋଇଗଲା । ମା' କୋଳକୁ ଯିବାପାଇଁ ସାମାନ୍ୟତମ ଇଚ୍ଛା ବି ପ୍ରକାଶ କଲାନି ।

ଦୁଇ/ତିନି ଦିନ ପରେ ସ୍ୱପ୍ନ ଭଲ ହୋଇଗଲା । ପୁଣି ନର୍ସରୀକୁ ଗଲା ଦେହରେ ୟୁନିଫର୍ମ, ଟାଇ, ପାଦରେ ଜୋତାମୋଜା, ପିଠିରେ ବ୍ୟାଗ୍, ହାତରେ ୱାଟରବଟଲ୍ ଧରି ଅନିଚ୍ଛା ସତ୍ତ୍ୱେ । କେବଳ ରୀତାର ଭୟରେ । ନହେଲେ ରୀତାଠାରୁ ମାଡ଼ ବି ଖାଇପାରେ ।

ଏ ମଧ୍ୟରେ ପୁରା ମାସଟିଏ ବିତି ଯାଇଥିଲା । ଦିନେ ରୀତା ଯାଇଥିଲା ସ୍ୱପ୍ନକୁ ସ୍କୁଲରୁ ଆଣିବାକୁ । ଠିକ୍ ଯଦି ଛୁଟି ପରେ ପରେ ଘରକୁ ଫେରିଥାନ୍ତା, ତେବେ ଅଚାନକ ବର୍ଷାର ସମ୍ମୁଖୀନ ହେବାକୁ ପଡ଼ି ନଥାନ୍ତା । ଅନ୍ୟ ପ୍ୟାରେଣ୍ଟଙ୍କ ସହିତ କଥାବାର୍ତ୍ତା ହେଉ ହେଉ ଅଧଘଣ୍ଟା ଡେରି ହୋଇଗଲା । ରିକ୍ସାରେ ଆସିବା ସମୟରେ ଘରଦ୍ୱାର, ଗଛବିହୀନ ରାସ୍ତାରେ ଦୁହେଁ ବର୍ଷାରେ ପ୍ରଚଣ୍ଡ ଭାବେ ଭିଜିଯାଇ ଘରେ ପହଞ୍ଚିଲେ ।

ସେଦିନ ରାତିରେ ସ୍ୱପ୍ନର ପ୍ରବଳ ମୁଣ୍ଡବିନ୍ଧା ଆରମ୍ଭ ହୋଇ ଦେହରେ ଅଳ୍ପ ଅଳ୍ପ ଜ୍ୱର ଆସିଲା । ତା'ପର ଦିନସାରା ୧୦୫ ଡିଗ୍ରୀ ଜ୍ୱର । ସ୍ୱପ୍ନ ଆଖି ଫିଟାଇଲା ନାହିଁ । ଡାକ୍ତର ଆସିଲେ ଓ ଦେଖିଲେ । ଠିକ୍ ସମୟରେ ସ୍ୱପ୍ନକୁ ଔଷଧ ଦିଆଗଲା । ତୃତୀୟଦିନ ଟିକେ ଜ୍ୱର ଛାଡ଼ିଗଲା । କଥାବାର୍ତ୍ତା କଲା । ଉଠିକରି ଝରକାବାଟେ ଫୁଲବଗିଚା, ପ୍ରଜାପତି, ଚଢ଼େଇ ଇତ୍ୟାଦି ଦେଖି ଖୁବ୍ ଖୁସି ହେଲା ।

କିନ୍ତୁ ଚତୁର୍ଥଦିନ ଠାରୁ ପୁଣି ଦେହରେ ଜ୍ୱର ରହିଲା । ସ୍ୱପ୍ନର ଅସୁସ୍ଥତା କ୍ରମଶଃ ବଢ଼ିବାକୁ ଲାଗିଲା ଯାହାକଲେ ବି ଭଲ ହେବାର ଲକ୍ଷଣ ଦେଖାଗଲାନି । ଶେଷରେ ଡାକ୍ତର କହିଲେ ନିମୋନିଆ । ଜଗିରଖି ଚଳିବାକୁ ପଡ଼ିବ । କ'ଣ କରାଯିବ ବୁଝିହେଲାନି ।

ସ୍ୱପ୍ନକୁ ନର୍ସିଂହୋମ ନେଇଗଲୁ । ଦୁଇଦିନ ରହିବା ପରେ ସ୍ୱପ୍ନ ହଠାତ୍ ଜିଦ୍ ଧରିଲା ଘରକୁ ଫେରିଯିବା । କାରଣ ଏଠି ବଗିଚାରେ ତା' ପ୍ରିୟଫୁଲ, ପ୍ରଜାପତି କିମ୍ବା

ଚଢ଼େଇ ନାହାନ୍ତି । ତାକୁ ଏଠି ଅଣନିଃଶ୍ୱାସୀ ଲାଗୁଛି । ଡାକ୍ତରଙ୍କ ପରାମର୍ଶ କ୍ରମେ ସ୍ୱପ୍ନକୁ ନେଇ ଆସିଲୁ । ଘରେ କିନ୍ତୁ ସ୍ୱପ୍ନର ସୁସ୍ଥତାର ଲକ୍ଷଣ ଦେଖାଗଲାନି । ଦୁର୍ବଳ, ଅସୁସ୍ଥ, ସ୍ଥିର ହୋଇଆସିଲା ।

ସ୍ୱପ୍ନର ଏ ଅବସ୍ଥା ଦେଖିପାରୁନଥିଲି । କଲେଜରୁ କିଛିଦିନ ଛୁଟିନେଇ ଆସିଲି । ସ୍ୱପ୍ନ ରୀତା ହାତରୁ କିଛି ଖାଉନଥିଲା କିମ୍ବା ମୁହୂର୍ତ୍ତେ ବି ଶୋଉ ନଥିଲା । ସ୍ୱପ୍ନ ପ୍ରଚଣ୍ଡ ଅଭିମାନୀ ଥିଲା । ରୀତାକୁ ଉପେକ୍ଷା କରି ଯେମିତି ତା' ଉପରେ ପ୍ରତିଶୋଧ ନେଉଥିଲା । ରୀତା ବି ବଦଳି ଯାଇଥିଲା । ସ୍ୱପ୍ନ ଉପରେ ଆଦୌ ରାଗୁନଥିଲା । ବରଂ ପ୍ରତ୍ୟେକ କଥା ସ୍ୱପ୍ନର  କରିବାକୁ ଆଗଭର ହେଉଥିଲା । କିନ୍ତୁ ସ୍ୱପ୍ନ ରୀତାର ଏ ସ୍ନେହକୁ ଆଦୌ ଗ୍ରହଣ କରୁନଥିଲା ।

ଦିନେ ଫଳ ପାଇଁ ବଜାରକୁ ବାହାରିବା ବେଳେ ସ୍ୱପ୍ନ ମୋତେ ଛାଡ଼ିଲାନି । କହିଲା - 'ନାଇ ପାପା ! ତୁମେ ଯାଅନା । ମା ଯାଉ । ତୁମେ ମୋ ସହିତ କଥା କୁହ ।'

ରୀତା ବି ଯିବାକୁ ରାଜି ହେଲା । ମୁଁ ସ୍ୱପ୍ନର ବିଛଣାରେ ବସିଲି । ସ୍ୱପ୍ନ ନିସ୍ତେଜ, କରୁଣ ପାଣ୍ଡୁର ଦିଶୁଥିଲା । ସ୍ୱପ୍ନର ଏ ଅବସ୍ଥା ଦେଖି ମୋତେ କାନ୍ଦ ଲାଗିଲା । ମୋ ଅଜାଣତରେ ଆଖିରୁ ଲୁହ ଝରି ପଡ଼ିଲା । ଲୁହଟୋପା ଛୁଇଁଗଲା ସ୍ୱପ୍ନର କପାଳକୁ ।

'ପାପା ! ତୁମେ କାନ୍ଦୁଛ ? ବଡ଼ ମାନେ କ'ଣ କାନ୍ଦନ୍ତି ? ମୁଁ ଗୋଟେ କଥା କହିବି ଶୁଣିବ ?' ବୁଝାଇବା ଭଙ୍ଗୀରେ ସ୍ୱପ୍ନ କହିଲା ।

'ନାଇଁରେ ମୁଁ କାନ୍ଦୁନି । କ'ଣ କହିବୁ କହ । ମୁଁ କେବେ କ'ଣ ତୋ କଥା ଶୁଣିବାକୁ ମନା କରିଛି ? କହ ।' ଏତିକି କହି ତା ମୁଣ୍ଡକୁ ଆଉଁସି ଦେଲି ।

ସ୍ୱପ୍ନ ମୋ କୋଳରେ ତା'ର ଦୁର୍ବଳ ମଥାଟି ରଖି କଥା ଆରମ୍ଭ କଲା - 'ପାପା ଯେତେବେଳେ ପବନରେ ବର୍ଷାଟୋପା ଏଣେତେଣେ ବୁଲେ,ମୁଁ ଦେଖିଛି ସେ ବର୍ଷାରେ ବି ବଣି, କଜଳପାତି, କୁଣ୍ଡାଖିଆ ଚଢ଼େଇ ଓଦାଘାସରେ ଝିଣ୍ଟିକା ଓ ପୋକ ଧରି ବୁଲନ୍ତି । ଝରକା ଏ ପଟେ ଥାଇ ସବୁ ଦେଖେ । ଆଉ ବି ଦେଖେ ଗଛରୁ ଟପ୍ ଟପ୍ ପାଣି ଝରିପଡ଼େ । କୋଠା ଉପରୁ ବି ଝରେ । ଭାରି ମଜା ଲାଗେ ପାପା । ତୁମକୁ ମଜା ଲାଗେନି ? ହେଲେ ପାଠକଥା ମନେପଡ଼ିଲେ କିଛି ଭଲ ଲାଗେନି । ମୁଁ ଭାବେ ମୁଁ ଯଦି ଗୋଟେ ବଣି ନହେଲେ କଜଳପାତି ହୋଇ ଉଡ଼ିଯାଆନ୍ତି, ତେବେ ମା' କଣ ମୋତେ ପାଠ ପଢ଼ାଇପାରନ୍ତା ? ଆଚ୍ଛା ପାପା ! ଚଢ଼େଇମାନେ ପାଠ ନ ପଢ଼ି ତ କେତେ ଖୁସିରେ ଅଛନ୍ତି । କେତେ ଦୂର ବି ଉଡ଼ିଯାଇ ପାରନ୍ତି, ବଡ଼ ବି ହୋଇଯାଆନ୍ତି । ମୁଁ ଚଢ଼େଇଟିଏ ହୋଇଯାନ୍ତି କି ? ଭଲ ହୁଅନ୍ତା ନା ପାପା ?'

ସ୍ୱପ୍ନ କଣ୍ଠରେ କେମିତି ନିଶା ଥିଲା, ମୋତେ ଲାଗୁଥିଲା ସେ ଯେମିତି ମୁହୂର୍ତ୍ତକ ମଧ୍ୟରେ ଚଢ଼େଇଟିଏ ହୋଇ ନୀଳ ଆକାଶରେ ଉଡ଼ିଯିବ ମୋ କୋଳ ଖାଲି କରିଦେଇ ।

ସାନ୍ତ୍ୱନା ଦେଲି ତାକୁ - 'ସ୍ୱପ୍ନ ! ଏମିତି କ'ଣ ଗପନ୍ତି ? ଦେହ ପରା ଭଲ ନାହିଁ । ଦେହ ଖରାପ ବେଳେ ବେଶୀ କଥା କହିଲେ ଶକ୍ତି ନଷ୍ଟ ହୋଇଯାଏ । ଆଉ ବେଶୀ କଥା କହନ୍ତି ।

'ଦେଖ ପାପା ! ମୋତେ ଲାଗୁଛି ଆଜି ନ କହିଲେ ଆଉ କେବେ କହିବି କୁହତ । ମା' ତ ବଜାରକୁ ଯାଇଛି । ସିଏ ଥିଲେ କ'ଣ କଥା କୁହାଇ ଦେବ । ପାଠ ପଢ଼ କହିବ । ସେଇ ଏକା ପାଠ । A for Apple, B for Bed, C for Call, D for... ପାପା ମୁଁ ତ D for ଭୁଲିଯାଇଛି । ମା' ଆସିଲେ ଗାଳିଦେବ । କୁହ ପାପା ! D for .... ସ୍ୱପ୍ନ କଣ୍ଠ ଆସ୍ତେ ଆସ୍ତେ ନିସ୍ତେଜ ହୋଇ ଆସୁଥିଲା ।

କ'ଣ ବା ତାକୁ ଉତ୍ତର ଦେବି ? ସତରେ D for ଯେ କ'ଣ ସେକଥା ବୁଝିପାରୁ ନଥିଲି କିମ୍ବା ମନେ ବି ପଡୁନଥିଲା । ସ୍ୱପ୍ନ ପ୍ରଶ୍ନକ ଆଖିରେ ଅନାଇଥିଲା । ଆଖିରେ ସଚେତନତା ମୋଟେ ନଥିଲା । ଲାଗୁଥିଲା କଳାଛାଇଟେ ଘୁରୁଛି ଯେମିତି । ଆଖିପତା ବନ୍ଦ ହୋଇଆସୁଛି । ହେଲେ ମୋ ପ୍ରଶ୍ନର ଉତ୍ତର ଶୁଣିବାକୁ ଯେମିତି ବହୁ କଷ୍ଟରେ ଅପେକ୍ଷା କରିଛି ।

ମୁଁ କହିଲି- 'ସ୍ୱପ୍ନ ଟିକେ ଶୋଇପଡ଼ । ପରେ କହିବି ।

ହଠାତ୍ ସ୍ୱପ୍ନ ଚମକି ଉଠି କହିଲା- 'ହଁ ପାପା ? ମନେ ପଡ଼ିଲା D for Death ହେବନା । କୁହ ?'

ସ୍ୱପ୍ନର କଥାରେ ମୋତେ କାନ୍ଦ ଲାଗିଲା । ଏତେ ଟିକେ ଛୁଆ, ଇଏ ପୁଣି କି ପାଠପଢ଼ା ! ବାକ୍‌ରୁଦ୍ଧ ହୋଇ ଆସିଲା । କହିଲି - 'ହଁ, ଦେଖ୍ ତ ଝରକା ସେପଟେ ଲିଚୁ ଗଛରେ ରାଜବଣି ବସିଛି ।

ସ୍ୱପ୍ନ ଥରଥର କଣ୍ଠରେ କହିଲା- ପାପା ! ମୁଁ ଯଦି ବଣିଟେ ହୋଇ...

କଥା ଶେଷ କରିପାରିଲାନି ସ୍ୱପ୍ନ । ମୋ ହାତମୁଠାରେ ଥିବା ତା' ହାତ ଯେମିତି ଖଣ୍ଡେ ବରଫରେ ପରିଣତ ହୋଇ ଯାଇଥିଲା । ଅଧାବନ୍ଦ ଆଖିରେ ଥିଲା ନୀଳ ଆକାଶରେ ମୁକ୍ତ ପକ୍ଷୀଟିଏ ହୋଇ ଉଡ଼ିଯିବାର ଅସୀମ ନିଶା । ମୋ ଗଳାରୁ ଖୁବ୍ ଜୋର୍‌ରେ ଶବ୍ଦଟେ ବାହାରି ଆସିଲା- ସ୍ୱପ୍ନ... ଅ... ଅ...ଅ...ଅ ।' ହେଲେ ସ୍ୱପ୍ନ ମୋର ରାଜବଣି ସାଙ୍ଗରେ ଉଡ଼ି ଯାଇଥିଲା ଅନନ୍ତ ଆକାଶରେ ମୋ ସବୁ ସ୍ୱପ୍ନକୁ ଚୁରମାର୍ କରିଦେଇ ।

ସ୍ୱପ୍ନ ମୋର ନାହିଁ । ମୋତେ ବିଶ୍ୱାସ ଲାଗୁନି ଯେ ସ୍ୱପ୍ନ ମୋତେ ଛାଡ଼ି ଚାଲି ଯାଇଛି । କିଏ ମୋତେ ପାପା ଡାକିବ, ମନକଥା ଖୋଲି କହିବ ? ବର୍ଷା ଭିଜା ପକ୍ଷୀର ବର୍ଣ୍ଣନା କରିବ କିଏ ? ଆଃ... ସ୍ୱପ୍ନ ମୋତେ କେତେ ରିକ୍ତ କରିଦେଇ ଚାଲିଗଲା । ସ୍ୱପ୍ନ ଥିଲା ମୋ ଜୀବନର ଅଳସ ପାହାନ୍ତିର ମୁଗ୍ଧ ସ୍ୱପ୍ନଟିଏ । ତା'ର ପକ୍ଷୀ ହୋଇ ଉଡ଼ିବାର ନିଶା ମୋତେ ଗୋଟିଏ ମୁହୂର୍ତ୍ତରେ ଆକୁଳ ପଙ୍କୁଟିଏରେ ପରିଣତ କରିଦେଲା । ସ୍ୱପ୍ନ- ମୋ ଜୀବନର ମୁଗ୍ଧ ସ୍ୱପ୍ନକୁ, ମୋ ପିତୃତ୍ୱକୁ ଅଧୁରାକରି ଚାଲିଗଲା । ଇଏ ଗୋଟେ ଦୁଃସ୍ୱପ୍ନ ହୋଇନଥାନ୍ତା ? ଆଖି ଖୋଲିବା ମାତ୍ରେ ସ୍ୱପ୍ନକୁ ଫୁଲ, ପ୍ରଜାପତି, କଣ୍ଢେଇ ଗହଣରେ ଦେଖନ୍ତି ନାହିଁ ? ଆଃ... ସ୍ୱପ୍ନ ମୋର ଫେରିଆସନ୍ତା ନାହିଁ ???

# ସେଇ ଛାଇ

କବାଟ ଠକ୍ ଠକ୍ ଶବ୍ଦରେ ବାହାରକୁ ଆସି ଗୌରୀ ଦେଖିଲା ସାମ୍ନାରେ ବାରବର୍ଷର ଘଣ୍ଟାବଜାଳି ନାରଣ ଠିଆ ହୋଇଛି । କହିଲା- 'ନନା କହିଛନ୍ତି କାଲି କୁଆଁତାରା ନ ଲୁଚୁଣୁ ଯିବ । ମାହେନ୍ଦ୍ରବେଳା ଅଛି ବୋଲି କହୁଥିଲେ ।' ଏକା ନିଃଶ୍ୱାସରେ କହିଦେଇ ଦୌଡ଼ି ଦୌଡ଼ି ଚାଲିଗଲା ।

ସେମିତି ଖୋଲା କବାଟକୁ ଧରି ଥକ୍କା ହୋଇ ଠିଆ ହେଲା ଗୌରୀ । ଘରେ ସେ ଏକା । ଶାଶୁ ଦି'ଦିନ ତଳୁ ସାନଝିଅ ଘରକୁ ଦେବୀ ଦେଖି ଯାଇଛନ୍ତି । କୁଆଁତାରା ଦେଖା ଭୋର୍‌ବେଳେ କେମିତି ଏକା ଯିବ ଯେ ? ମାଡ଼ି ପଡ଼ିଲା ତାକୁ । ସଂକୋଚରେ ତା'ର ସବୁ ଆଶା ଆକାଂକ୍ଷା ମ୍ଳାନ ହୋଇଗଲା । ତାଙ୍କ ଗାଁର ଶେଷ ମୁଣ୍ଡରେ ଶିବ ମନ୍ଦିର । ପାଖରେ ନଈ ବହିଯାଉଛି । ବଡ଼ ବଡ଼ ତାଳ, ନିମ୍ବ, ବରଗଛ ଓ ଆମ୍ବ ବଗିଚା ପାଖରେ ମନ୍ଦିର ବେଢ଼ା । ଧଳା ଶଙ୍ଖ ମଲମଲ ପଥରର ବାସୁଆ ବନ୍ଧ ଓ କିଛି ଉଚ୍ଚରେ ମନ୍ଦିର । ସରୁ ଦୁଆର ମୁହଁର କବାଟ ଖୋଲିଦେଲେ ଆଖିରେ ପଡ଼େ ଶିବଲିଙ୍ଗ । କାନ୍ଥ ଦେହ ଠଣାରେ ଗଣେଶ, କାର୍ତ୍ତିକ ମା' ଶିବାନୀଙ୍କର ସୁନ୍ଦର ସୁନ୍ଦର ମୂର୍ତ୍ତି । ବେଢ଼ା ସାରା ସ୍ୱର୍ଣ୍ଣଚମ୍ପା, ବଉଳ, ଟଗର, ଅଁଳାଗଛ ଭର୍ତ୍ତି । ନଈକୂଳିଆ ପବନ ସାଙ୍ଗକୁ ଗଛ ପତ୍ରର ସବୁଜିମା ଓ ଫୁଲର ମିଠାବାସ୍ନା ଗୌରୀକୁ ଭାରି ଆପଣାର ମନେହୁଏ ପୁଣି ପରମୁହୂର୍ତ୍ତରେ ଆକୁଳ କରିପକାଏ କେଉଁ ଏକ ଅଭାବ ବୋଧରେ ।

ଗୋରୀ ତିନିବର୍ଷ ହେଲା ଏ ଗାଁକୁ ବୋହୂ ହୋଇ ଆସିଲାଣି । ସ୍ୱାମୀ ତା'ର ସୂତାକଳ ଚାକିରିଆ । ବରର କଞ୍ଚା ପଇସାରେ ଝିଅ ସୁଖୀ ହେବ ବୋଲି ତା' ବାପା ମା' ଏ ନଈ ପାରି ଗାଁରେ ତାକୁ ବାହାକରି ଦେଲେ । ପ୍ରଥମେ ବର୍ଷଟିଏ ଭାରି ଖୁସି ଥିଲା । ସ୍ୱାମୀ ତା'ର ମାସେ ଦି'ମାସରେ ଯେତେବେଳେ ଆସନ୍ତି ତା' ପାଇଁ ରିବନ୍, ବାସ୍ନାତେଲ, ଅଳତା, ପାଟଫୁଲି, ମୁଣ୍ଡକଣ୍ଟା, କୁମ୍ଭଧଡ଼ିର ନାଲିଶାଢ଼ୀ, ଛାତି ଛାତିକା ବ୍ଲାଉଜ, ଚୁଡ଼ି, ମିଠେଇ ଆଉ କେତେ ଜିନିଷ ମଧ୍ୟ ଆଣି ଆସନ୍ତି । ସେଇ ତିନି ଚାରିଦିନ ମଧୁର ଆବେଗରେ ଯେ ଦିନ କେମିତି କଟିଯାଏ ଗୌରୀକୁ ଜଣାପଡ଼େନା । ନିଜକୁ ଭାରି ସୁଖୀ ମନେକରୁଥିବା ଗୌରୀ ଦ୍ୱିତୀୟ ବର୍ଷରେ ଅନୁଭବ କଲା ସ୍ୱାମୀଙ୍କର ଆସିବାରେ ଅନାଗ୍ରହ । ଯଦିବା କେବେ ଆସନ୍ତି ତେବେ ସ୍ନେହ ମମତାରେ ଯେମିତି କଳଙ୍କି ଧରି ଯାଇଥାଏ । ସାଙ୍ଗ ସାଥିରେ ସମୟ କଟାଇବା ଓ ଡେରି ରାତିରେ ଫେରି ଖାଇଦେଇ ଶୋଇଯିବାକୁ ଗୌରୀ ବରଦାସ୍ତ ନକରୁଥିଲେ ବି ଉପରେ ଅସନ୍ତୁଷ୍ଟ ଭାବ ଦେଖାଉ

ନଥିଲା । ତୃତୀୟ ବର୍ଷରେ ଶୁଣିଲା ତା' ସ୍ୱାମୀ ରହୁଥିବା କଲୋନୀରେ ଜଣେ ନେପାଳି ସ୍ତ୍ରୀର ପ୍ରେମରେ ସ୍ୱାମୀ ତା'ର ବନ୍ଧା ଓ ସେଥିପାଇଁ ତା' ପ୍ରତି ଏତେ ଅନାଦର । ଏକଥା ଶୁଣିବା ବେଳେ ତା' ମୁଣ୍ଡରେ ଯେମିତି ଆକାଶ ଭାଙ୍ଗି ପଡ଼ିଲା । ପାଦତଳୁ ମାଟି ଖସିଗଲା । କେତେ କାକୁତି ମିନତି କରି ଚିଠି ଲେଖିଲା, ରାଣ ନିୟମ ପକାଇଲା ନିଜ ସଂସାର ଭିତରକୁ ଫେରି ଆସିବା ପାଇଁ । ହେଲେ କାହିଁ ? ସବୁ ଯେମିତି ନେପାଳି ସ୍ତ୍ରୀଟିର ପ୍ରେମ ପୋଛି ନେଇଯାଇଥିଲା । ଆଉ ଏପଟେ ଶାଶୁଙ୍କର ଗଂଜଣା ମଧ୍ୟ ତା'ପ୍ରତି ବଢ଼ିବାକୁ ଲାଗିଲା । ତା'ପରି ପୋଡ଼ାମୁହିଁ, ଅମଙ୍ଗଳି, ଅଲକ୍ଷଣୀ ସକାଶେ ତାଙ୍କ ସୁନା ସଂସାର ଚୂନା ହେଲା ବୋଲି ଶାଶୁ ଅହରହ ଗାଳି ବର୍ଷଣ କରନ୍ତି । ଗୌରୀ ଚୁପ୍ ରହେ, ହେଲେ ଶିବ ମନ୍ଦିରରେ ବେକରେ ଲୁଗା ଗୁଡ଼ାଇ ମୁଣ୍ଡ ନୁଆଁଇ ସବୁକଥା ଶିବଲିଙ୍ଗ ସାମ୍ନାରେ କହିପକାଏ ।

ପଥରର ମୂର୍ତ୍ତିସବୁ ଶୁଣୁ ବା ନ ଶୁଣୁ କାନ୍ଥ ଆରପଟେ ରହି ରୋଷାଇ କରୁଥିବା ବୁଢ଼ାନନା ସବୁ ଶୁଣନ୍ତି । ଗୌରୀକୁ ସାନ୍ତ୍ୱନା ଦିଅନ୍ତି ଓ ବୁଝାନ୍ତି ସଂସାରର ନିଃସାରତା ସଂପର୍କରେ । କୁହନ୍ତି- 'ବୁଝିଲୁ ମା' ଗୌରୀ ! ଗୀତାରେ ପରା ଲେଖା ଅଛି- 'କର୍ମଣ୍ୟେ ବାଧିକାରସ୍ତୁ ମା ଫଳେଷୁ କଦାଚନ' କର୍ମ କରିଯା' ମା' । ଫଳ ପ୍ରାପ୍ତିରେ ଆଶା ରଖନା । ଏ ଆଶା ମଣିଷକୁ ଭାରୀ କଷ୍ଟ ଦିଏ । ନର୍କ କଷ୍ଟଠାରୁ ଅଧିକ ଯନ୍ତ୍ରଣାରେ ଘାଣ୍ଟେ । କାହିଁକି ଏ ସଂସାରର ମୋହ ମାୟାରେ ମନକଷ୍ଟ କରନା । ଆମ ସଂସାରରେ ଏମିତି ଲୋକ ଅଛନ୍ତି ଯେଉଁମାନେ ନିଜ ଦୋଷକୁ ଅନ୍ୟ ମୁଣ୍ଡରେ ଢାଳନ୍ତି । ନିଜ ଅସହାୟତା ଓ ଅପାରଗତାକୁ ନେଇ ଅନ୍ୟକୁ ଈର୍ଷା କରନ୍ତି । ଆଉ ତୋ ସ୍ୱାମୀ - ସିଏ ତ ଅଜାମିଳ ପରି ନିଜ ପବିତ୍ର ଆତ୍ମାକୁ କଷ୍ଟ ଦେଉଛି । ମା' ଈଶ୍ୱରଙ୍କ ପାଦ ପଦ୍ମରେ ନିଜକୁ ସମର୍ପି ଦେଇ କର୍ତ୍ତବ୍ୟ କରିଯା' ଦେଖିବୁ ଶାନ୍ତି ପାଇବୁ ।' ନନାଙ୍କର ଏତିକି କଥାରେ ଗୌରୀ ପରମ ଶାନ୍ତି ଓ ଆଶ୍ୱାସନା ଲାଭକରେ । ତାକୁ ଲାଗେ ଏତେବଡ଼ ସଂସାର ଭିତରେ କିଏ ତ ଜଣେ ଅଛି ତା' ପାଇଁ ଆଶାର ଆଲୋକ ଟିକେ ଦେଖାଇବା ପାଇଁ ।

ସହାନୁଭୂତି ଦେଖାଉଥିବା ଓ ମନକୁ ବୁଝୁଥିବା ବୁଢ଼ା ନନାଙ୍କ କାଳ ହୋଇଯିବା ବାଦ୍ ତାଙ୍କ ସବାସାନପୁଅ ଏଇ ଚାରିମାସ ତଳୁ ଶିବ ମନ୍ଦିରର ଦାୟିତ୍ୱ ନେଇଛି । ଭାରି କାମିକା, ସବୁ କଥାକୁ ଆଗଭର, ସମସ୍ତଙ୍କ ସହିତ ମିଳାମିଶା କରୁଥିବା ଏଇ ସଦେଇ ନନା ଗୋରୀକୁ ସେଦିନ ଦେଖି ଦେଖି କହିଲେ- 'ତୁମ କଥା ନନା ପ୍ରାୟ କୁହନ୍ତି । ଶାଶୁ ବଦଳିଲେଣି ନା ନାହିଁ ? ଭାଇନାଙ୍କ ଠାରୁ ଚିଠି ପତ୍ର ଆସୁଛି ନା ନାହିଁ ? ଠାକୁରଙ୍କୁ ମନଦେଇ ଡାକ ତୁମ କଥା ନିଶ୍ଚୟ ଶୁଣିବେ ।' ଏକଥା ଶୁଣି ଗୌରୀ ମନେମନେ ବିରକ୍ତ ହେଲା ତଥାପି ଆତ୍ମୀୟତାର ସ୍ୱର ଶୁଣି କିଛି କହିଲା ନାହିଁ । ଯେତେହେଲେ ବୁଢ଼ାନନାଙ୍କ ପୁଅ ତ ! ଗୌରୀ ଯେବେ ଯାଏ ସଦେଇ ନନା ଯେଉଁଠି ଥାଉ ନା କାହିଁକି ଠାକୁର କବାଟ

ଖୋଲି ଶିବଲିଙ୍ଗ ଉପରେ ପାଣି ଢାଳେ, ବେଲପତ୍ର ଚଢ଼ାଇ ସ୍ୱର୍ଣ୍ଣଚଂପା ଫୁଲ ସହ ବେଲପତ୍ର ଦି'ଟା ଗୌରୀ ହାତକୁ ବଢ଼ାଇଦିଏ ।

ଦିନେ ଗୌରୀ ସକାଳୁ ମନ୍ଦିର ବେଢ଼ାରେ ପହଞ୍ଚୁ ପହଞ୍ଚୁ ସଦେଇ ନନା ଧାଇଁ ଆସି କହିଲା- 'କାଲି ଗୋଟେ ସ୍ୱପ୍ନ ଦେଖିଛି । ଶିବ ମହାପ୍ରଭୁ ତୁମ ଦୁଃଖ ଦେଖିପାରୁ ନାହାନ୍ତି । ଶହେ ଆଠ ବେଲପତ୍ର ଶୀଘ୍ର ଚଢ଼ାଅ, ଦେଖିବ ତୁମ କଷ୍ଟ ଲାଘବ ହୋଇ ମାନସିକ ପୂର୍ଣ୍ଣ ହେବ । ଆଉ ମୁଁ ମଧ ଗୋଟେ ବିଶେଷ ପୂଜା ତୁମ ପାଇଁ କରିବି ।' ତା' ପରଦିନ ଗୌରୀ ଶହେଆଠ ବେଲପତ୍ର ସହ ସବୁ ପୂଜା ସାମ୍ରଗୀ ଧରି ପହଞ୍ଚିଲା । ସଦେଇ ନନା ମନ୍ତ୍ର ପଢ଼ି ବେଲପତ୍ର ଗୋଟିକ ପରେ ଗୋଟିଏ ଚଢ଼େଇ ଦେଲେ । ପୂଜା ସରିବା ପରେ କହିଲେ- 'ତୁମ ଦେହରେ ଗୋଟାଏ ଛାଇ ପଡ଼ିଛି । ନଚେତ୍ ଭାଇନା କାହିଁକି ଅନାଦର କରନ୍ତେ ? ସେଇ ଛାଇଟା ଦୂରେଇ ରଖୁଛି । ଦେଖିବ ଆଜି ତାକୁ ମୁଁ ତଡ଼ିଦେବି ।' ଏତିକି କହି ସଦେଇ ନନା ଧଳା ମୁରୁଜରେ ଘର କାଟିଦେଇ ଗୌରୀକୁ ବସିବାକୁ ଇଂଗିତ ଦେଲେ ଓ ତା' ଉପରେ ଫୁଲପାଣି ଛିଞ୍ଚି ଦେଲେ । ଆଖି ବନ୍ଦ କରି ମନ୍ତ୍ର ପଢୁପଢୁ ଗୋଟାଏ ମୟୂର ପୁଚ୍ଛରେ ତା'ର ମୁଣ୍ଡରୁ ଦେହଯାଏ ଝାଡ଼ି ପକାଇଲେ । ଝାଡ଼ି ପକାଇବା ବେଳେ ସଦେଇ ନନାଙ୍କ ହାତ ତା' ଦେହସାରା ବି ଛୁଇଁଗଲା । ଗୌରୀର ଇଚ୍ଛା ହେଉଥିଲା ଉଠି ଆସିବାକୁ, ହେଲେ ସଦେଇ ନନା ମୂଳରୁ ସାବଧାନ କରିଦେଇଛନ୍ତି- 'ମଝିରେ ଯଦି ତା'ର ଆଖିଖୋଲେ ବା ଧ୍ୟାନ ଭାଂଗିଯାଏ ତେବେ ସେ ଛାଇକେବେ ବି ତା' ଦେହରୁ ଯିବ ନାହିଁ । ଅଶ୍ୱସ୍ତି ଓ ଲଜ୍ଜା ଭିତରେ ବସିରହିଲା ଗୋଟାଏ ଅଦେଖା ପରମ ବିଶ୍ୱାସରେ ।

ଦି'ଦିନ ପରେ କବାଟ ଠକ୍ ଠକ୍ ଶବ୍ଦରେ ଗୌରୀର ନିଦ ପାହାନ୍ତାରୁ ଭାଙ୍ଗିଗଲା । କିଏ ବୋଲି କହି କବାଟ ଖୋଲି ଦେଇ ଦେଖିଲା ଦୁଆରବନ୍ଧ ଆରପଟେ ତା' ସ୍ୱାମୀ ଠିଆହୋଇଛନ୍ତି । ବିସ୍ମୟ ବିଭୋର ଗୌରୀର ପାଟିରୁ ପଦେ ବି କଥା ବାହାରିଲା ନାହିଁ । ମନେ ମନେ ସଦେଇ ନନାଙ୍କୁ ଧନ୍ୟବାଦ ଦେଲା ଓ ନିଜକୁ ଧିକ୍କାରିଲା ଯେ ସଦେଇ ନନାଙ୍କୁ କିଛି ମାତ୍ରାରେ ଅବିଶ୍ୱାସ କରିଥିଲା ବୋଲି । ଗୌରୀର ସ୍ୱାମୀ ଶୋଇବା ଘର ଖଟ ଉପରେ ବସୁ ବସୁ ବ୍ୟାଗ୍ ଭିତରୁ ତା' ପାଇଁ ଆଣିଥିବା ଚୁଡ଼ି, କ୍ଲିପ୍, ନୂଆ ଛିଟ ରିବନ, ସ୍ନୋ, ପାଉଡର, ଅଳତା ସହ ଜରିଲଗା ଶାଢ଼ୀ ବାହାର କଲେ । ଏତେଦିନ ଧରି ଆସିପାରୁ ନଥିବାରୁ ଦୁଃଖିତ ହୋଇ କ୍ଷମା ତା ପାଖରୁ ମାଗି ପକାଇଲେ । ତିନିଦିନ ପରେ ତାକୁ ସ୍ୱାମୀ ପାଖକୁ ଡାକି କହିଲେ- 'ଚାକିରି କଥା କାଲି ଭୋର ଗାଡ଼ିରେ ଫେରିଯିବି । ପୁଣି ଆସନ୍ତା ମାସର ମଝି ରବିବାରରେ ଆସିବି । ଠିକ୍‌ରେ ଖିଆପିଆ କରିବ । ଲୋକଙ୍କ କଥା ଶୁଣିଶୁଣି ତମେ ତ କଳାକାଠ ପଡ଼ିଗଲଣି । ଆମ ଶିରୀ ଦେଖି ନପାରି ଲୋକେ ଏତେ କଥା କହୁଛନ୍ତି । ତାଙ୍କ କଥାରୁ କ'ଣ ପାଇବ । ହଁ, ମୁଁ ଯେଉଁଠି ରହୁଛି ସେଇଠି

ଗୋଟେ ସୁନା ଗହଣା ଦୋକାନ ଖୋଲା ହୋଇଛି । କେତେ ଜାତିର ତାରକସୀ ସହ ପଥର ବସା ହାର ଗଢ଼ା ହେଉଛି । ତମ ହାର ତ ପୁରୁଣା ଡିଜାଇନ୍‌ର । କିଏ କ'ଣ ଏମିତିଆ ହାର ପିନ୍ଧୁଛନ୍ତି । ମୋତେ ଦେଲେ ନୂଆ କରି ଗଢ଼ାଇ ଆଣିବି । କାଲି ତ ଗୁରୁବାର ଏବେ ଖୋଲିଦିଅ ।' ଗୌରୀ ଅତି ଆଗ୍ରହରେ ସେଇ ସାଙ୍ଗେ ସାଙ୍ଗେ ଖୋଲି ବଢ଼ାଇଦେଲା ବେକରେ ପିନ୍ଧିଥିବା ହାରକୁ ।

ଏ ଭିତରେ ଦି'ମାସ ବିତିଗଲାଣି, ଗୌରୀ କେତେଥର ପାହାନ୍ତାରୁ ଅନାଇଛି ତା' ସ୍ୱାମୀର ଆସିବା ବାଟକୁ । ରୋଷାଇ କରିଛି, ଭଲମନ୍ଦ ସାଇତିଛି ଓ ଫୋପାଡ଼ିଛି ମଧ୍ୟ । ହେଲେ କାହିଁ ତା ସ୍ୱାମୀ ? ଶିବ ମନ୍ଦିରରେ ବାରମ୍ବାର ପ୍ରାର୍ଥନା କରିଛି । ସେଦିନ ସକାଳୁ ବେକରେ ପଣତକାନି ଗୁଡ଼େଇ ମୁଣ୍ଡିଆ ମାରୁମାରୁ ପଛରୁ ସଦେଇ ନନା ଆସି କହିଲେ- 'ସେଇ ଛାଇ ତୁମ ଦେହକୁ ପୁଣି ଆସିଗଲାଣି ।' ଗୌରୀ ବେକ ଭାଙ୍ଗି ପଚାରିଲା- 'ତେବେ କ'ଣ କରିବି ନନା ?' ଚିନ୍ତା କଲା ଭଳି କିଛି ସମୟ ଆଖି ବନ୍ଦ କରି ସେ ଉତ୍ତର ଦେଲେ- 'ହଁ ଉପାୟ ଅଛି । କରିପାରିବ ତ ? ଆଗରେ ଦଶମୀ ପଡ଼ିବ । ଆଉ ସେଇଦିନ ଛାଇକୁ ତଡ଼ି ଦେଇହେବ । ତୁମେ ପୂଜା ସାମଗ୍ରୀ ସଜାଡ଼ି ଥିବ । ହଁ ଅନ୍ୟମଣିଷର ଛାଇ ଯେମିତି ତୁମ ଦେହରେ ସେ ସମୟରେ ନ ପଡ଼େ ।'

ଗୌରୀ ଚିନ୍ତା କଲା  ଏତେ ରାତିରୁ କେମିତି ଯିବ ଯେ ? ଠିକ୍ କଲା ନାଇଁ ଯାହାବି ହେଉ ଯିବ । ସ୍ୱାମୀ ତା' ପାଇଁ ଖୁବ୍ ବଡ଼ । ସାବିତ୍ରୀ ଏତେ କଷ୍ଟ କରି ସତ୍ୟବାନଙ୍କୁ ବଂଚାଇଥିଲେ । ସେଇ ସଭ୍ୟତା ଓ ସଂସ୍କୃତିର ନାରୀ ହୋଇ ସେ କ'ଣ ସାମାନ୍ୟ କଷ୍ଟ ଉଠାଇ ପାରିବନି ? ତେବେ ନିଶ୍ଚୟ ଯିବ ବୋଲି ଠିକ୍ କଲା ।

ଗୌରୀ ପୂର୍ବାକାଶକୁ ଚାହିଁ ଦେଖିଲା କୁଆଁତାରା ଦିକ୍‌ଦିକ୍ ହୋଇ ଜଳୁଛି । ପୂଜାଡାଲା ବାରଣ୍ଡାରେ ଥୋଇ ତାଲା ପକାଇ ଚାବିଟା କାନିରେ ବାନ୍ଧିଦେଲା ଓ ତକୁ ଡାଲା ଉଠାଇ ଆଗକୁ ଚାଲିଲା । ପାହାନ୍ତିଆ ଚଢ଼େଇର ସ୍ୱର ବି ଭାସିଆସୁନି । ଜହ୍ନ କେତେବେଳେ ଠାରୁ ମୁହଁ ଲୁଚାଇ ଦେଇଛି । ପତଳା କୁହୁଡ଼ି ପରି ମାଡ଼ି ଆସିଛି ଚାଲିଆଡ଼େ । ମନ୍ଦିର ବେଢ଼ା ପାଖରେ ପହଞ୍ଚିଲା ଗୌରୀ । ଦେଖିଲା ବାସୁଆ ବଳଦ ପାଖରେ ଦୀପଟିଏ ଜଳୁଛି ଓ କାନ୍ଥକୁ ଆଉଜି ସଦେଇ ନନା କ'ଣ ବହିଟିଏ ପଢୁଛନ୍ତି । ତା' ମନ ଭିତରେ ଆହା ପଦଟିଏ ସଂଚରିଗଲା । ନନା ପରଲୋକଟାଏ ତାଙ୍କ ମନରେ ଏତେ ଦରଦ, ପୁଣି ତା' ଉଜୁଡ଼ା ସଂସାରକୁ ସଜାଡ଼ି ଦେବା ପାଇଁ କେତେ କଷ୍ଟ ନ କରୁଛନ୍ତି ଯେ ? ଏମିତି ଲୋକ ପ୍ରକୃତରେ ତ ଦେବତା । ଏଇମାନଙ୍କ ପାଇଁ ଏ ସଂସାରରେ ଧର୍ମ ତିଷ୍ଠି ରହିଛି । ଭଗବାନ ସଦେଇ ନନାର ମଙ୍ଗଳ କରନ୍ତୁ ଏଇ କାମନା କରୁକରୁ ଗୌରୀ ଭିତରକୁ ପାଦଦେଲା । ତା ଛାଇ ଦେଖି ନନା ଉଠିପଡ଼ି ଭିତରକୁ ଆସିବାକୁ ହାତ ଠାରିଲେ । ମନ୍ଦିର କବାଟ ଖୋଲିଦେଇ ଭିତରେ ପାଦ ଦେଇ କହିଲେ- 'କେତେବେଳୁ ଅପେକ୍ଷା କରିଛି ।

ମାହେନ୍ଦ୍ରବେଳା ଗଡ଼ିଗଲେ ଦେବୀ କ'ଣ ପ୍ରସନ୍ନ ହେବେ ? ସ୍ୱପ୍ନରେ ଦେବୀଙ୍କ ଆଦେଶ ପାଇଛି । ତୁମ ଅଂଗରେ ଚନ୍ଦନ ସହ ରକ୍ତ ମନ୍ଦାର ସମର୍ପଣ କରାଗଲେ ସେ ଛାଇ ଚାଲିଯିବ । ଶୀଘ୍ର ଏ ନାଲି ଗାମୁଛା ପିନ୍ଧିଦିଅ । ସିନ୍ଦୁରା ଫାଟିବା ପୂର୍ବରୁ ସବୁକାମ ଯେମିତି ସରିବ । ଦେଖ ଯଦି ଏକଥା କାହାକୁ କହିଦେବ ତେବେ ସ୍ୱାମୀ ତୁମର ଚାଲିଯିବେ ବୋଲି ଦେବୀଙ୍କ ନିର୍ଦ୍ଦେଶ ଅଛି ।' ଗୌରୀ ସଂକୋଚ ସହକାରେ ଆରପଟ ବାରଣ୍ଡାକୁ ଯାଇ ନାଲିଗାମୁଛା ଖଣ୍ଡକ ପିନ୍ଧିବା ବେଳକୁ ଦେଖିଲା ଦେହ ଅଧା ଲୁଚୁନାହିଁ । ଗୋଡ଼ର ପେଣ୍ଡା ସ୍ପଷ୍ଟ ଦିଶୁଛି ଓଢ଼ଣା ପାଇଁ ପଣତ ଠିକ୍‌ରେ ପାଉନାହିଁ । ଅତି ଦ୍ୱିଧାରେ ମନ୍ଦିର ଭିତରକୁ ଆସି ବସିଲା । ସଦେଇ ନନା ତା' ମୁଣ୍ଡରେ ଗୋଟିଏ ରକ୍ତ ମନ୍ଦାର ରଖି ଚନ୍ଦନ ସିନ୍ଦୁର ଲଗାଇ ଦେଇ ଗୁଣୁଗୁଣୁ ହୋଇ ମନ୍ତ୍ର ପଢ଼ିଲେ । ଗୌରୀ ଅନୁଭବ କଲା ମନ୍ତ୍ର ସହ ନନାଙ୍କର ଗରମ ନିଃଶ୍ୱାସ ପ୍ରଶ୍ୱାସ ତା ଦେହରେ ବାଜୁଛି । ଆଖିଖୋଲି ନନା କହିଲେ- 'ଦେବୀ ଏବେ ସୁପ୍ରସନ୍ନ । ଗାମୁଛା ରଖିଦିଅ । ରକ୍ତମନ୍ଦାର ଓ ଚନ୍ଦନ ସମର୍ପଣ କରାଯିବ ।' ଗୌରୀ କୁଣ୍ଠିତ ଭାବେ କହିଲା- 'ହେଲେ...' 'ହେଲେ ଆଉ କ'ଣ ? ମା'ଙ୍କର ଯାହା ନିର୍ଦ୍ଦେଶ । ନଚେତ୍ ସ୍ୱାମୀଙ୍କୁ ଆଉ କ'ଣ ପାଇବ ?

ଗୌରୀର ଆଖିରେ ଭାସି ଉଠିଲା ଗୋଟାଏ ମୁହୂର୍ତ୍ତ ପାଇଁ ତା ସ୍ୱାମୀର ମୁହଁ । ପର ମୁହୂର୍ତ୍ତରେ ଚିନ୍ତା କଲା ସ୍ୱାମୀକୁ ପାଇବାକୁ ଗୋଟାଏ ପରଲୋକ ସାମ୍ନାରେ ରିକ୍ତ ଶରୀରରେ ଠିଆ ହେବ ? କ'ଣ କରିବ ଯେ ? ଦ୍ୱିଧାଗ୍ରସ୍ତ ଭାବେ ମୁଣ୍ଡର ଅଧା ଓଢ଼ଣାକୁ ଟେକୁଥିବା ବେଳେ ଅଚାନକ ସଦେଇ ନନା ତା' ଅଣ୍ଟାରେ ଦୁଇହାତ ଗୁଡ଼ାଇ ନିଜ ଆଡ଼କୁ ଟାଣିନେଇ  କହିଲେ- 'କେତେ କାଳରୁ ତୁମକୁ ଦେଖୁଛି । କାହିଁକି ଛାନ୍ଦୁଚ ଅକାରଣେ । ତମେ ମୋର ହୋଇଯାଅ । ମୁଁ ପାଗଳ ହୋଇଛି ଏ ଦେହ ପାଇଁ । ରାଣୀ କରି ରଖିବି । ଥରେ ହଁ କୁହ ।' ଗୌରୀକୁ ଲାଗିଲା ଅରଣ୍ୟ ଅଗ୍ନି ପରି ସଦେଇ ନନାର ଖରଶ୍ୱାସ ତାକୁ ଜାଳିଦେବାକୁ ବସିଛି । ସେ ନିଜକୁ ମୁକ୍ତ କରିନେବାକୁ ଚେଷ୍ଟା କରି ସଦେଇ ନନାର ଗାଲରେ ଠୋ ଠୋ କରି ଦି'ଚାପୁଡ଼ା କଷିଦେଲା ଓ ତା' ହାତକୁ ପୁଳାଏ କାମୁଡ଼ି ଦେଇ ବାହାରକୁ ବାହାରି ଆସି ନିଜ ଲୁଗାକୁ ଦୁଇ ହାତରେ ଧରି ଦୌଡ଼ି ଦୌଡ଼ି ଘରେ ପହଞ୍ଚିଗଲା । ଭିତରୁ ଭଲ କରି କବାଟ ବନ୍ଦ କରି ଲୁଗା ବଦଳାଇବା ବେଳେ ତାକୁ ଲାଗୁଥିଲା ଯେମିତି ସଦେଇ ନନା ତା' ପଛେ ପଛେ ତାକୁ ଧରିବା ପାଇଁ ଧାଇଁ ଆସୁଛି । ପୁଣି ଥରେ କବାଟର କିଳିଣୀରେ ହାତମାରି ଦେଖିଲା । ନା-ବନ୍ଦ ଅଛି । ପାଣି ପିଇ ଶୋଇବାକୁ ଚେଷ୍ଟା କଲା । ତାକୁ ବାରମ୍ବାର ଲାଗିଲା କାହା ହାତ ଯେମିତି ତା' ଅଣ୍ଟାରେ ସ୍ଥିର ହୋଇଯାଇଛି ଓ ଦେହ ସାରା ଝାଞ୍ଜିପବନ ବୋହୁଛି । ଆଖିବନ୍ଦ ହୋଇ ଆସୁଥିବା ବେଳେ କବାଟରେ ଠକ୍ ଠକ୍ ହେବାରୁ ଗୌରୀ ଚମକି ପଡ଼ି ଉଠିବସିଲା । ଦେଖିଲା ସିନ୍ଦୁରା ଫାଟିଗଲାଣି । କିଏ ହୋଇଥିବ ? ସଦେଇନନା ନୁହଁ ତ ? ନାଁ ଅନ୍ୟ କିଏ ଦେଖି

ତାକୁ ପଚାରିବାକୁ ଆସିଛି କି ? ମୁଣ୍ଡରେ ଓଢ଼ଣା ଦେଇ ବିବ୍ରତ ଅବସ୍ଥାରେ କବାଟ ଖୋଲୁ ଖୋଲୁ ଦେଖିଲା ଆର ଗାଁ ପରିଆ କବାଟ ପାଖରେ ଠିଆ ହୋଇଛି । ସେ ଗୌରୀ ହାତକୁ ଚିଠି ଖଣ୍ଡେ ବଢ଼ାଇ ଦେଇ କହିଲା- ' ନବା ଭାଇ ଦେଇଛି । ଧର ମୁଁ ଯାଉଛି ।' ଗୌରୀ ଚିଠି ଧରୁଧରୁ ପରିଆ ଚାଲିଗଲା । ନବା ଚିଠି ଦେଇଛି, ପୁଣି ତା ପାଖକୁ । ପ୍ରବଳ ଆଗ୍ରହରେ ଚିଠି ଖୋଲିଦେଇ ପଢ଼ିଲା- ''ନାନୀ, ପ୍ରଣାମ ନେବୁ । ଏକଥା ଲେଖିବାକୁ ଇଚ୍ଛା ନଥିଲା ହେଲେ ଅତି ବାଧରେ ଲେଖୁଛି । ପନ୍ଦରଦିନ ତଳେ ଭିଣୋଇଙ୍କ ପାଖକୁ ଯାଇଥିଲି । ଶୁଣାକଥାକୁ ତ ବିଶ୍ୱାସ କରୁ ନଥିଲି । ହେଲେ ଦେଖିଲି ଭିଣୋଇ ସେ ନେପାଳୀ ସ୍ତ୍ରୀକୁ ବାହା ହୋଇ ନିଜ ବସାରେ ରଖିଛନ୍ତି । ତୋ ବାହାଘର ବେଳେ ଆମଘରୁ ଦିଆଯାଇଥିବା ହାରଟା ତା' ବେକରେ ଝଟକୁ ଥିଲା । ହାରକଥା ତ କିଛି ବୁଝି ପାରିଲିନି । ବାପା ତୋତେ ଆଣିବାକୁ କାଲି ସକାଳେ ଯିବେ । ଇତି ତୋର ସାନ ଭାଇ ନବା ।''

ଥର ଥର ହାତରେ ଚିଠି ଖଣ୍ଡିକ ଧରି ସେଇଠି ବସି ପଡ଼ିଲା ଗୌରୀ । ଗତଥରର ସ୍ୱାମୀର ସ୍ନେହ ମନେ ପଡ଼ିଲା । ଓଃ-ତେବେ ସେ ହାର ନେବା ପାଇଁ ଏତେ ଛଳନା ଥିଲା । ଆଉ ସେଇ ଛଳନାକୁ ସେ ସତ ବୋଲି ମାନିନେଇ ନିଜର ସତ୍ୟାନାଶ କରିବାକୁ ବସିଥିଲା । ଯାହାକୁ ଈଶ୍ୱରଙ୍କର ପ୍ରତିନିଧି ବୋଲି ମାନିନେଇଥିଲା, ଯାହାର ପ୍ରତିଟି କଥାକୁ ବେଦର ଗାର ବୋଲି ମନେ କରୁଥିଲା ସେଇ ସଦେଇ ନନା ଏତେ ନୀଚ ହୋଇ ପାରିଲା ! ସହାନୁଭୂତି ଦେଖାଇ ଛଳନା କରି ତା'ର ଦେହକୁ ଚାହୁଁଥିଲା । ଗୋଟେ ପଟେ ସ୍ୱାମୀ ସ୍ନେହର ଛଳନା କରି ଶାରୀରିକ, ମାନସିକ ସ୍ତରରେ ତାକୁ ଶୋଷଣ କଲେ ପୁଣି ଧର୍ମର ପଟା କରିଥିବା ସଦେଇନନା ଧର୍ମର ଦ୍ୱାହି ଦେଇ ତା'ର ଧାର୍ମିକ ମନୋଭାବକୁ କଳଙ୍କିତ, ପ୍ରତାରିତ କଲା । ଛି ! ଏଇମାନଙ୍କୁ ସେ ବିଶ୍ୱାସ କରୁଥିଲା କେଉଁ ଭରସାରେ ଯେ ?

ଗୌରୀ ରୁଦ୍ଧ ଆବେଗରେ ଚିଠିକୁ ଟିକ୍‌ଟିକ୍ କରି ଚିରିଦେଲା । ଉଠି ଠିଆ ହେଲା । ଘରର ଚାରିଆଡ଼କୁ ଚାହିଁଲା । ଏଇଠି ତା'ର ଚାରିବର୍ଷର ଘରକରଣା ରହିଛି । ବାପା କାଲି ଆସିବେ ଆଉ ସେ ଚାଲିଯାଇ ପାରିବ ଏସବୁକୁ ଛାଡ଼ିଦେଇ ? କେମିତି ଯିବ ବୁଢ଼ୀ ଶାଶୁଟାକୁ ଦାଣ୍ଡରେ ଏକୁଟିଆ ବସେଇଦେଇ ?? କେମିତି ଚାଲିଯାଇପାରିବ ତା'ର ଧାର୍ମିକ ବିଶ୍ୱାସକୁ ପ୍ରତାରିତ କରିଥିବା ସଦେଇ ନନାକୁ ଉପଯୁକ୍ତ ପୁରସ୍କାର ନଦେଇ କରି ??? ଗୌରୀ ବାଡ଼ିପଟ କବାଟ ଖୋଲି ଦେଇ ପୂର୍ବାକାଶର ସୂର୍ଯ୍ୟୋଦୟକୁ ଦେଖିଲା । ଠିକ୍ କଲା ଏ ବସୁନ୍ଧରା ପରି ଧୈର୍ଯ୍ୟଶୀଳା ହେବା ସହ ସୂର୍ଯ୍ୟଙ୍କ ପରି ପ୍ରଖର ଓ ସତ୍ୟକାମୀ ହେବାକୁ । ନିଜ ଶପଥରେ ନିଜେ ହସିପକାଇ କହିଲା- 'ହଁ- ହେଉ ପଛେ ଯେତେ କଷ୍ଟ, ତରିବିନି କି ହାରିବିନି ।'

# ଅନ୍ତରଙ୍ଗ ଅନ୍ୱେଷଣ

ଆମେ ତାକୁ ପ୍ରଥମ ଦିନରୁ ଆଡ଼ବାୟା ବୋଲି ଡାକିବାକୁ ଆରମ୍ଭ କରିଥିଲୁ । ଯଦିଓ ଏ ନାମ ଆମେ ତା' ପଛରେ ଲୁଚେଇ କରି ହିଁ କହୁ । ଆମ ଗ୍ରାଜୁଏସନ୍ ବେଳେ ସେ ଆମ କଲେଜକୁ ହିଁ ପଢ଼ିବାକୁ ଆସିଥିଲା । ଦେହରେ ଧୋତି ପଞ୍ଜାବୀ, କାନ୍ଧରେ ନାମାବଳୀ, ବେକରେ ଦି'ସରି ତୁଳସୀମାଳା ଓ ନାସାଗ୍ରରୁ ମଥା ଶିଖରଯାଏ ହରିମନ୍ଦିର ଚିତା ତିଳକ । ତା'ର ଏ ବେଶରେ ଆମେ ଯେତିକି ଆମୋଦିତ ହେଉଥିଲୁ ତତୋଽଧିକ ତା'ର ଆଚରଣ ଓ କଥାବାର୍ତ୍ତାରେ ଉଲ୍ଲସିତ ହେଉଥିଲୁ । ଆମ ଆଗ୍ରହ ମିଶ୍ରିତ ହସର ସେ ଏକ ଜୀବନ୍ତ ଖୋରାକ୍ ଯେମିତି ଆମ ପାଇଁ ଥିଲା ।

ଆମ ବୟଜ୍ କମନ୍ ରୁମ୍‌ରେ ପ୍ରତ୍ୟେକ ଶନିବାର ଦିନ ଗୋଟାଏ ନିର୍ଦ୍ଦିଷ୍ଟ ବିଷୟରେ ବିତର୍କ ହୁଏ । ସ୍ନାତକମାନଙ୍କର ଶେଷ ତିନି ପିରିୟଡ଼୍ କ୍ଲାସ ନଥିବାରୁ ବିତର୍କ ପାଇଁ ବେଶ୍ ସୁବିଧା ହେଉଥିଲା । ପ୍ରାୟ ସବୁ ପୁଅମାନେ ଥା'ନ୍ତି । ଏମିତିକି ବେଳେବେଳେ କୌଣସି ଅଧ୍ୟାପକ ଯୋଗ ଦିଅନ୍ତି । ଅଧ୍ୟକ୍ଷ ମହାଶୟ ମଧ୍ୟ ପଦାର୍ପଣ କରନ୍ତି ନିଜର ଆଗ୍ରହ ଦମନ ନକରିପାରି ।

ଆଡ଼ବାୟା ଆମ କଲେଜରେ ଯୋଗ ଦେବାର ସପ୍ତାହକ ବାଦ୍ ଶନିବାର ଦିନ ବିତର୍କ ପାଇଁ ଏକ ବିବଦମାନ ବିଷୟଟିଏ ରଖାଯାଇଥିଲା ସେଦିନ ଯେମିତି ବିତର୍କ ତ ନୁହେଁ ବରଂ ନିଜ ଭବିଷ୍ୟତ ପାଇଁ ସୁଚିନ୍ତିତ ମତାମତ ଦେବାର ମହାର୍ଘ୍ୟ ପର୍ବଟିଏ ଥିଲା । ବିଷୟ ଥିଲା- 'ଭବିଷ୍ୟତରେ ବିବାହ କଲେ ପତ୍ନୀ ସୁନ୍ଦରୀ ହେବେ ନା ଅସୁନ୍ଦରୀ ।'

ସେଦିନ ଏ ବିଷୟବସ୍ତୁର ନାମକରଣ ଶୁଣି ଅଧ୍ୟକ୍ଷ ମହାଶୟ ମଧ୍ୟ ପ୍ରଥମରୁ ଆମ କମନ୍ ରୁମ୍‌ରେ ବସି ସାରିଥିଲେ । ସଦା ଗମ୍ଭୀର ମୁହଁରେ ଈଷଦ୍ ପ୍ରଫୁଲ୍ଲତା ଖେଳି ବୁଲୁଥିଲା । ପ୍ରାୟ ସମସ୍ତଙ୍କର ବକ୍ତବ୍ୟରୁ ଜଣାଗଲା କେତେଜଣ ସୁନ୍ଦରୀ ଚାହାନ୍ତି ତ କେତେଜଣ ଚଳନୀୟ ସୁନ୍ଦରୀ ଖୋଜନ୍ତି । ତେବେ ମୋଟାମୋଟି ଭାବରେ ନାରୀ ସୌନ୍ଦର୍ଯ୍ୟ ରୁଚିକର ହେଲେ ଜୀବନ ସହଜ ହେବ ।

ଶେଷରେ ଆମ ଆଡ଼ବାୟାର ପାଳି ଆସିଲା ଓ ସେ ଧୋତିକୁଞ୍ଚ ସଜେଇ ନେଇ ସମସ୍ତଙ୍କ ସାମ୍ନାକୁ ଗଲା । ସମସ୍ତଙ୍କୁ ବଡ଼ ବିନୀତ ଭାବେ ସମ୍ମାନ ଜ୍ଞାପନ ପୂର୍ବକ ଯାହା ଭାଷଣ ଦେଲା, ଆମେ ସେଥିରେ କେବଳ ବିସ୍ମିତ ହେଲୁନାହିଁ ବରଂ ବିସ୍ତାରିତ ନେତ୍ରରେ ଆଁ କରି ତାକୁ ଦେଖିବାକୁ ଲାଗିଲୁ ।

ସେ ଭାଷଣ ଦେଲା - 'ସମସ୍ତେ ସୁନ୍ଦରୀ ପତ୍ନୀ ଚାହାନ୍ତି । ହେଲେ ଯଦି ମୁଁ ଭବିଷ୍ୟତରେ ବିବାହ କରେ ତେବେ ମୋ ପତ୍ନୀ ଯଥେଷ୍ଟ ଭାବରେ ଅସୁନ୍ଦରୀ ହୋଇଥିବା ଦରକାର ।'

କେବଳ ଆମେ ନୁହେଁ, ଅଧକ୍ଷ ମହାଶୟ ଆଁ କରି ଭ୍ରୂକୁଞ୍ଚନ ସହକାରେ ତାକୁ ଚାହିଁଥିଲେ । ହଠାତ୍ ପଚାରିଦେଲେ- 'ବାବୁ ! ତୁମେ କ'ଣ ମନସ୍ଥ କରି ଏକଥା କହିଲ, ଟିକେ ଖୋଲି କରି କୁହ ।'

ଆତତାୟୀ ନିର୍ବିକାର ଭାବେ କହିଲା- 'ଦେଖନ୍ତୁ ସାର୍ ! ରାମାୟଣ, ମହାଭାରତ ମୂଳରେ ସୁନ୍ଦରୀ ସ୍ତ୍ରୀ । ଟ୍ରୟଯୁଦ୍ଧ ମୂଳରେ ବି ସୁନ୍ଦରୀ ସ୍ତ୍ରୀ ଓ ଏଯାବତ୍ ଯାହା ଦୁର୍ଘଟଣା ଘଟୁଛି ସବୁ ମୂଳରେ ହିଁ ସୁନ୍ଦରୀ ସ୍ତ୍ରୀର ପ୍ରଚ୍ଛନ୍ନ ହାତ ରହିଛି । ସ୍ତ୍ରୀ ସୁନ୍ଦରୀ ହେଲେ ଗୃହରେ ଯାବତୀୟ ଅଘଟଣ ଘଟିବାର ସଂଭାବନା ରୁହେ । ନିଜ ରୂପ ଗର୍ବରେ ସେ ଚନ୍ଦ୍ର ସୂର୍ଯ୍ୟ ମାନେ ନାହିଁ । ତାଙ୍କରି ଚାହିଦା ପାଇଁ ସ୍ୱାମୀମାନେ କଳାଧନ ଗୋଟାଇବାରେ ଲାଗନ୍ତି, ଡୋକ୍ଷରପାତ ହୁଏ, ସାମାଜିକ ସଂକଟ ସୃଷ୍ଟି ହୁଏ । ସବୁ ଅନର୍ଥର ମୂଳ ଏଇମାନେ । ତେଣୁ ଆଜ୍ଞା, ଠିକ୍ କରିଛି ଅସୁନ୍ଦରୀକୁ ବିବାହ କରିବି । ଅନ୍ତତଃ ରୂପବତୀମାନଙ୍କର କସ୍‌ମେଟିକ୍ସ କିଣାର ବରାଦରୁ ତ ତ୍ରାହି ପାଇଯିବି ।'

ତା' କଥାରେ ଆମେ ସଭିଏଁ କେବଳ ସ୍ତମ୍ଭୀଭୂତ ନୁହେଁ, ବରଂ ପ୍ରଚଣ୍ଡ ହତବାକ୍ ହୋଇଯାଇଥିଲୁ ।

ତା' ଦୁଇଦିନ ବାଦ୍ ସେ ଆମରି ହଷ୍ଟେଲ୍‌କୁ ଆସିଲା ଓ ଆମରି ଡର୍‌ମିଟାରୀରେ ରହିଲା । କବାଟ ପାଖ କୋଣରେ ତା' ଖଟ ପକାଇଲା । କାନ୍ଥରେ ଟଙ୍ଗାଇଲା କେଉଁ ଏକ ଅଜଣା ସନ୍ଥଙ୍କର ଅଧା ଦେଖା ଅଧା ମଇଳା ଫଟୋଟିଏ । ଥାକରେ ରଖିଲା ଗୀତା, ଭାଗବତର ସେଟ୍, କେତେ କେତେ ଚଟି ମହାତ୍ମ୍ୟ ଓ କୋଥଳି ତା' ତଳ ଥାକରେ ଗଦା ଗଦା ବହି ଓ ଖାତା । ଆମେ ଉଠିବା ପୂର୍ବରୁ ସେ ଉଠି ଟେବୁଲଲ୍ୟାମ୍ପ ଲଗାଇ ବହି ପଢ଼େ । ଆମ ନିଦ ଭାଙ୍ଗିବା ବେଳକୁ ସେ ସାରା ରୁମ୍ ଝାଡ଼ୁ କରି ଦେଇ ଗାଧୋଇବା ପାଇଁ ବାହାରି ପଡ଼େ । ଗାଧୋଇ ସାରି ସମସ୍ତଙ୍କ ସୁରେଇରେ ପିଇବା ପାଣି ଭରିଦିଏ ଓ ନିଜପାଇଁ ରଖିଦେଇ ଆସନ ପକାଇ ଦେଇ ଓଁକାର ଆରମ୍ଭ କରେ । ତା'ପରେ ଗୀତା ଅଧ୍ୟାୟଟିଏ ପଢ଼ି ନାମ ମହାତ୍ମ୍ୟ ପଢ଼େ । ତା' ପୂଜା ପାଠ ଆରମ୍ଭ ହେଲେ ଆମେ ଚୁପ୍‌ଚାପ୍ ବ୍ରଶ୍ ଧରି ବାହାରକୁ ବାହାରିଯାଉ ।

ପ୍ରଥମଦିନ ସେ ପୂଜା କରିବାକୁ ଆସନ ପକାଇବା ବେଳେ ବିମଳ ଉଠିବସିଲା । ବିମଳର ଗୋଟାଏ ଦୁର୍ଗୁଣ ଉଠୁ ଉଠୁ ହ୍ୱିସିଲ୍ ମାରି ଗୀତ ବୋଲେ । ଯେତେ ତାକୁ ମନାକଲେ ବି ସେ ମୋଟେ ମାନେନି । ସେଦିନ ଠିକ୍ ଗୀତ ଆରମ୍ଭ କରିଛି ତ ଆତ୍‌ତାୟୀ ମଧ ଓଁକାର ଆରମ୍ଭ କଲା । ବିମଳ ହ୍ୱିସିଲ୍ ମାରିବା ବନ୍ଦ କରି ରାସ୍ତାଘାଟରେ ବାଜୁଥିବା ଫିଲ୍ମର ଚାଲୁଗୀତ ଗାଇଲା । ଅଚାନକ ଆତ୍‌ତାୟୀ ତା' ଆସନରୁ ଉଠିଆସିଲା ବିମଳର ବିଛଣା ପାଖକୁ ହାତରେ ପାଣି ମଗଟେ ଧରି । କହିଲା- 'ନିଅ ମୁହଁ ଧୋଇ ପକାଅ । ଥରଟିଏ ପାଇଁ ତୁମେ ଈଶ୍ୱରଙ୍କୁ ସକାଳୁ ପ୍ରାର୍ଥନା କର । ଦିନ ଭଲରେ କଟିବ ଓ ମନରେ ଏକାଗ୍ରତା ବଢ଼ିବ ।'

ଆମେ ସଭିଏଁ ସଂତ୍ରସ୍ତ ହୋଇ ଯାଇଥିଲୁ ସେତେବେଳକୁ ଯେ ବିମଳ ଏବେ ରାଗିଯିବ ଓ ହିତାହିତ ଜ୍ଞାନ ଭୁଲିଯାଇ ସେଇ ପାଣି ମଗଟା ଆଡ଼ବାୟାର ମୁଣ୍ଡରେ ଢାଳିଦେବ । ହେଲେ ନାଃ ଆମ ସମସ୍ତଙ୍କର ଆଶଙ୍କା ଆଦୌ ସତ ହେଲା ନାହିଁ । ବରଂ ବିମଳ ସୁନାପିଲା ପରି ପାଣି ନେଇ ମୁହଁ ଧୋଇବାକୁ ବାଥ୍‌ରୁମ୍‌କୁ ଚାଲିଗଲା । ତା'ପରଠାରୁ ଆଉ କେବେ ହ୍ୱିସିଲ୍ ମାରିନାହିଁ ମଧ ।

ଆଡ଼ବାୟା ଆସିବା ଦିନଠାରୁ ଆମ ରୁମ୍‌ରେ ଥିବା ବିଶୃଙ୍ଖଳିତ ମନୋଭାବରେ ପରିବର୍ତ୍ତନ ଆସିଯାଇଥିଲା । ଆମେ ବିଛଣାପତ୍ରରେ ସାର୍ଟପ୍ୟାଣ୍ଟ ମନଇଚ୍ଛା ଫୋପାଡ଼ି ଦେଉଥିଲୁ । ବହି, ଖାତା ଓ କଲମ ଏଣେ ତେଣେ ଗଡୁଥିଲା । ଝାଡୁ, ପାଣିବାଲ୍‌ଟିର ଠିକ୍ ଠିକଣା ରହୁ ନଥିଲା । ପୁଣି ରୁମ୍‌ସାରା ମିକ୍ସଚର, ବିସ୍କୁଟର ଜରି, ଚକୋଲେଟ୍‌ର ଖୋଳ ଉଡୁଥିଲା ଫ୍ୟାନ୍ ପବନରେ । ଅଥଚ ଆମେ ଏ ଅସ୍ତବ୍ୟସ୍ତ ବ୍ୟବସ୍ଥାକୁ ଭ୍ରୁକୁଞ୍ଚନ ନକରି ଖୁସିରେ ରହୁଥିଲୁ ସାମାନ୍ୟତମ ଅଶ୍ୱସ୍ତି ଅନୁଭବ ନକରି । ପ୍ରଥମେ ଆଡ଼ବାୟା ବହି ଖାତା ସଜାଡ଼ି ଦେଉଥିଲା, ସମସ୍ତଙ୍କ ସାର୍ଟପ୍ୟାଣ୍ଟ ଭାଙ୍ଗିଦେଇ ର୍‍ୟାକ୍‌ରେ ରଖୁଥିଲା ଓ ଝାଡୁ, ପାଣିବାଲ୍‌ଟିକୁ କୋଣରେ ରଖିଦେଇ ଜରି ଇତ୍ୟାଦିକୁ ଡଷ୍ଟବିନ୍‌ରେ ପକାଇ ଦେଉଥିଲା । ପରେ ଆମେ ମଧ ସଚେତ ରହିଲୁ ଏସବୁ ଯେମିତି ଆଦୌ ନହେଉ ବୋଲି । ଆଉ ମଧ୍ୟ ସଚେତନ ହେଲୁ ପଢ଼ାପଢ଼ି ସଂପର୍କରେ ଓ ଧୀରେ ଧୀରେ ଆଡ଼ବାୟା ସହ ଆମେ ବନ୍ଧୁତ୍ୱର ଅଦୃଶ୍ୟ ସୂତ୍ରରେ ବାନ୍ଧି ହୋଇଗଲୁ । ତା' ଠାରୁ ଆମେ ପାଠରେ ସାହାଯ୍ୟ ପାଉଥିଲୁ । ରାତିରେ ଘଣ୍ଟା ଘଣ୍ଟା ଧରି ସୁନ୍ଦର ଭାବରେ କଷ୍ଟ ଥିଓରୀମାନଙ୍କୁ ବୁଝାଇ ଦେଉଥିଲା । ନୋଟ୍ ମଧ ଆମକୁ ଦେଉଥିଲା ।

ସେ ଘରକୁ ଗଲେ ଆମ ପାଇଁ କେତେ କ'ଣ ଆଣୁଥିଲା । ଘରର ଚୁଡ଼ା, ମୁଢ଼ି, ନଡ଼ିଆ ସହ ରାଶିଲଡୁ, ବାଦାମ, ନଡ଼ିଆକୋରା, ମଣ୍ଡାପିଠା, କୋଳି ଇତ୍ୟାଦି ଆଣୁଥିଲା । ସେ ଘରୁ ଆସିବା ଦିନ ଆମର ଗୋଟିଏ ଭୋଜି ହେବାପରି ଲାଗେ । ଦୁଇ ତିନି ଦିନ ଯାଏ ମନଇଚ୍ଛା ଆମେ ଖାଉ । ସେ ଖୁସି ହୁଏ ।

ଆମେ ଅନେକଥର ଚେଷ୍ଟା କରିଛୁ ତା'ର ଧୋତିପଞ୍ଜାବୀରେ ପରିବର୍ତ୍ତନ ଆଣିବାକୁ । ସେଦିନ ସେ ସଫା ସଫା କହିଦେଲା- ''ଦେଖ, ଜାତୀୟ ପୋଷାକରେ ଲଜ୍ଜା କେଉଁଠି ? ସୁବାସ୍ ବୋଷ୍ ପରା ଇଂରେଜର ପୋଷାକ ଫୋପାଡ଼ି-ଦେଇ ଧୋତି କମିଜ୍ ପିନ୍ଧି ସ୍କୁଲ୍ ଗଲେ । ମୁଁ ଆଉ କେତେ ମାତର ଯେ ?''

ତା' କଥାରେ ଅମେ ଚୁପ୍ ରହିଲୁ । ହେଲେ ଆମ ଝିଅମାନେ ଖେଞ୍ଚିଦେବା ପରି ଡରିମିଟାରୀର ପୁଅମାନଙ୍କୁ ଭୁରୁ ନଚେଇ ପଚାରନ୍ତି- ''ତୁମ ଇସ୍କନ୍ ଗ୍ରୁପ୍ କେମିତି ଅଛି ? କ'ଣ ମହନ୍ତ ପ୍ରସାଦ ସେବନ କଲେଣି ? କେବେ ତୁମେ ସବୁ ଗୁରୁଦୀକ୍ଷା ଗ୍ରହଣ କରିବ ?'' ଇତ୍ୟାଦି ଇତ୍ୟାଦିରେ ଦିନେ ଦିନେ ବାଟ ଚଲାଇ ଦିଅନ୍ତି ନାହିଁ ।

ଦିନେ ସେ ଏକଥା ଶୁଣିଦେଲା ଓ ମୋତେ କହିଲା- ''ବାବ୍‌ଲୁ, ଆଜି ଟିକେ

ମାର୍କେଟ୍ ଯିବା ।'' ମୁଁ କ୍ଲାସ ଯିବାପାଇଁ ମୁଣ୍ଡ କୁଣ୍ଡାଉଥିଲି ଓ ତା' କଥାରେ ମୋ ହାତରୁ ପାନିଆଁ ଖସିପଡ଼ିଲା । ମୋତେ ଲାଗିଲା ମୁଁ ଯେମିତି କ'ଣ ଗୋଟେ ଭିନ୍ନାନ୍ତର ଗ୍ରହର ବିଚିତ୍ର ଶବ୍ଦଟେ ଶୁଣିଲି । ତା' ମୁହଁକୁ ବିସ୍ମିତ ହୋଇ ଅନାଇବା ବେଳେ ସେ ତା' କଥାକୁ ଦୋହରାଇଲା - ''ହଁ ଠିକ୍ ଶୁଣିଚୁ । ଶୀଘ୍ର ଆସିଲେ ମାର୍କେଟ୍ ଯିବା ।'' ମୁଁ ପୁଣି ଆଶ୍ଚର୍ଯ୍ୟ ହେଲି ଯେ ଆଡ଼ବାୟା ମାର୍କେଟ୍ କାହିଁକି ଯିବ ! ସେ ତ କେବେ ସାବୁନ୍ କି ପେଷ୍ଟ କିଣେନି । କୁହେଁ ନିମ୍ବକାଠି ଦାନ୍ତ ପାଇଁ ସୁରକ୍ଷିତ । ତା' ମା ଦେଇଥିବା ବନମାର୍ଟି, ହଳଦୀ ଓ ବେସନ ଫେଣ୍ଟା ପେଷ୍ଟକୁ ଦେହରେ ଲଗାଇ ଖରାଦିନେ ଗାଧାଏ । ତେବେ ମାର୍କେଟିଂର ଆବଶ୍ୟକତା କ'ଣ ଅଛି ? ଏଇ ଚିନ୍ତାରେ ଠିକ୍‌ରେ କ୍ଲାସ୍ ମଧ କରିପାରିଲିନି । ଯାହା ବି ହେଉ ଶୀଘ୍ର ଫେରିଲି । ଦେଖିଲି ସେ ରେଡି ହୋଇଯାଇଛି । କହିଲା - 'ତୁ ଶୀଘ୍ର ଜଳଖିଆ ଖାଇଦେଇ ବାହାର, ଯିବା ।''

ମୁଁ ଖାଉ ଖାଉ ପଚାରିଲି -''ହଠାତ୍ ମାର୍କେଟ୍ ଯିବାର କ'ଣ ଦରକାର ଅଛି ?''

ସେ କହିଲା - ''କେତେଦିନ ଆଉ ଝିଅଙ୍କଠାରୁ ଏମିତି କମେଣ୍ଟ ଶୁଣିବ ମୋ ପାଇଁ ! ତେଣୁ ଠିକ୍ କରିଛି, କଲେଜରେ ଆଉ ଧୋତି ପଞ୍ଜାବୀ ପିନ୍ଧିବିନି !''

ମୁଁ ଖୁସି ହୋଇଯାଇ କହିଲି - ''ସତରେ ତୁ ସାର୍ଟ ପ୍ୟାଣ୍ଟ୍ ପିନ୍ଧିବୁ !''

ସପ୍ତାହକ ପରେ ଟେଲର ତା' ପ୍ୟାଣ୍ଟ ସାର୍ଟ ଦେଲା । ମୋର ଶୀଘ୍ର କ୍ଲାସ ଥିବାରୁ କଲେଜ ଚାଲିଗଲି । ଗୋଟାଏ କ୍ଲାସ ସରିଛି, ହଠାତ୍ କରିଡର୍‌ରେ ପିଲାଙ୍କ ଗହଳି ସହ ଚାପାହସ ଓ ଗୁଞ୍ଜରଣ ଶୁଣାଗଲା । କ'ଣ ହୋଇଥିବ କୌତୂହଳ ଭାବି ନିଜ ଆଗ୍ରହକୁ ଚାପି ନପାରି ସମସ୍ତଙ୍କ ସହ ଠେଲା ପେଲା ହୋଇ କ୍ଲାସ ବାହାରକୁ ଯାଇ ଯାହା ଦେଖିଲି, ସେଥିରେ ମୋତେ ବି ହସ ମାଡ଼ିଲା । ଆମ ଆଡ଼ବାୟା ପ୍ରଥମ କରି ନୂଆ ପ୍ୟାଣ୍ଟ ସାର୍ଟ ପିନ୍ଧିକରି ଆସୁଛି ଓ ବେଖାପିଆ ଦିଶୁଥିବାରୁ ପିଲାଙ୍କର ଏ କୋଳାହଳ । ଅଧ୍ୟାପକମାନେ ମଧ କମନ୍‌ରୁମ୍‌ର କବାଟ ପାଖକୁ ଆସି ଏ ଦୃଶ୍ୟ ଦେଖୁଛନ୍ତି ।

ଏ ଭିତରେ ଆଉ ଗୋଟେ ଘଟଣା ଘଟିଲା । ସେଦିନ ଚ୍ୟାରିଟି ସୋ ହେବାର ସ୍ଥିରା କରାଗଲା । ଟିକେଟ ଗୋଟାକ ଦଶଟଙ୍କା ଲେଖାଏଁ । ପୁଅ ଝିଅ ସମସ୍ତେ ଯିବେ ସିନେମା ଦେଖି ଓ ଲାଭାଂଶକୁ ନିକଟସ୍ଥ କୁଷ୍ଠସଦନକୁ ଦିଆଯିବ । ଆମ ହଷ୍ଟେଲର ଟଙ୍କା ଆଦାୟ ଓ ଟିକେଟ୍ ଦେବା ଦାୟିତ୍ୱ ମୋ ଉପରେ ଥିଲା ।

ସଂଧ୍ୟାରେ ଆଡ଼ବାୟା ପାଖକୁ ଯାଇ କହିଲି- 'ରାଧାକାନ୍ତ ! ଦଶଟଙ୍କା ଦେ' ! ଚ୍ୟାରିଟି ସୋ'ର ସିନେମା ପାଇଁ ।'

ସେ ଗମ୍ଭୀର ହୋଇ କହିଲା- 'ଦଶ ଟଙ୍କା କାହିଁକି ଶହେ ଟଙ୍କା ଦେବି ହେଲେ ମୁଁ ସିନେମା ଯିବି ନାହିଁ ।'

'ଆରେ କାହିଁକି ଯିବୁନି, କ'ଣ ହେଲା ?' ସମସ୍ତେ ପଚାରିବସିଲୁ ଏକା ସାଙ୍ଗରେ ।

'କାହିଁକି ଯିବି କହ ତ ! ଯେତେ ମିଛ କଥା ସବୁ ସିନେମାରେ ଥାଏ । ଏ ମିଛକଥା ଗୁଡ଼ାକ ପଇସା ଦେଇ ଯିବି ଦେଖିବାକୁ । ତା' ମୋ ଦ୍ୱାରା 'ହେବନି ।' - ଏକା ଜିଦ୍ କଲା ।

ତଥାପି ଆମେ ଅନେକ ବୁଝାଇଲୁ, ଯାହା ହେଉ ସକାଳକୁ ସେ ରାଜିହେଲା । ଲାଗିଲା ଆମେ ଯେମିତି ଗଡ଼ ଜିଣିଲୁ ।

ଦଶଟା ବେଳେ ସିନେମା ଗଲୁ । ଗୋଟାଏ ରୋରେ ଆଗ ମୁଁ, ତା'ପରେ ବିମଳ, ତା' ପାଖକୁ ଆଡ଼ବାୟା ଓ ଅନ୍ୟମାନେ ବସିଲେ । ସିନେମା ଆରମ୍ଭ ହେଲା । ଗତାନୁଗତିକ କାହାଣୀ । ବଡ଼ଲୋକର ଝିଅ ଗରିବପୁଅର ପ୍ରେମରେ ପଡ଼ିବା ଜାଣି ଧନୀ ପିତା ରାଗିଛି । ବିରକ୍ତ ହୋଇଛି ଝିଅ ଉପରେ ଏବଂ ପୁଅକୁ ଡକାଇ ଧନଲୋଭ ଦେଖାଇ ଝିଅକୁ ଭୁଲି ସହର ଛାଡ଼ି ଚାଲିଯିବାକୁ କହିଛି । ପୁଅଟି ଟଙ୍କା ପ୍ରତ୍ୟାଖ୍ୟାନ କରି ସହର ଛାଡ଼ି ଦେଇଛି । ଅତି ହୃଦୟସ୍ପର୍ଶୀ ସେ ଦୃଶ୍ୟ । ପୁଅଟି ଗୋଟାଏ ପାହାଡ଼ ଭଳି ରାସ୍ତାଦେଇ ଜଙ୍ଗଲରେ ଚାଲୁଛି । ସେଇ ସମୟରେ ଗୋଟାଏ ଗୀତ ମଧ୍ୟ ଗାଉଛି ପୁଅ ।

ହଠାତ୍ ବିମଳ ମତେ ଖେଞ୍ଚିଦେଲା ଜୋର୍‌ରେ । ମୋ ଏକାଗ୍ରତା ଭାଙ୍ଗିଗଲା । 'ହେଃ ରହ' କହି ତା' ହାତକୁ ଠେଲିଦେଲି । ବିମଳ କିନ୍ତୁ ଚୁପ୍ ନରହି ଫିସ୍ ଫିସ୍ କରି କହିଲା- 'ଆଡ଼ବାୟା ଯିବ ବୋଲି ଉଠୁଛି ।'

ସିନେମାରୁ ମୋ ଧ୍ୟାନ ଭାଙ୍ଗିଗଲା । ପଚାରିଲି- 'କ'ଣ ହେଲା ?' ବିମଳ ଉତର ଦେଲା- ''କହୁଛି ଯେତେ ମିଛ କଥା ଏଇଠି ଖାଲି । ମୁଁ ଯିବି ।''

ବିମଳ କଥା ନସରୁଣୁ ଆଡ଼ବାୟା ଉଠି ଠିଆହେଲା । ମୁଁ ଉଝୁଙ୍କି ପଡ଼ି ତା' ହାତ ଟାଣିଦେଇ କହିଲି - 'ରାଧାକାନ୍ତ ! ବସ୍ ସରିଲେ ଯିବା । ଦେଖିଲୁ, କେତେ ଟ୍ରାଜେଡ଼ି ସିନ୍ ଟେ ।'

ସେ ମୋ ହାତକୁ ଛଡ଼େଇ ନେଇ ବଡ଼ ପାଟିରେ କହିଲା- ହେଃ, କି ଟ୍ରାଜେଡ଼ିରେ ! ଯାହାକୁ ଦୁଃଖ ପଡ଼ିବ ସେ ଏମିତି ସରୁ କଣ୍ଠରେ ଗୀତ ବୋଲି ବୋଲି ଜଙ୍ଗଲରେ ଯିବ । ଆଚ୍ଛା, ଗୀତ ବୋଲିବ ତ ଏ ବାଜା ବାଜିବ କେମିତି ? ତା' ପଛରେ କ'ଣ ଅର୍କେଷ୍ଟ୍ରା ଦଳ ବାଜା ବଜେଇ ବଜେଇ ଯାଉଛନ୍ତି ? ହେଃ- ତୁମେ ଏ କଞ୍ଚାମିଛ ଗୁଡ଼ାକ ଦେଖୁଥାଅ, ହୋ, ମୁଁ ଯାଉଛି ।' - କହି ସଟକୁ ସଟ ସେ ଉଠି ଚାଲିଗଲା ।

ସାରା ହଲ୍‌ର ପୁଅ ଝିଅମାନେ ତା' ଆଡ଼କୁ ଚାହୁଁଥାନ୍ତି । ଅଧ୍ୟକ୍ଷ ମଧ୍ୟ ଶେଷ ଧାଡ଼ିରେ ବସିଥିଲେ । ତାଙ୍କ ପାଟିରୁ ହଠାତ୍ ବାହାରି ପଡ଼ିଲା- ସତରେ ଆଡ଼ବାୟାଟାଏ ଏ ରାଧାକାନ୍ତ ।'

ଏମିତି ଭିତରେ ସରିଗଲା ଗ୍ରାଜୁଏସନ୍ ଓ ପରେ ପି.ଜି. । ସେ ଥିଲା ଦର୍ଶନର ଛାତ୍ର ଓ ମୁଁ ଅର୍ଥନୀତିର । ରାସ୍ତା ବି ଅଲଗା ହୋଇଗଲା ଜୀବିକାକୁ ନେଇ ।

ଦୁଇବର୍ଷ ପରେ ଚିଠି ପାଇଲି ସେ ସରକାରୀ କଲେଜରେ ଅଧ୍ୟାପକ ହୋଇଯାଇଛି

ଓ ତା' ବାହାଘରକୁ ଆମେ ଯେମିତି ସମସ୍ତେ ଯାଉଁ । ବିମଳ ଓ ଅନ୍ୟମାନଙ୍କ ପାଖକୁ ମଧ୍ୟ ଖବର ଦେଉଛି । ଯାହା ବି ହେଉ ଯେମିତି ହେଲେ ଯିବାକୁ ପଡ଼ିବ ଭାବି ଗଲି । ଦେଖାହେଲା ବିମଳ ଓ ଅନ୍ୟମାନଙ୍କ ସହ ସେଦିନ ତା' ବାହାଘରର ରିସେପ୍‌ସନ୍‌ରେ ।

ବିମଳ ମନେ ପକାଇ ଦେଲା ସେଇ ବିତର୍କରେ ତା' ବକ୍ତବ୍ୟର ସାରାଂଶକୁ ମୁଁ ପ୍ରତିବାଦ କରି କହିଲି- 'ହେଃ ତାରୁଣ୍ୟର ଚପଳତା ଆଉ କ'ଣ ଥିବ ନା ସେଇ ପ୍ରତିଜ୍ଞା ଅନୁସାରେ ସ୍ତ୍ରୀ ତା'ର ହୋଇଥିବ !'

ବିମଳ କହିଲା- 'ହଉ ଆଗ ମୁହଁ ଦେଖାଯାଉ ତା'ପରେ ନିର୍ଣ୍ଣୟ କରିବା ।'

ରାଧାକାନ୍ତର ବାହାଘର ତା' ଗାଁରେ ହିଁ ହୋଇଥିଲା । ରିସେପ୍‌ସନ୍ କହିଲେ ତା' ଗାଁଲୋକ ଏବଂ ଆମ ବନ୍ଧୁବର୍ଗଙ୍କ ପାଇଁ ଭୋଜିଭାତ । ଖାଇବା ପୂର୍ବରୁ ଆମେ ଆଠ ଜଣ ସାଙ୍ଗ ଉପହାର ଧରି ବନ୍ଧୁପତ୍ନୀଙ୍କୁ ଦେଖିବାର ଆଗ୍ରହ ପ୍ରକାଶ କଲୁ ଆଡ଼ବାୟା ଆଗରେ । ସେ ଆମକୁ ନେଇ ଚାଲିଲା ମାଟି ବାରଣ୍ଡା ଦେଇ ଆଟୁ ଘର ଆଡ଼କୁ । ପରଦା ଆଡ଼େଇ ଦେଇ ଆମେ ଘରେ ପାଦଦେଲୁ । ସେ ପତ୍ନୀ ସହିତ ପରିଚୟ କରାଇ ଦେଲା - 'ଇଏ ନନ୍ଦିତା, ଆଉ ଏମାନେ ସାଙ୍ଗ ।' ଜଣ ଜଣ କରି ନାଁ କହି ଚିହ୍ନାଇଦେଲା । ମୁଁ ବଢ଼ାଇ ଦେଲି ଉପହାରଟିକୁ । ଦୁଇ ମିନିଟ୍ ବାଦ୍ ଫେରି ପଡ଼ିଲୁ ସେଠୁ ।

ତା' ପରେ ଖିଆପିଆର ପର୍ବ । ହେଲେ ବିମଳ ଆଉ ଚେୟାରରୁ ଉଠିଲା ନାହିଁ କି ଖାଇବା ପାଇଁ ରାଜି ହେଲାନାହିଁ । ମୁଁ ତା ହାତଧରି ଉଠାଇଲା ବେଳକୁ ସେ କହିଲା- 'ବାବ୍‌ଲୁରେ, ଆଉ ଡାକନା ମୋତେ । ତା' ସ୍ତ୍ରୀକୁ ଦେଖିବା ବେଳକୁ ମୋ ମୁଣ୍ଡ ଚକ୍କର ଖାଉଛି, ଅନ୍ତରାତ୍ମା ମୋର ପୂରିଯାଇଛି । ଆରେ ଏ ବିକଟଦର୍ଶନା ରାତ୍ରି ସ୍ୱରୂପିଣୀ ନାରୀଟିକୁ ବିବାହ କରିବା ପୂର୍ବରୁ ଯଦି ଆଡ଼ବାୟା ମରିଯାଇଥାନ୍ତା ତେବେ ମୋର ମୋଟେ ଦୁଃଖ ନଥାନ୍ତାରେ । ହେ - ତୁ ଯଦି ଏମିତି ସ୍ତ୍ରୀ ପାଉ ମୋତେ ମୋଟେ ନିମନ୍ତ୍ରଣ କରିବୁନି । ଏମିତି ଗୋଟେ ସ୍ତ୍ରୀ ଦେଖିଲେ ମୁଁ ହାର୍ଟଫେଲ୍ କରିଯିବି ।'

ଅତି ବାଧରେ ବିମଳ ଖାଇବାକୁ ଗଲା, ହେଲେ ଟିକେ ଟିକେ ହାତମାରି ଉଠି ଆସିଲା । ଫେରିବା ବାଟରେ ମୁଁ ମଧ୍ୟ ଆଡ଼ବାୟାର ରୁଚି ଓ ନନ୍ଦିତାର ଚେହେରାକୁ ବିଶ୍ଳେଷଣ କରୁଥିଲି । ରାତ୍ରିପରି କଳାରଙ୍ଗ, ବେହେଡ଼ା ଦାନ୍ତ, ଗୋଲ୍ ଆଖି ଓ ହାଡୁଆ ଚେହେରାକୁ କେମିତି ସେ ପସନ୍ଦ କଲା ଯେ ? କଳା ଝିଅଙ୍କର ଲାବଣ୍ୟ ଭିନ୍ନ ବୋଲି ମୋର ମନେହୁଏ । ସେମାନଙ୍କର ସୌନ୍ଦର୍ଯ୍ୟ ସଂଧ୍ୟାପରି ଅନନ୍ୟ । ହେଲେ ଇଏ ତ ରାମାୟଣର ସୂପର୍ଣଖା ପରି । କେମିତି ରାଧାକାନ୍ତ ୟା'କୁ ନେଇ ସଂସାର କରିବ ଯେ ? ବାହାରକୁ ବାହାରି ପାରିବ ତ ?

ତା'ପରର ତିନିବର୍ଷ ପର୍ଯ୍ୟନ୍ତ ଆଡ଼ବାୟା ସହିତ ମୋର ଏତେଟା ପ୍ରାୟ ଯୋଗାଯୋଗ ରହିଲା ନାହିଁ । ବାହାଘରର ନିମନ୍ତ୍ରଣ ପତ୍ର ପଠାଇଥିଲି । ଶାରୀରିକ ଅସୁସ୍ଥତା ହେତୁ ନଆସିପାରିବାରୁ କ୍ଷମା ମାଗି ଟେଲିଗ୍ରାମ୍‌ଟେ କରିଥିଲା । ବ୍ୟସ୍ତତା ମଧ୍ୟରେ

ମୁଁ ବି ଚିଠି ଦେଇ ପାରିନଥିଲି । ହେଲେ ସୁନ୍ଦରୀ ଝିଅ ସଂପର୍କିତ ତା' ମତକୁ ଆଦୌ ଭୁଲି ପାରିନଥିଲି । ସେଥିପାଇଁ ବୋଉକୁ କହିଥିଲି ଯେ ସୁନ୍ଦରୀ ଝିଅ ପାଇଁ ବ୍ୟସ୍ତ ହେବୁନି । ସୌନ୍ଦର୍ଯ୍ୟରୁ କ'ଣ ମିଳିବ ?

ବୋଉର ହସିଲା ଦୃଷ୍ଟି ସେଦିନ ଲିଭି ଯାଇଥିଲା । ସ୍ପଷ୍ଟ ଭାବେ ପଚାରିଥିଲା- 'କାହିଁକି ଏ କଥା କହୁଛୁ ? ସୁନ୍ଦରୀ ଝିଅଠାରୁ କ'ଣ ଧୋକା ଖାଇଛୁ କି ?'

ମୋ ମୁଣ୍ଡ ତଳକୁ ହୋଇଗଲା । ଅତି କଷ୍ଟରେ କହିଲି- 'ନାଁ - ଏମିତି କ'ଣ କହୁଛୁ ?'

ବୋଉ ଅନ୍ୟଆଡ଼େ ଦୃଷ୍ଟି ଫେରାଇ ନେଇ କହିଲା- 'ଠିକ୍ ଅଛି, ସୁନ୍ଦରୀ ଝିଅ ପାଇଁ ବ୍ୟସ୍ତ ହେବିନି ବୋଲି କହୁଛୁ ତ ତେବେ ଅସୁନ୍ଦରୀଟେ ଖୋଜିବି । ରାଜି ?'

ସେ ଏତେ ସ୍ପଷ୍ଟଭାବେ ପଚାରିଲା ଯେ ମୁଁ ବିକଳ ଭାବେ ହଁ ମାରିଦେଇ ତା' ସାମ୍ନାରୁ ଖସି ଆସିଲି ।

ବାହାଘର ପରେ ପ୍ରଥମ ରାତ୍ରିରେ ଭେଟିଲି ମୋ ପତ୍ନୀ ଦେବୀକୁ । ମନେ ପଡ଼ିଲା ବୋଉ କଥା ହଁ- ମୋ ଭାଗ୍ୟରେ ଯାହା ଥିବ । ସଂତ୍ରସ୍ତ ଭାବରେ ପାଖରେ ବସି ଧୀରେ ଓଢ଼ଣା ଟେକିଦେଇ ନିଜେ ବିସ୍ମିତ ଓ ହତଚକିତ ହୋଇ ଉଠିଲି । ଦେବୀ କେବଳ ନାମକରଣକୁ ସାର୍ଥକ କରି ନଥିଲା, ପ୍ରକୃତରେ ଦେବୀଙ୍କ ପରି ଚେହେରା ହିଁ ଥିଲା । ଦୁଗ୍ଧ ଅଳତାର ରଙ୍ଗ, ପାନପତ୍ରୀ ମୁହଁରେ ସମୁଦ୍ର ପରି କଥାକୁହା ଆଖି, ଲମ୍ବା ନାକ, ଉଜ୍ଜ୍ୱଳ କପାଳ ଓ ଆକର୍ଷଣୀୟ ରକ୍ତିମ ଓଠ ସହ ରାତ୍ରି ପରି କେଶଗୁଚ୍ଛ ଦେଖି ମୁଁ ଅଭିଭୂତ ହୋଇ ପଡ଼ିଲି । ଏତେ ସୌନ୍ଦର୍ଯ୍ୟ କ'ଣ ସମ୍ଭବ ଏ ମାଟିର ଦେହରେ ! ଦେବୀର ମଥାରେ ଚକ୍ ଚକ୍ କରି ଉଠୁଥିଲା ସୂର୍ଯ୍ୟ ପରି ରକ୍ତିମ ସିନ୍ଦୁର ଟୋପା ।

ସେଇ ଦେବୀକୁ ପାଇ ମୁଁ ଧନ୍ୟ । ଦେବୀର ଟେଲିକମ୍ ଅଫିସ୍ ମୋ ବ୍ୟାଙ୍କ ପାଖରେ । ତେଣୁ ଯିବାଆସିବାରେ କିଛି ଅସୁବିଧା ହୁଏନି । ଏବେ ବୋଉ ମଧ୍ୟ ପାଖରେ ଆସି ଅଛି । ସକାଳୁ ବୋଉ ଉଠିବା ପୂର୍ବରୁ ଦେବୀ ସବୁ କାମ ସାରିଦେଇ ଗାଧୋଇ ପଡ଼ି ଟିଫିନ୍ ଓ ସାରାଦିନର ଖାଇବା ରୋଷେଇ କରି ରଖେ । ବୋଉର ସବୁ ସୁବିଧା, ପ୍ରତ୍ୟେକ କାମ ନିଜେ ହିଁ ଖୁସି ମନରେ କରେ । ଏମିତି କି ନିଜେ ମଧ୍ୟ ପାଖ ମାର୍କେଟକୁ ଯାଇ ମାର୍କେଟିଂ କରି ଆଣେ । କେଉଁଦିନ ତା' ପାଟିରୁ ବାହାରେ ନି ଯେ ଏଇଟା ଦରକାର, ସେଇଟା ଆଣ ଇତ୍ୟାଦି । ବରଂ ସ୍ୱାଭାବିକ ଭାବେ ସେ କାମ କରିଯାଏ । ବୋଉର ପ୍ରତ୍ୟେକ କଥାକୁ ଖୁସିରେ ମାନି ନିଏ । ବୋଉକୁ ଅନେକ ସମୟରେ ନିଜେ ମନ୍ଦିର, ପାର୍କ ଇତ୍ୟାଦି ନେଇଯାଏ । ସଂଧ୍ୟାରେ ଭାଗବତ ପଢ଼ି ଶୁଣାଏ ଓ ରାତିରେ ଶୋଇବା ପୂର୍ବରୁ ଟିକେ ମୋଡ଼ିଦିଏ । ବୋଉ ଦେବୀକୁ ପାଇ ଖୁବ୍ ଖୁସି ।

ଏମିତିରେ ବି ଦେବୀ ନିଜ ପାଇଁ ପ୍ରାୟ କିଛି କିଣେନି । ବିମଳ ସହ ଦିନେ ମାର୍କେଟ୍‌ରେ ଦେଖାହେଲା । ତା' ପତ୍ନୀକୁ ସାଙ୍ଗରେ ନେଇ ଆସିଥିଲା ଓ ସେମାନେ

ଜୋର୍ କଲେ ସାଙ୍ଗରେ ଦୋକାନ ଯିବାପାଇଁ । ବିମଳ କହିଲା - 'ଆରେ ଭାଉଜ ପାଇଁ କ'ଣ କିଣ ।' ବାଧରେ ପଡ଼ି ଦେବୀ ପାଇଁ ଗୋଟେ କ୍ରିମ୍‌ସନ୍ କଲର୍‌ର ଲିପ୍‌ଷ୍ଟିକ୍ କିଣିଲି । ଫେରିବା ବେଳେ ଭାବୁଥାଏ ଦେବୀ ନିଶ୍ଚୟ ଖୁସିହେବ । ଘରେ ପହଞ୍ଚି ଦେଖିଲି ବୋଉ ଯାଇଛି ପଡ଼ିଶାଘରକୁ ଓ ଦେବୀ ରୋଷେଇ ଘରେ କ'ଣ କରୁଛି । ଦେବୀକୁ ଡାକିଲି ଓ ସେ ହାତ ପୋଛିଦେଇ ହସି ହସି ବାହାରି ଆସିଲା । କହିଲି- 'ତୁମପାଇଁ ଗୋଟେ ଜିନିଷ ଆଣିଛି । କୁହ ତ ଦେଖି କ'ଣ ?'

ଦେବୀ ହସିଲା, କହିଲା- 'ଜିନିଷ ତୁମ ପାଖରେ ମୁଁ କେମିତି ଉତ୍ତର ଦେବି ।'

ମୁଁ ପକେଟରୁ ଲିପ୍‌ଷ୍ଟିକ୍ ବାହାର କରି ଦେଲି । ଦେବୀ ଦେଖୁ ଦେଖୁ ମୁଣ୍ଡରେ ହାତଦେଇ ବସି ପଡ଼ିଲା - 'ହେ ଭଗବାନ, ତୁମ ମୁଣ୍ଡରେ ଇଏ କି ବୁଦ୍ଧି ପଶିଲା । ଯେତିକି ଅଛି ସରୁନି, ପୁଣି ଗୋଟେ ।'

ତା' ଉତ୍ତରରେ ମୋ ମୁହଁ ଶୁଖିଗଲା । ମୁଁ ଜାଣେ ଦେବୀର କ୍ରିମ୍‌ସନ୍ ଆଦୌ ପସନ୍ଦ ନୁହେଁ ବରଂ କେବେ କେମିତି ହାଲ୍‌କା ବ୍ରାଉନ୍ ଲଗାଏ ଓ ତା' ମୁହଁକୁ ଖୁବ୍ ମାନେ । ମୋ ମୁହଁର ବିକଳ ଭାବ ପଢ଼ିନେଇ କହିଲା- 'ଠିକ୍ ଅଛି, ଆଣିଛ ତ ଦିଅ ।'

ତା' ପରଦିନ ସଂଧ୍ୟାରେ ଦେବୀ ଟିକେ ଡେରିରେ ଆସିଲା । ଲୁଗାପଟା ବଦଳି ଟିଫିନ୍ କରି ବୋଉକୁ ଓ ମୋତେ ଦେଲା । ବୋଉ ବସି ଟିଭି, ଦେଖିବା ବେଳେ ଦେବୀ ବେଡ୍‌ରୁମ୍‌କୁ ମୋ ପାଖକୁ ଆସିଲା ଓ ତା' ବ୍ୟାଗ୍ ଭିତରୁ ଗୋଟେ ସୁନ୍ଦର ଜରିଗୁଡ଼ା ପ୍ୟାକେଟ୍ ବାହାର କରିଦେଲା ।

ମୋ ପାଟିରୁ ଅଚାନକ ବାହାରି ଆସିଲା- 'ଇଏ କ'ଣ ? ଓଃ - କାଲି ଘଟଣାର ଇଏ ପ୍ରତି ଉପହାର ନା କ'ଣ ?'

ଦେବୀ ରହସ୍ୟଭରା ହସଟେ ହସି ଦେଇ କହିଲା 'ଉହୁଁ, ଖୋଲି ଦେଖ ।'

ଖୋଲିଦେଇ ଦେଖିଲି ସୁନ୍ଦର ପରଫ୍ୟୁମ୍ ପୁଣି ମୋର ଯାହା ଅତି ପ୍ରିୟ । କହିଲି- 'ୟାକୁ ଆଣିବାର କ'ଣ ଆବଶ୍ୟକତା ଥିଲା ! କ'ଣ ଋଣ ସୁଝାଉଛ ।'

'ଜମା ନୁହେଁ । ସେ ଲିପ୍‌ଷ୍ଟିକ୍‌କୁ ବଦଳ କରିଦେଇ ତୁମପାଇଁ ଏ ପରଫ୍ୟୁମ୍ ନେଇ ଆସିଲି । ତୁମର ପ୍ରତିଟି ପ୍ରିୟ ପସନ୍ଦରେ ମୋର ଖୁସି ।' ଦେବୀର ଆନ୍ତରିକତାରେ ମୋ ହୃଦୟ ଭିତରେ ଯେମିତି ଖୁସିର ଲକ୍ଷେ ଜୁଆର ଉଠିଲା । ଅଚାନକ ମୋର ମନେ ପଡ଼ିଲା ଆଡ଼ବାୟା କଥା । କହୁଥିଲା ନା ସୁନ୍ଦରୀ ପତ୍ନୀମାନେ କସ୍‌ମେଟିକ୍ସ କିଣାଇବାକୁ ପତିକୁ ପଠାନ୍ତି । ହେଲେ ଦେବୀ ପରି ସୁନ୍ଦରୀ ପତ୍ନୀ ତ କାହିଁ ବରାଦ ଦେଉନି ବରଂ ଘରଟାକୁ ନିଜେ କାନ୍ଧକୁ ଉଠେଇ ନେଇଛି । ହସି ହସି କାମ କରୁଛି । ବୋଉ ଆସିବାପରେ ତା' ଦରମା ନେଇ ବୋଉକୁ ଦେଇଥିଲା ଓ କହିଥିଲା- 'ମା' ଆପଣ ଏ ଟଙ୍କା ରଖନ୍ତୁ । ଦରକାର ହେଲେ ମାଗିବି ।' ଏକଥା ମୁଁ ଦିନେ ବି କରିନାହିଁ । ବରଂ ନିଜେ ଆଲମିରାରେ ସେଫରେ ରଖିଦିଏ । ନିଜେ ମନଇଚ୍ଛା ଖର୍ଚ୍ଚ କରେ । ସେଦିନ ବୋଉର ନୀରବ ଚାହାଣୀ ସାମ୍ନାରେ ମୁଣ୍ଡ ନଇଁ ଯାଇଥିଲା । ଆଉ ଏ ଲିପ୍‌ଷ୍ଟିକ୍ ଘଟଣାରୁ ଦେବୀ ଯେ ନିହାତି ଭିନ୍ନ

ଅନ୍ତତଃ ଆଡ଼ବାୟାର ସମସ୍ତ ଯୁକ୍ତିରୁ ଅଲଗା ସେ କଥା ସ୍ପଷ୍ଟ ହୋଇଯାଇଥିଲା । ଇଚ୍ଛା ହେଉଥିଲା କହିବାକୁ 'ଦେଖ୍‌ରେ ଆଡ଼ବାୟା, ଦେବୀପରି ସୁନ୍ଦରୀ ସ୍ତ୍ରୀ ମଧ୍ୟ ଏ ସଂସାରରେ ଅଛନ୍ତି ।'

ଏ ଘଟଣାର ଠିକ୍ ମାସକ ପରେ ସପ୍ତାହକ ପାଇଁ ଟୁର୍‌ରେ ଯାଇ ଫେରିବା ପରେ ଦେବୀ ମୋତେ ମନେ ପକାଇ ଦେବାପରି ପଚାରିଲା - 'ଆଚ୍ଛା ଗ୍ରାଜୁଏସନ୍ ବେଳେ ତୁମର ଅତି ଅନ୍ତରଙ୍ଗ ବନ୍ଧୁ କିଏ ଥିଲେ କୁହ ତ?'

ମୁଁ ମନେ ପକାଇବାକୁ ଚେଷ୍ଟା କରୁଥିବା ବେଳେ ଦେବୀ କହିଲା- 'ରାଧାକାନ୍ତ ନା ?'

ମୁଁ ତା' କଥାକୁ ଦୋହରାଇ ଦେଇ ଶବ୍ଦଟିକୁ ଉଚ୍ଚାରଣ କଲି - 'ରାଧାକାନ୍ତ, କେଉଁ ରାଧାକାନ୍ତ ?'

ଦେବୀର ମୁହଁରେ ସନ୍ଦେହର ଛାଇ ସ୍ପଷ୍ଟ ଦିଶିଗଲା ବେଳକୁ ମୋର ହଠାତ୍ ମନେ ପଡ଼ିଗଲା - 'ରାଧାକାନ୍ତ, ଓଃ ଆଡ଼ବାୟା ତ ? ଆରେ ହଁ ହଁ, କ'ଣ ହେଲା ? ତୁମେ କେମିତି ଜାଣିଲ ?' ଦେବୀର ମୁହଁ ଚମକି ଉଠିଲା ଆଡ଼ବାୟା ନାଁରେ । ଆଖି ବଡ଼ ବଡ଼ କରି କହିଲା- 'ଏଃ, ଏମିତି କ'ଣ କହୁଛ । ସେ ଭଦ୍ରଲୋକ ଦୁଇଦିନ ତଳେ ଆସିଥିଲେ ଓ ତୁମ କଥା ପଚାରୁଥିଲେ ।'

'ଆସିଥିଲେ ମାନେ ତୁମେ ଓ ବୋଉ ତାକୁ ରହିବାକୁ କହିଲନି । ଅଟକାଇ ଥା'ନ୍ତ ତ ? ମୋ ଆଗ୍ରହ ଦେଖି ଦେବୀ କହିଲା- 'ଆରେ କେମିତି ରଖିଥା'ନ୍ତୁ କୁହ ତ ? ସେ ପରା ଟ୍ରାନ୍‌ସଫର ହୋଇ ଏଠିକି ଆସିଛନ୍ତି । ଆଉ ସବୁଠୁ ମଜା କଥା ଆରପଟ ହଳଦିଆ କୋଠାରେ ରହୁଛନ୍ତି ।'

ମୁଁ ଅତ୍ୟଧିକ ଆଗ୍ରହରେ ଆମ ବେଡ୍‌ରୁମ୍‌ର ସ୍କ୍ରିନ୍ ଟେକିଦେଲି ଓ ଦେବୀ ପାଚେରୀ ଆରପଟର କୋଠା ଆଡ଼କୁ ହାତ ଦେଖାଇ ଦେଲା । 'ଓଃ - ଏଇଠି ତାହେଲେ ଆଡ଼ବାୟା ରହୁଛି ।' - ମୋ ପାଟିରୁ ସ୍ୱତସ୍ଫୂର୍ତ୍ତ ଭାବେ ଖସି ଆସିଲା ଏ ପଦକ ।

ପୁଣି ପଚାରିଲି - 'ଆଉ କିଏ କିଏ ଅଛନ୍ତି ? ଫ୍ୟାମିଲି ଆଣିଛି ନା ନାହିଁ ?'

ଦେବୀ କହିଲା- 'ହଁ କହୁଥିଲେ ଘର ସେଟ୍ ହେଲେ ଫ୍ୟାମିଲି ଆଣିବେ ।

ସେଦିନ ସଂଧ୍ୟାରେ ଦେବୀ, ମୁଁ ବୋଉକୁ ନେଇ ଆଡ଼ବାୟାର ଘରକୁ ଗଲୁ । ତାକୁ ଘର ସଜାଡ଼ିବାରେ ସାହାଯ୍ୟ କଲୁ ଓ ସାଙ୍ଗରେ ରାତି ଖାଇବା ପାଇଁ ଡାକି ଆଣିଲୁ । ରାଧାକାନ୍ତ, ବୋଉ ଓ ଦେବୀ ସହ କଥା ହେଲା ଅନେକ ରାତିଯାଏ ଓ କଥା ପ୍ରସଙ୍ଗରେ ସୂଚାଇ ଦେଲା ଯେ ନନ୍ଦିତାକୁ ଏଇ ରବିବାର ଦିନ ଯାଇ ନେଇ ଆସିବ ।

ରାଧାକାନ୍ତ ଆଉ ଯିବାକୁ ପଡ଼ିଲାନି ବରଂ ତା' ପରଦିନ ସକାଳେ ନନ୍ଦିତା ତା' ସାନଭାଇକୁ ଧରି ନିଜେ ଆସି ଏ ସହରରେ ପହଞ୍ଚିଗଲା ।

ସେଇଦିନ ସଂଧ୍ୟାରେ ନନ୍ଦିତାକୁ ଘରକୁ ଆସିବାର ନିମନ୍ତ୍ରଣ ଜଣାଇବାକୁ ଯାଇ ଦେବୀ ଆତଙ୍କମିଶା ବିସ୍ମୟ ବିମୂଢ଼ ହୋଇପଡ଼ିଲା । ଘରକୁ ଫେରିବା ବେଳେ ମୋତେ କହିଲା - 'ଏ, ତୁମେ ମିଛ କହୁନ ତ ?'

ସନ୍ଦେହରେ ପଡ଼ି କହିଲା- 'ମିଛ ? ମିଛ କ'ଣ ପାଇଁ କହିବି ?'

'ତେବେ ନନ୍ଦିତା କ'ଣ ସତରେ ରାଧାକାନ୍ତ ବାବୁଙ୍କର ସ୍ତ୍ରୀ ? ବୋଧହୁଏ କୌଣସି ଏକ ଅସୁବିଧା କିମ୍ବା ପରିସ୍ଥିତିର ଚାପରେ ପଡ଼ି ବିବାହ କରିଛନ୍ତି ନୁହେଁ ?' ଦେବୀର ସନ୍ଦେହକୁ ଦୂର କରିଦେବାକୁ ଯାଇ ମୂଳରୁ ଶେଷଯାଏ ସବୁ କଥା କହିଲି ।

ନନ୍ଦିତା ଛୁଟିଦିନମାନଙ୍କରେ ଆମ ଘରକୁ ଆସେ । ବେଳେ ବେଳେ ସଂଧ୍ୟାରେ ବି ଆସେ । ଦେବୀ ତା' ରୁକ୍ଷ ମୁହଁରେ କ୍ରିମ୍, ପାଉଡର ଓ ଫଟା ଓଠରେ ଟିକେ ଲିପ୍‌ଷ୍ଟିକ୍ ଲଗାଇ ଦେଇ ଅଯତ୍ନବର୍ଦ୍ଧିତ କେଶରେ କ୍ଲିପ୍‌ମାରି ସଜାଇଦିଏ ।

ଦିନେ ଦେବୀଠାରୁ ଶୁଣିଲି ଯେ ନନ୍ଦିତା ଜିଦ୍ କରିଚି ବ୍ୟୁଟିପାର୍ଲର୍ ଯିବ । ରାଧାକାନ୍ତ, ମନା କରିବାରୁ ନନ୍ଦିତା ଶୁଣାଇଦେଲା ଯେ, ତା'ଠାରୁ ଆହୁରି ଅସୁନ୍ଦରୀମାନେ ବ୍ୟୁଟିପାର୍ଲର ଯାଇ କସ୍‌ମେଟିକ୍ସ ବୋଲି ସୁନ୍ଦରୀ ହେଉଛନ୍ତି । ସେ ବି ଯିବ । ରାଧାକାନ୍ତ ତ ମୂଳରୁ ସୁନ୍ଦରୀ ବିପକ୍ଷରେ । ତେଣୁ ଦୁହେଁ ଦୁହିଁଙ୍କ ଜିଦ୍‌ରେ ଅଟଳ ଓ ଗତକାଲି ଠାରୁ କଥାବାର୍ତ୍ତା ବନ୍ଧ ବନ୍ଦ ।

ଅଫିସ୍‌ରୁ ଫେରିବା ବାଟରେ ରାଧାକାନ୍ତ ସହ ହଠାତ୍ ଦେଖା ହୋଇଗଲା ଓ କଥା ଛଳରେ ନନ୍ଦିତା କେମିତି ଅଛି ବୋଲି ପଚାରିବାରୁ ସେ କଥାର ଆମୂଳଚୂଳ ଗାଇଗଲା । ତାକୁ ସାନ୍ତ୍ୱନା ଦେଇ କହିଲି- 'ଜୀବନରେ ଏମିତି କେତେ କଥା ଘଟେ ଓ ବଂଚିବାକୁ ହେଲେ କଂପ୍ରୋମାଇଜ୍ କରିବାକୁ ପଡ଼େ । ତୁ ଅଡ଼ି ବସିଲେ କ'ଣ ହେବ । ଯା' ନେଇ ଯା', ସେ ବଳେ ବୁଝିଯିବେ ନି କି ।'

'ବଳେ ବୁଝିବ ? ତେବେ କୋଉଦିନ ଚବିଶି ଘଣ୍ଟା ତ ଅଇନା ଦେଖାରେ ଗଲା । ଘରର ଝାଡୁଠାରୁ ହାଣ୍ଡି ଚୁଲ୍ଲି ସଫାସଫି ସବୁ ତ ମୁଁ କଲି । ତାକୁ ସଜବାଜ ଓ ଅଇନା ଦେଖାରୁ ମୁକ୍ତି ମିଳିଲେ ତ ? ହେଲେ କେବେ ବୁଝିବ ଯେ । କଥାରେ ଅଛି ଯୌବନେ ମର୍କଟୀ ରମ୍ୟା । ସେତକ ତ ତା' ପାଖରେ ନାହିଁ । କି ମୁଁ ମଧ କେବେ ଖୋଜିନାହିଁ । ଜାଣିଶୁଣି ଅସୁନ୍ଦରୀ ସ୍ତ୍ରୀଟିଏ ଆଣିଥିଲି କେବଳ ଏଇ ବିପଦରେ ନପଡ଼ିବା ପାଇଁ । ହେଲେ ଯାହା ଦେଖୁଛି ବିପଦ ହିଁ ବିପଦ । ଠିକ୍ ଅଛି ନେଇଯିବି । ତୁ ଯେତେବେଳେ କହୁଛୁ, ତୋ କଥା ହିଁ ରହୁ ।'

ତା' ଦୁଇଦିନ ବାଦ୍ ରାଧାକାନ୍ତ ଓ ନନ୍ଦିତା ଯେତେବେଳେ ଆମ ଘରକୁ ଆସିଲେ, ବୋଉ ତ ମୂଳରୁ ନନ୍ଦିତାକୁ ଚିହ୍ନିପାରିଲାନି ବରଂ ରାଧାକାନ୍ତର କଲେଜ ସାଙ୍ଗ ବୋଲି ଧରିନେଇ ସେ କଥା ପଚାରିଦେଲା । ନନ୍ଦିତା ଗହଳ ଭ୍ରୁଲତାକୁ କପାଳ ଉପରକୁ ସରୁ କରିଦେଇଛି ଓ କେଶକୁ କାନଯାଏ କାଟି ଆଗ ପଟକୁ ଛୋଟ ଛୋଟ କରି କପାଳଯାଏ ପକାଇ ଦେଇଛି । ମୁହଁ ସାରା ଉଗ୍ର ପସାଧନ, ଓଠରେ ଦୃଷ୍ଟିକଟୁ ଲିପ୍‌ଷ୍ଟିକ୍‌ର ବହଳ ପ୍ରଲେପ । ନନ୍ଦିତାର ଏ ରୂପ ଦେଖି ଦେବୀ ସମସ୍ତଙ୍କଠାରୁ ଦୃଷ୍ଟି ବଂଚେଇ ନେଇ ମୋତେ ବିକଳରେ ଚାହିଲା । ମୁଁ ମଧ ନିରୁପାୟ ଭାବେ ଦେବୀର ମୁହଁକୁ ଦେଖିଲି । ଦେବୀ ସହ ନନ୍ଦିତା ଭିତରକୁ ଗଲା ପରେ ଆଡ଼ବାୟାର ପାଟି ଖୋଲିଲା । କହିଲା- 'ଦେଖିଲୁ ତ

ଏବେ । ଏଇଥି ପାଇଁ ମୋତେ କହୁଥିଲୁ ନେଇଯା' ବୋଲି । ଏବେ ମୋତେ ଲାଜ ଲାଗୁଛି ଯା'କୁ ସାଙ୍ଗରେ ଧରି ରାସ୍ତାରେ ଚାଲିବାକୁ । କ'ଣ କରିବି ନିଜ କର୍ମ ତ !'

ଦୁଇବର୍ଷ ଭିତରେ ରାଧାକାନ୍ତ ବଦଳି ହୋଇଗଲା ଏକ ମାଳ ଅଂଚଳକୁ । ଏଇ ସମୟ ଭିତରେ ସେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲା ନନ୍ଦିତାକୁ ନେଇ, ନନ୍ଦିତାର କସ୍‌ମେଟିକ୍ସ ଓ ବ୍ୟୁଟିପାର୍ଲର ଇତ୍ୟାଦିକୁ ନେଇ । ଅନେକ ଥର ଅଶାନ୍ତିର ଝଡ଼ ଉଠିଛି, ଅଭିମାନ, କଥା କଟାକଟି, କଥା ବନ୍ଦ ଭିତରେ ଦିନ କଟିଛି । ଆମେ ସମାଧାନ ପାଇଁ ଯାଇଛୁ । ଗୁଡ଼ାଏ ସମୟ ବିତାଇଛୁ ବୁଝାଇବାରେ, ଝଗଡ଼ା ମେଣ୍ଟାଇବାରେ ।

ଏଠୁ ରାଧାକାନ୍ତ ଯିବାପରେ ମୁଁ କିଛି ପରିମାଣରେ ଆଶ୍ୱସ୍ତ ହୋଇଥିଲି । ବୋଉ ସାନଭାଇ ପାଖକୁ ଚାଲିଯାଇଥିଲା ଏବଂ ଦେବୀର ମୋର ଗତାନୁଗତିକ ଜୀବନ ବିତାଉଥିଲୁ । ଅବଶ୍ୟ ଦେବୀର ସ୍ନେହ, ସାନ୍ନିଧରେ ମୁଁ ବେଶ୍ ସୁଖୀ ଥିଲି ।

ଏ ଭିତରେ କିଛି ବର୍ଷ ବିତିଯାଇଛି । କିଛି ଗ୍ରୀଷ୍ମ, ବର୍ଷା, ଶୀତ ଚାଲିଯିବା ପରେ, କ୍ୟାଲେଣ୍ଡରର ପୃଷ୍ଠା ବଦଳିବା ପରେ ମଧ ଦେବୀ ସେମିତି ଦେବୀଟିଏ ପରି ମୋର ମନେ ହୋଇଛି । ଦେବୀକୁ ଛାଡ଼ି ଜୀବନ ବଂଚିବାକୁ ହୁଏ ଏକଥା ଭାବି ପାରେନି । ଦେବୀ ଯେମିତି ମୋ ନିଃଶ୍ୱାସପ୍ରଶ୍ୱାସ, ଜୀବନର ସ୍ପନ୍ଦନ, ଆଖି ତଳର ନିଦ ଓ ହୃଦୟ ଭିତରର ସମସ୍ତ ଭଲପାଇବା ।

ଅଚାନକ ଚିଠି ପାଇଲି ପ୍ରମୋଶନ ହେତୁ ମାଳଅଂଚଳକୁ ଟ୍ରାନ୍ସଫର । ଯେତିକି ଖୁସିଲାଗିଲା ପ୍ରମୋଶନ ପାଇଁ, ତା'ଠାରୁ ଅଧିକ ଦୁଃଖିତ ହେଲି ଦେବୀଠାରୁ ଦୂରରେ ରହିବାକୁ ପଡ଼ିବ ବୋଲି । ଦେବୀକୁ ଛାଡ଼ି ଦିନ କଟାଇବା ଏକ ଦୁଃସହ ବ୍ୟାପାର ବୋଲି ଜାଣିଥିଲି ।

ଦେବୀ ମୋତେ ଆଶ୍ୱସ୍ତ କରିବାକୁ ଯାଇ କହିଲା- 'ତୁମେ କାହିଁକି ବ୍ୟସ୍ତ ହେଉଛ ? ଯଦି ସେଠି ଭଲ ନଲାଗିବ ତେବେ ମୁଁ ଚାକିରି ଛାଡ଼ିଦେଇ ତୁମ ପାଖକୁ ଚାଲିଯିବି । ହେଲା ?'

ସେଇ ସପ୍ତାହରେ ମାଳ ଅଂଚଳକୁ ଗଲି । ବ୍ୟାଙ୍କରେ ମ୍ୟାନେଜର ଭାବେ ଯୋଗଦେଲି । ଅତିବେଶୀରେ ପାଞ୍ଚ-ଛଅ ଜଣ ଷ୍ଟାଫ୍ । ହେଲେ କାମ ବେଶି । ପାଖରେ ଘରଭଡ଼ା ନେଇ ରହିଲି ଓ ବ୍ୟାଙ୍କର ନୂଆ ପିଅନ ପିଲାଟି ସକାଳୁ ଆସି ରୋଷେଇ କରି ଦେଇଯାଏ, ବାକି କାମଦାମ ମଧ କରିଦିଏ । ଦିନେ ଦିନେ ସଂଧ୍ୟାରେ ତା ସହ ମାର୍କେଟ୍ ବୁଲିଯାଏ ।

ଦିନେ ସଂଧ୍ୟାରେ ପରିବା ଦୋକାନ ପାଖରେ ଯାଉ ଯାଉ ମୋ ପାଦ ଅଟକିଗଲା । ଲାଗିଲା ଏ ଭଦ୍ରଲୋକଙ୍କୁ କେଉଁଠି ଦେଖିଛି । ହେଲେ କେଉଁଠି ? ମୁହଁଟା ଟିକେ ସ୍ପଷ୍ଟ ଦେଖାଯାଆନ୍ତା କି ଏଇ କଥା ଭାବି ଆଗକୁ ପାଦ ପକାଇଲି । ଦେହରେ ଧୋତି ପଞ୍ଜାବୀ, କାନ୍ଧରେ ନାମାବଳୀ, ବେକରେ ତୁଳସୀମାଳା ଓ ହରିମନ୍ଦର ଚିତା କପାଳରେ । ହଠାତ୍ ପାଖରେ ଯାଉ ଯାଉ ସ୍ୱଗତୋକ୍ତି କଲି - 'ଆଡ଼ବାୟା, ଆଡ଼ବାୟା ।'

ପଛରୁ ତାକୁ ଚମକାଇ ଦେବାକୁ ଯାଇ ତା' କାନ୍ଧରେ ମୋ ହାତକୁ ଜୋରରେ ରଖିଦେଲି । ସେ ବୁଲିପଡ଼ିଲା ଓ ମୋତେ ଦେଖୁ ଦେଖୁ ତା' ଆଖି ସାମାନ୍ୟ ବଡ଼ ହୋଇଗଲା । ଅତ୍ୟଧିକ ଖୁସିରେ ମୋତେ ଜାବୁଡ଼ି ଧରିଲା । କହିଲା- 'ବାବ୍‌ଲୁ ! ତୁ ଏଠି ? କେବେ ଆସିଛୁ, କେଉଁଠି ରହୁଛୁ ?'

ତା' ଦୁଇହାତ ଭିତରୁ ନିଜକୁ ମୁକୁଳେଇ ନେଇ ତା' ପ୍ରଶ୍ନର ସବୁ ଉତ୍ତର ଦେଲି । ଏକାଜିଦ୍ କଲା- 'ଚାଲ୍ ମୋ କ୍ୱାର୍ଟରକୁ । ଏତେଦିନ ବାଦ୍ ତୋତେ ଭେଟୁଛି ।'

ତା' ସହ ଚାଲୁ ଚାଲୁ ତାକୁ ଲକ୍ଷ୍ୟ କଲି, ବୟସ ତୁଳନାରେ ଅଧିକ ବୟସ୍କ ଲାଗୁଛି । ମୁଣ୍ଡବାଳ ଅନେକ ପାଚିଗଲାଣି । ଥୁଣ୍ଟା ଥୁଣ୍ଟା ଦାଢ଼ୀରେ ମୁହଁ ଅରଣ୍ୟ ପରି ଲାଗୁଛି । ଆଖି ଈଷତ୍ ପାଣିଚିଆ ଦିଶୁଛି । ହେଲେ ହଠାତ୍ ପ୍ୟାଣ୍ଟ ସାର୍ଟରୁ ପୁଣି ପୂର୍ବରୂପ ଧାରଣ କରିଛି କାହିଁକି, ସେକଥା ବୁଝିପାରିଲିନି ।

କ୍ୱାର୍ଟର୍ ପାଖରେ ପହଞ୍ଚିବା ବେଳକୁ ମୋର ହଠାତ୍ ମନେ ପଡ଼ିଲା ସୌଜନ୍ୟବଶତଃ ମୁଁ ତା' ପରିବାର କିମ୍ବା ନନ୍ଦିତା କଥା ପଚାରିନାହିଁ । ଯଦିଓ ବାଟସାରା ସେ ମୋ କଥା, ଦେବୀ ଓ ବୋଉ କଥା ପଚାରୁଥିଲା । ସେ ଗେଟ୍ ଖୋଲିବା ବେଳକୁ ମୁଁ ପଚାରିଲି - 'ଘରେ କିଏ କିଏ ଅଛନ୍ତି ?'

ଅଳ୍ପ ହସି ମୋ ଆଡ଼କୁ ନଚାହିଁ କହିଲା - 'କିଏ ଆଉ ଅଛି, ମୋ ଝିଅ ଆଉ ମୁଁ ଅଛୁ ।'

'ତୋ ଝିଅ ? ହେଲେ ଏ କଥା ତ କହିନୁ ଏ ପର୍ଯ୍ୟନ୍ତ । ଖାଲି ହାତରେ ତୋ ଝିଅକୁ ଦେଖିବି' - ସଙ୍କୁଚିତ ଭାବେ ପାଟିରୁ ବାହାରିପଡ଼ିଲା ।

'କିଛି ଦରକାର ନାହିଁ, ଆ' - ନିର୍ବିକାର ଭାବେ ଉତ୍ତର ଦେଲା ।

ସେ ବାହାର କବାଟର ତାଲା ଖୋଲିଲା ନଇଁପଡ଼ି । ମୁଁ ବିସ୍ମିତ ହୋଇ କହିଲି- 'ଝିଅକୁ ତାଲା କାହିଁକି ଦେଇଛୁ ?'

ସେମିତି ଖୋଲୁ ଖୋଲୁ ଉତ୍ତର ଦେଲା- 'ଦରକାର ଅଛି ।'

ମୁଁ ଅଧିକ କିଛି ପଚାରିବାକୁ ଇଚ୍ଛା କଲିନାହିଁ । କାଳେ ସେ ଖରାପ ଭାବିବ ବୋଲି । ଭିତରକୁ ଯାଇ ସେ ସ୍ୱିଚ୍ ଅନ୍ କଲା ହେଲେ କରେଣ୍ଟ ନଥିଲା । କ୍ୟାଣ୍ଡେଲ ଲଗାଉ ଲଗାଉ ମୋତେ ସୋଫାରେ ବସିବାକୁ କହିଲା । ମୁଁ ଏପଟ ସେପଟ ହୋଇ ଅନାଇଲି ତା' ଝିଅକୁ ଦେଖିବି ବୋଲି ।

ମୋ ଚାହାଣୀରୁ ସେ କ'ଣ ବୁଝିଲା କେଜାଣି, କହିଲା - 'ନୈନା ମୋ ସାଙ୍ଗ ବାବ୍‌ଲୁ ଆସିଛି, ନମସ୍କାର କର ।' ତା' କହିବା ସରିଛି କି ନାହିଁ ହଠାତ୍ ସରୁ ମିଠା କଣ୍ଠଟିଏ ଭାସି ଆସିଲା - 'ନମସ୍ତେ ବାବୁଜୀ ।'

ହେଲେ ପାଖକୁ କେହି ଆସିଲେନି । ରାଧାକାନ୍ତ ହସିଲା କହିଲା- 'ନୈନା ମୋ ଝିଅ । ଆଣୁଛି ଦେଖିବୁ ।' ଭିତରକୁ ଉଠିଗଲା ଓ ସାଂଗେ ସାଂଗେ ଫେରି ଆସିଲା ।

ହାତରେ ଏକ କଳା କନାରେ ଆବୃତ ପଞ୍ଜୁରୀ । କନାଟିକୁ ବାହାର କରିଦେବା ମାତ୍ରେ ଦେଖିଲି ପଞ୍ଜୁରୀଟିଏ ଓ ସେଇ ସାଂଗେ ସଂଗେ କରେଣ୍ଟ୍ ମଧ୍ୟ ଆସିଗଲା । ପଞ୍ଜୁରୀ ଭିତରେ ଅଛି କଳାରଙ୍ଗର ସୁନ୍ଦର ଶାରୀଟିଏ । ଶାରୀଟି ଆଉ ଥରେ କହି ଉଠିଲା- 'ନମସ୍ତେ ବାବୁଜୀ ! କେମିତି ଅଛନ୍ତି ?'

ମୋ ପାଟିରୁ ଥର ଥର ହୋଇ ବାହାରି ଆସିଲା - 'ଭଲ' । ରାଧାକାନ୍ତକୁ ଚାହିଁ କହିଲି- 'କଥା କ'ଣ ହୋଇଛି କହ । ନନ୍ଦିତା କାହିଁ ? ଘଟଣା କ'ଣ ଖୋଲି କରି କହ ।'

କ୍ଷଣକ ପାଇଁ ଚୁପ୍ ରହି ସେ ଆରମ୍ଭ କଲା - 'ଏ ମାଳ ଅଞ୍ଚଳକୁ ଆସିବାକୁ ନନ୍ଦିତା ରାଜି ହେଲାନାହିଁ । ଅତି ବାଧ୍ୟରେ ଆସିଲା । ହେଲେ ସେଠିକାର ଜୀବନ ଯେମିତି ଥିଲା, ଏଠି ନନ୍ଦିତା ଆହୁରି ଅସନ୍ତୁଷ୍ଟ ହୋଇ ପଡ଼ିଲା । ସେଇ ଅଇନା ଓ ମେକ୍‌ଅପ୍ ଭିତରେ ତା' ଦିନ ବିତିଲା । ଦିନେ ବି ମୋ କଥା ବୁଝିଲାନି । ଦିନେ ଏ ଶାରୀ ଛୁଆଟିକୁ ଦଳେ କାଉ ଖୁମ୍ପି ଖଣ୍ଡିଆ କରି ବାଟରେ ପକାଇ ଥିଲେ । ଘରକୁ ଆଣିବାରୁ ସେ ବିରକ୍ତ ହେଲା । ହେଲେ ତାକୁ ପାଳିଲି । ଝିଅ ପରି ରଖିଲି । କିନ୍ତୁ ଏଥିରେ ରାଗିଲା ନନ୍ଦିତା । ଶାରୀକୁ ସପତ୍ନୀ ବୋଲି ମନେ କରି ମୋତେ ଗାଳିଦେଲା ଏବଂ ଘର ଛାଡ଼ିଦେବାର ଧମକ ମଧ୍ୟ ଦେଲା । ଦିନେ ତାକୁ କହିଲି ଯେ ଏ ଅଶାନ୍ତି ଅପେକ୍ଷା ଛାଡ଼ପତ୍ର ହିଁ ଭଲ ବୋଲି । ତା' ପରେ ସେ ମୋତେ ଛାଡ଼ପତ୍ର ଦେଇ ଦେଲା ଓ ଶୁଣିଲି ସେ ଅଳ୍ପ ଦିନ ପରେ ଅନ୍ୟତ୍ର ବିବାହ କରିଗଲା । ତା'ପରେ ମୁଁ ଏଠି ଓ ନୈନା ଏମିତି ଜୀବନ କାଟୁଛୁ ।' ସେ ଚୁପ୍ ରହିଲା । ମୁଁ ବି ଚୁପ୍ । ମୋତେ ଦୁଃଖ ଲାଗିଲା ତା'ର ଏ ଅବସ୍ଥା ଦେଖି । ଟିକେ ପରେ ପଚାରିଲି - 'ଏମିତି କ'ଣ ଜୀବନ କାଟିଦେବୁ ?'

ମ୍ଳାନ ହସଟେ ହସିଲା । କହିଲା - 'ତାରୁଣ୍ୟର ଅବୁଝାପଣର ଭୂତ ମୋତେ ଗ୍ରାସିଥିଲା । ସୁନ୍ଦରୀମାନେ ପ୍ରସାଧନରେ ହଜନ୍ତି, ସୁଖ ଖୋଜନ୍ତି, ଏଇ କଥା ଭାବିଥିଲି । ବଦ୍ଧମୂଳ ଧାରଣା କରି ଅସୁନ୍ଦରୀ ସ୍ତ୍ରୀଟିଏ ବିବାହ କଲି । ହେଲେ ଫଳ ଓଲଟା ହେଲା । ଦେବୀଙ୍କୁ ଦେଖିବା ପରେ, ତାଙ୍କ ସହ ଦୁଇବର୍ଷର ପଡ଼ୋଶୀ ଭାବେ ଜୀବନ କଟାଇବା ଓ ତୁମ ଦାମ୍ପତ୍ୟ ପ୍ରେମ ଦେଖି ମୋ ସୁନ୍ଦରୀ ସ୍ତ୍ରୀ ସଂପର୍କିତ ନିଷ୍ପତି ଭୁଲ୍ ବୋଲି ପ୍ରମାଣିତ ହେଲା । ମୋର ଅସୁନ୍ଦରୀ ସ୍ତ୍ରୀର ବ୍ୟବହାର ମୋତେ ଆହୁରି ମର୍ମାହତ ଓ ବ୍ୟଥିତ କଲା । ଯାହା ଖୋଜୁଥିଲି ତା'ତ ପାଇଲିନି, ଯାହା ବି ପାଇଲି ତାକୁ ମୋର ଆଦୌ ଖୋଜିବା ଉଚିତ୍ ନଥିଲା । ମଣିଷ ଚରିତ୍ରକୁ ପଢ଼ିବାରେ ମୋର ଭୁଲ୍ ରହିଗଲା । ଭାବୁଛି ମୁଁ ମୂଳରୁ ନିଜକୁ ପଢ଼ିନାହିଁ, ଯେଉଁଥିପାଇଁ ମୋର ଏତେ ଭୁଲ୍ ହୋଇଗଲା । ଗତସ୍ୟ ଶୋଚନା ନାସ୍ତି । ତେଣୁ ଭାବୁଛି ନିଜକୁ ପ୍ରଥମେ ପଢ଼ିବା ଆରମ୍ଭ କରିବି ।'

ଆଖି ବନ୍ଦକରି ସେ ଚୁପ୍ ରହିଲା । ଦୀର୍ଘଶ୍ୱାସଟିଏ ନେଇ ଥରେ ପଞ୍ଜୁରୀ ଆଡ଼କୁ ଚାହିଁଲା ଓ ଟିକେ ପରେ କହିଲା - 'ଗୋଟେ ଅନୁରୋଧ କରିବି, ରଖିବୁ ନିଶ୍ଚୟ ।'

'ହଁ, କହ । ତୁ ଅନୁରୋଧ କ'ଣ କରୁଛୁ ? ତୋ କଥା ନିଶ୍ଚୟ ରଖିବି ।' ମୁଁ ନିର୍ଭର ପ୍ରତିଶ୍ରୁତି ଦେବାକୁ ଯାଇ କହିଲି ।

'ନୈନାକୁ ତୁ ଦେବୀଙ୍କ ହାରେ ସମର୍ପି ଦେବୁ । ଦେବୀଙ୍କୁ ପାଇଲେ ଝିଅ ମୋର ମୋତେ ଭୁଲିଯିବ ଓ ଖୁସିରେ ରହିବି । ପାରିବୁ ଏ କାମ କରି ?' ଅତି ଆକୁଳ ଭାବେ ମୋ ହାତ ଧରିପକାଇଲା ।

'ଠିକ୍ ଅଛି, କାଲି ମୁଁ ଘରକୁ ଯିବି । ଯଦି କହୁଛୁ ନେଇଯିବି । ' ଉତ୍ତର ଦେଲି । ମୋ ବସ୍ ଛାଡ଼ିବା ପୂର୍ବରୁ ନୈନାକୁ ଓ ମୋତେ ନେଇ ସେ ବସ୍‌ରେ ବସାଇଦେଲା । ଲକ୍ଷ୍ୟ କଲି ରାଧାକାନ୍ତ ବାରମ୍ବାର ଆଖିର ଅମାନିଆ ଲୁହକୁ ପୋଛୁଥିଲା ନାମାବଳୀରେ ।

ଦେବୀ ନୈନାକୁ ପାଇ ଖୁବ୍ ଖୁସି ହେଲା, କିନ୍ତୁ ସବୁ ଘଟଣା ଶୁଣି ଖୁବ୍ ଦୁଃଖ ପ୍ରକାଶ କଲା । ଆସନ୍ତାଥର ଆସିଲେ ରାଧାକାନ୍ତକୁ ସାଂଗରେ ଆଣିବା ପାଇଁ ଦେବୀ ମୋତେ କହିଲା ।

ତିନିଦିନ ରହିବା ପରେ ପୁଣି ଫେରିଲି ବ୍ୟାଙ୍କକୁ । ପହଞ୍ଚୁ ପହଞ୍ଚୁ ପିଅନ୍ ପିଲାଟି ଆସି ପହଞ୍ଚିଗଲା । ମୁଁ ଗାଧୋଇ ସାରି ଟିଫିନ୍ ଖାଇବା ପରେ ହାତରେ କଫି କପ୍ ସହ ଗୋଟିଏ ଚିଠି ଧରି ସେ କହିଲା - 'ସାର୍ ! ଏ ଚିଠିଟା କାଲି ସେ ବାବୁ ଦେଇଗଲେ । କହିଥିଲେ ଆସିବା ମାତ୍ରେ ଦେବାକୁ । ମୁଁ ଆପଣଙ୍କୁ ଦେଖି ଭୁଲିଯାଇଥିଲି । ନିଅନ୍ତୁ ।'

ଆଶ୍ଚର୍ଯ୍ୟ ହୋଇ ଚିଠି ଖୋଲିଲି । ଓଃ - ତେବେ ରାଧାକାନ୍ତ ଏ ଚିଠି ଲେଖିଛି । ପଢ଼ିଲି-

ପ୍ରିୟ ବାବୁଲୁ !

ଭଲ ହେଲା ତୁ ନୈନାର ଦାୟିତ୍ୱ ଦେବୀଙ୍କ ହାତରେ ଦେଲୁ । ସଂସାରରେ ଜଞ୍ଜାଳ ଥିବାଯାଏ ମଣିଷ ନିଜକୁ ଖୋଜି ପାଏନା କି ଚିହ୍ନିବାକୁ ଚେଷ୍ଟା କରେ ନାହିଁ । ନନ୍ଦିତା ଆଗରୁ ଛାଡ଼ିଥିଲା, ନୈନାର ଦାୟିତ୍ୱ ଦେବୀ ନେଲେ । ଏବେ ମୁଁ ନିଜକୁ ଅନ୍ୱେଷଣ କରିବାକୁ ଯାଉଛି । ଜାଣେନା ପାଇବି କି ନାହିଁ । ତେବେ ଅନ୍ତିମ ନିଃଶ୍ୱାସ ପର୍ଯ୍ୟନ୍ତ ମୋ ଆତ୍ମଅନ୍ୱେଷଣ ଜାରି ରହିବ । ଇସ୍ତଫା ଦେଇ ଦେଇଛି ଓ ଗଙ୍ଗୋତ୍ରୀକୁ ଚାଲିଯାଉଛି ନିଜକୁ ଚିହ୍ନିବାକୁ, ଜାଣିବାକୁ । ଦେଖାଯାଉ ଭଗବାନ କେତେଦୂର ମୋତେ ସଫଳ କରିବେ ।

ଇତି ତୋର

ଆଡ଼ବାୟା ରାଧାକାନ୍ତ ।

ଆଡ଼ବାୟା... ରାଧାକାନ୍ତ ! ତାହେଲେ ସେ ଜାଣିଥିଲା ଆମେ ତାକୁ ଆଡ଼ବାୟା କହୁ ବୋଲି । ହାତରୁ ଖସି ପଡୁଥିଲା ଚିଠି ଖଣ୍ଡିକ । ନିର୍ବାକ ହୋଇ ବସି ରହିଥିଲି ସେମିତି । ଦୀର୍ଘଶ୍ୱାସଟିଏ ଆପେ ଆପେ ଛାତି ତଳର ଜମାଟ ବାନ୍ଧୁଥିବା କୋହର ସମୁଦ୍ର ଭିତରୁ ବାହାରି ଆସିଲା କପାଳରେ ହାତ ଯୋଡ଼ି ମନେ ମନେ କହିଲି - 'ଜୀବନରେ ତ ସୁଖ ପାଇପାରିଲୁ ନାହିଁ । ଯଦି ଆତ୍ମଅନ୍ୱେଷଣରେ ସୁଖ ପାଇପାରୁ, ତେବେ ଯା' ହେ ଈଶ୍ୱର ! ତାକୁ ସଫଳ କରାଅ ।'

# ବାପା ଓ ଜହ୍ନମାମୁଁ ପ୍ରସଙ୍ଗ

ଶଯ୍ୟାଶାୟୀ ହେବାଦିନଠାରୁ ଗୋଟାଏ କଥାକୁ ବାରମ୍ବାର କହୁଛନ୍ତି । ସଂଜ ସକାଳେ ସେଇ ଗୋଟାଏ ପ୍ରଶ୍ନ କରୁଛନ୍ତି ବାପା ।

ଏଣିକି ତାଙ୍କ ପାଖକୁ ଗଲେ ସେ ପ୍ରଶ୍ନ - ଭୂତ ଏମିତି ମାଡ଼ି ବସୁଛି ଯେ ମୁକୁଳିବାର ଯୁ’ ନାହିଁ । ମାସେ ହେବ ସେଇ ଗୋଟାଏ କଥାକୁ ଦୋହରାଇ ବଡ଼ ବ୍ୟସ୍ତବିରକ୍ତ କରିପକାଇଲେଣି । ମନକୁ ଦୃଢ଼ କରେ କେବଳ କବାଟ ପାଖରେ ତାଙ୍କ ଅଲକ୍ଷ୍ୟରେ ଦେଖି ଦେଇ ଚାଲିଯିବି । ଯେତେ ଧୀର ପାଦରେ ଗଲେ ବି ବାରିଦେଇ ବଡ଼ ପାଟିରେ ପ୍ରଶ୍ନଟି କରନ୍ତି ।

କି ଦୁର୍ଯୋଗରେ ଘନମାମୁଁ ଏ ଘରେ ଗୋଡ଼ ଦେଇଥିଲେ କେଜାଣି । ସେଇଦିନୁ ଏ ଲୀଳା ଆରମ୍ଭିଛି ।

ଅଦିନିଆ ଝିପିଝିପି ବର୍ଷା ହେଉଥାଏ । ସଂଜ ବୁଡ଼େ ଘନମାମୁଁ ଆସି ପହଞ୍ଚିଲେ । ଗେଟ୍ ପାଖରୁ ରଡ଼ିଟାଏ କଲେ । ପାଟି ଶୁଣି ଦୌଡ଼ି ଗଲି ଓ ପ୍ରଣାମ କରୁ କରୁ ସେ କହିଲେ - ‘ଆରେ ଗଲୁ ରେଜା ଟଙ୍କା ଆଣିବୁ, ରିକ୍ସାକୁ ଦେବି ।’

ବ୍ୟାଗପତ୍ର ଆଣି ଡ୍ରଇଁ ରୁମ୍‌ରେ ରଖିଦେଇ ବାପାଙ୍କ ରୁମ୍ ଧସେଇ ପଶିଗଲେ । ପାଖ ଚେୟାର୍‌ରେ ବସି କେତେ କଥା ଗପିଲେ ।

ଅବଶ୍ୟ ସେତେବେଳକୁ ବାପା ଶଯ୍ୟାଶାୟୀ ହୋଇ ନଥିଲେ । ଅସୁସ୍ଥତା ସତ୍ତ୍ୱେ ଉଠି ଚଲାବୁଲା, ଟିଭି ଦେଖା, ନିଜ ହାତରେ ଖାଇବା ଇତ୍ୟାଦି କାମ କରୁଥିଲେ ।

ଘନମାମୁଁ ଗୋଡ଼ହାତ ଧୋଇଆସି ଧୋତି ଖଣ୍ଡେ ବଦଳାଇ ଦେଇ ସିଧା ଟିଭି ସାମ୍ନାରେ ବସି ପଡ଼ିଲେ । ବାପା ଗୋଟାଏ ଆରାମ ଚେୟାର୍‌ରେ ବସି ଏକାଠି ଜଳଖିଆ ଖାଇବା ପାଇଁ ମାମୁଁଙ୍କୁ ସେଠି ଅପେକ୍ଷା କରିଥିଲେ ।

ମୁଁ ମାଛ ଆଣିବାକୁ ବଜାର ବାହାରିଗଲି । ବର୍ଷା ପ୍ରାୟତଃ ହେଉ ନଥିଲା । ଶୀଘ୍ର ଫେରି ଆସିଲେ ନ୍ୟୁଜ୍ ଦେଖିହେବ ଭାବି ସ୍କୁଟରଟା ବାହାର କଲି । ମାଛ ବଜାରର ଭିଡ଼ ଭିତରୁ ଭଲ ମାଛ କିଣି, କାଟି ଟଙ୍କା ଦେଇ ଠେଲାପେଲାରେ ବାହାରି ଘରେ ପହଞ୍ଚିବା ବେଳକୁ ନ୍ୟୁଜ୍ ସରିବାର ସୂଚନା ପାଇଲି । ମନଟା ଖଟା ହେବା ବେଳକୁ ନିଜକୁ ବୁଝାଇ ନେଲି ଯେ ଅତିଥି ଦେବତା ସଦୃଶ ।

ଘରେ ପଶୁ ପଶୁ ମାମୁଁଙ୍କ ସ୍ୱର ଶୁଣିଲି- ‘ଆଁ, ଏ ସ୍ତ୍ରୀ ଲୋକମାନେ କି ପୁରସ୍କାର ପାଉଛନ୍ତି ?

‘ଆରେ ତାଙ୍କରି ଯୁଗ ହୋଇଛି ପରା ।’ ବାପାଙ୍କର ହସରେ ଈଷଦ୍ ବ୍ୟଙ୍ଗର ଆଭାସ ପାଇଲି ।

ଆଗ୍ରହ ଚାପି ନପାରି ମାମୁଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନ କଲି ‘କିଏ ପୁରସ୍କାର ପାଇଲେ କି ?’

'ସେଇ ପ୍ରମିଳା ଦେବୀ... ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ ମଁ... ମୁହଁ ନେଫେଡ଼େଇ ମାମୁଁ ଉତ୍ତର ଦେଲେ ।

'ବେଶ ଭଲ ଖବର ତ । ଜାଣିଲ ମାମୁଁ, ନାରୀମାନେ ବି ସାହିତ୍ୟ କ୍ଷେତ୍ରରେ ବେଶ୍ ଆଗୁଆ ଅଛନ୍ତି । ସଫଳତା ମଧ୍ୟ ଯଥେଷ୍ଟ ପାଇଲେଣି । ମୁଁ ଉତ୍ସାହରେ କହିଲି । ଉହୁଁ ଯାଉନୁ । ହଇରେ କି ସଫଳତା ? ଆଉ ଆଗୁଆ ? ହାଣ୍ଡି ଚୁଲ୍ଲୀ ଫୁଙ୍କିବା ଛାଡ଼ି ହାଇହିଲ୍ ମାଡ଼ି ଏଗୁଡ଼ାକ ସାହିତ୍ୟ କରିବେ । ଆଖି ନଚେଇ ଭୁରୁ ଟେକି ପତଳା ଶାଢ଼ିର ପଣତ ଖସେଇ ସାହିତ୍ୟକୁ ଆଗେଇ ନେବେ । ଆଚ୍ଛା କହିଲୁ, ତୋ ବାପା ତ ଜଣେ ଏତେ ବଡ଼ କବି, ସାହିତ୍ୟିକ ଏ ଅଞ୍ଚଳରେ । କୋଉ ପୁରସ୍କାର ସେ ଏଯାଏଁ ପାଇଲେଣି । ତା' ମାନେ କ'ଣ ସେ କବି ନୁହନ୍ତି ? ହୁଙ୍କାର ଛାଡ଼ି ମାମୁଁ ମତେ ଚାଲେଞ୍ଜ କଲାଭଳି ପ୍ରଶ୍ନ କଲେ ।

'ଆଉ କ'ଣ କରାଯିବ ?' ନିରୁପାୟ ହୋଇ ତଳକୁ ମୁହଁ ପୋତି କହିଲି- 'ଆରେ ତୁ ଏ ରାଜଧାନୀରେ ଅଛୁଟି ? ଚିହ୍ନା ପରିଚୟ ଥିବ କେତେ ଲୋକଙ୍କ ସାଙ୍ଗେ । ଧରାଧରି କରି, କ'ଣ ଗୋଟାଏ ଲବି କରି ତୋ ବାପାଙ୍କ ପରି ସାହିତ୍ୟିକଙ୍କୁ ସମ୍ମାନ ଦେବାଟା କ'ଣ କଷ୍ଟକର କାମ ?' ଯୁକ୍ତି ଦେହି ଡାକରାର ସ୍ୱରରେ କହିଲେ ମାମୁଁ ।

କଥାଟା ସେଇଠୁ ଛିଣେଇ ଦେବାକୁ ଯାଇ କହିଲି - 'ହଉ ଦେଖିବା।' ମାଛ ନେଇ ଭିତରକୁ ଚାଲିଗଲି । ସେଇ 'ହଉ ଦେଖିବା'ଟା ମୋ ପାଇଁ ଆଜି କାଳ ହୋଇଯାଇଛି । ଛି... କି ଅଲକ୍ଷଣା ବେଳାରେ ମୋ ପାଟିରୁ ଏ ପଦକ ବନ୍ଧୁକ ଭିତରର ଗୁଳି ପରି ବାହାରିଥିଲାଟି !

ସେଦିନ ସଂଧ୍ୟା ପରଠାରୁ ରାତି ଖାଇବା ଯାଏ ବାପା ଭାରି ଗୁମ୍‌ସୁମ୍ ପରି ଲାଗୁଥିଲେ । ଦୁଇ ଚାରିପଦରେ ଥରଟିଏ ହୁଁ ମାରୁଥିଲେ । ଘନମାମୁଁଙ୍କ କଥାଟା ବୋଧେ ମନକୁ ଛୁଇଁଯାଇ ଆତ୍ମାରେ ଗୋଟେ ଗହିରିଆ ଦାଗ ପକାଇ ଦେଇଥିଲା ।

ଘନମାମୁଁଙ୍କ ଯିବାର ପନ୍ଦର ଦିନ ପରେ ବାପାଙ୍କ ଅସୁସ୍ଥତା ଆଗଠାରୁ ଅଧିକ ବଢ଼ିଯିବାରୁ ହସ୍ପିଟାଲରେ ଆଡ଼୍‌ମିଟ୍ କରିଦେଲି । ଏକରେ ତ ବୟସ ହୋଇ ଯାଇଥିଲା, ଦ୍ୱିତୀୟରେ ହସ୍ପିଟାଲ୍‌ରେ ପରିବେଶ ତ ନର୍କପୁରୀ ଠାରୁ କମ୍ ନୁହେଁ । ଜିଦ୍ କଲେ - 'ମୋତେ ଏଠୁ ଘରକୁ ନେଇଚାଲ । ମଲେ ପଛେ ଘରେ ମରିବି, ଏଠି ନୁହେଁ ।'

ଡକ୍ଟର ମଧ୍ୟ ତାଙ୍କ ଅବସ୍ଥା ଦେଖି ଘରକୁ ପଠାଇ ଦେଲେ । ଆଉ ବେଶିକାଳ ନୁହେଁ ବୋଲି ସାମାନ୍ୟ ସୂଚନା ମଧ୍ୟ ଦେଇଥିଲେ ।

ଆଉ ତାପର ଦିନଠାରୁ ସେ ଗୋଟିଏ ମାତ୍ର ପ୍ରଶ୍ନକୁ ଦୋହରାଉଛନ୍ତି, କେଉଁଦିନ ତାଙ୍କ ପୁରସ୍କାର ମିଳିବ ?

ବାପା ଜଣେ ଭଲ କବି ଓ ଲେଖକ ଥିଲେ । ସଂଧ୍ୟା ହେଲେ ଗାଁଲୋକେ ଆସି ରୁଣ୍ଡ ହେଉଥିଲେ ବାପାଙ୍କ କବିତା ଓ ଗପ ଶୁଣିବାକୁ । ପାଠ ଭୁଲିଥିବା ଦରପାଠୁଆମାନେ ବିଲବାଡ଼ିରେ କାମ କି ମୂଲ ଲାଗୁଥିବା ବେଳେ ବାପାଙ୍କ ଆଶୁ କବିତାମାନଙ୍କୁ ସ୍ୱର ପକାଇ ଗାଉଥିଲେ ।

ବାପା ଦାଣ୍ଡପିଣ୍ଡାରେ ଗପ ଶୁଣାଇଲେ ସଂଜ ନ ବୁଡ଼ୁଣୁ ରୋଷେଇ ସାରି ସ୍ତ୍ରୀଲୋକମାନେ ଭିତର ଘରମାନଙ୍କରେ ଗହଳି କରୁଥିଲେ ଶୁଣିବା ପାଇଁ । ଆଖପାଖ ମୁଲକରେ ତାଙ୍କର ପ୍ରସିଦ୍ଧି ଥିଲା ।

ତାଙ୍କ ଯୌବନ ସମୟରେ ଖଣ୍ଡେ କବିତା ବହି ପ୍ରକାଶ କରିବା ପାଇଁ ଟଙ୍କା ନଥିବାରୁ ଜେଜେମା କିଛି ଲୁଚାଇ କରି ଦେଇଥିଲେ । ବାକି ଟଙ୍କା ପାଇଁ ମୋ ବୋଉ ତା' ହାତରୁ ସୁନା ଚୁଡି ପଟେ ବିକ୍ରି କରିବାକୁ କାଢ଼ି ଦେଇଥିଲା ।

ଏଇକଥା ସେ ଅନେକଥର ଶୁଣାଇଛନ୍ତି । ମୁଁ ହାଇସ୍କୁଲ୍‌ରେ ପଢୁଥିଲି, ବୋଉ ସେ ପାରକୁ ଚାଲିଗଲା କଲେଜ ନସରୁଣୁ ଜେଜେବାପା ବି ଗଲେ । ଜେଜେମାଙ୍କୁ ଦେଖିନାହିଁ । ବାପା ଓ ମା'ର ସ୍ନେହ ଦେଇ ବାପା ମୋତେ ମଣିଷ କରିଛନ୍ତି । ବାଛି ବାଛି ସୁନ୍ଦରୀ ବୋହୂଟିଏ ଘରକୁ ଆଣିଛନ୍ତି ।

ଅନୁପମା ତାଙ୍କ ବୋହୂ ହିସାବରେ, ମୋ ପତ୍ନୀ ଭାବରେ ଓ ଗୋଟେ ସନ୍ତାନର ଜନନୀ ଭାବରେ ଆମ ଭିତରର ଏକ ମଧୁର ସଂଯୋଗ । ଅନୁକୁ ପାଇ ମୁଁ ଯେତିକି ଖୁସି, ତାଠାରୁ ବାପାଙ୍କର ପସନ୍ଦ ପାଇଁ ସେତିକି ଭାଗ୍ୟବାନ୍ ମନେକରେ ।

ଆଇ.ଏ.ପାସ୍ କରିଥିବା ଓ ସଂସାରର ଛନ୍ଦକପଟକୁ ଏତେ ବୁଝି ପାରିନଥିବା ଅନୁ ସପ୍ତାହକ ତଳେ କହିଲା - 'ବାପା କ'ଣ ଗୋଟେ ପୁରସ୍କାର କଥା କହୁଛନ୍ତି, ଆଣିଦେଲେ ହୁଅନ୍ତାନି ?'

ଏତେ ବିରକ୍ତି ଭିତରେ ବି ତା' ସରଳତାରେ ମୁଁ କିଛି ସମୟ ହସିଲି । ମୋ ହସ ଦେଖି ବଡ଼ ବଡ଼ ଆଖି କରି ମୋତେ ସେ ଚାହିଁଲା । କହିଲି- 'କିଣିବା ଜିନିଷ ହୋଇଥିଲେ ଏଇକ୍ଷଣି ଆଣିଦିଅନ୍ତି ।'

ମନ ମାରିଦେଇ କ୍ଷଣେ ବସିବା ପରେ ଅନୁ ବଡ଼ ଆଗ୍ରହରେ କହିଲା - 'ଆଚ୍ଛା, କେଉଁଠୁ ଧାର ଅଣାଯାଇପାରନ୍ତା ନାହିଁ ? ବାପା ବୁଝିଗଲା ପରେ ଫେରାଇ ଦିଅନ୍ତେ ।'

ହସିବି କି କାନ୍ଦିବି କିଛି ବୁଝିପାରିଲିନି । ତଥାପି ଅନୁର ଏ ନିର୍ବୋଧତା ମଧରୁ ଗୋଟାଏ ରାସ୍ତା ପାଇଗଲା ପରି ଅନୁଭବ କଲି ।

ତାକୁ ସାନ୍ତ୍ୱନା ଦେଇ କହିଲି - 'ହଉ ଦେଖିବା ।' ଅଫିସ୍‌ରୁ ଆଉ ଚାରିଟା ବେଳେ ଘରକୁ ଫେରିଲିନି । ସାମ୍ନାରେ ଥିବା ହିମାଂଶୁର ଅଫିସ୍‌କୁ ଗଲି । ସେ ରାସ୍ତାକଡ଼ରେ ପାନଦୋକାନରୁ ସିଗାରେଟ୍ ଖଣ୍ଡେ ପିଇବାକୁ ଆରମ୍ଭ କରୁଥିଲା । ସେଇଠି ଆମର ସବୁଦିନେ ଦେଖାହୁଏ । ତା' ବାଁ ହାତ ଧରି ଜୋର୍ କରି ଭିଡ଼ି ଆଣିଲି ଖଣ୍ଡେ ଦୂରକୁ । ସେ କିଛି ବୁଝି ନପାରି ମୋତେ ଢଳ ଢଳ କରି ଚାହିଁଲା ।

'ଆ... ଗୋଟେ ଜରୁରୀ କଥା ଅଛି ।' ଅସ୍ଥିର ଭାବେ କହିଲି ।

'ହଇରେ କାହା ପ୍ରେମରେ ପଡ଼ିଛୁ ନା କ'ଣ ? ସେ ତୋତେ ବାହା ହେବାକୁ ବାଧ କରିଛି ନିଶ୍ଚୟ ।' ଗୋଟାଏ ମହାନ୍ ଦାର୍ଶନିକ ପରି ସେ କହିଲା ।

ଅନ୍ୟଦିନ ହୋଇଥିଲେ ତା' ପରିହାସର ଠିକଣା ଜବାବ୍ ଦେଇଥାନ୍ତି । କ୍ରୋଧ ସମ୍ଭାଳି ନପାରି ତା' ପିଠିରେ ଗୋଟେ ଚାପୁଡ଼ା ପକାଇଲି କହିଲି - 'ଏ ବାଜେ କଥା ଛାଡ଼୍ । କଥାଟା serious.

ଆମୂଳଚୂଳ ବର୍ଣ୍ଣନା କରି ତାକୁ ଶୁଣାଇଦେଲି । ସେ ଆଉ ହସିଲାନି । ବରଂ ଗମ୍ଭୀର ହୋଇଯାଇ କହିଲା - 'ହଁ- ପ୍ରକୃତରେ କଥାଟା serious ହେଲେ ଇଏତ ଛୁଆଙ୍କ ଖେଳନା ନୁହେଁ ଯେ କହିବା ମାତ୍ରକେ ଅଣାଯିବ ।

ଅସହାୟ ହୋଇ ପ୍ରଶ୍ନ କଲି - 'ତେବେ ?'

'ବ୍ୟସ୍ତ ହ'ନା ଚାଲ ସମୀର ଘରକୁ ଯିବା । ' କହୁ କହୁ ସ୍କୁଟର ଆଡ଼କୁ ଛୁଟିଗଲା ।

ହିମାଂଶୁର ମୁହଁରୁ ଥରଟିଏ ପାଇଁ ଶୁଣିଥିଲି ଯେ ସମୀରର ବଡ଼ ଭିଣୋଇ କେଉଁ ମନ୍ତ୍ରୀଙ୍କର ପି.ଏ. ହୋଇଛନ୍ତି । ମନରେ ସାମାନ୍ୟ ଆଶା ସଂଚାର ହେଲା । କାଳେ କିଛି ହେବ କି ?

ସମୀରକୁ ସାଙ୍ଗରେ ଧରି ତା' ଭିଣୋଇଙ୍କ ଘରେ ପହଞ୍ଚିବା ବେଳକୁ ସେମାନେ କୁଆଡ଼େ ଯିବା ପାଇଁ ବାହାରୁଥିଲେ । ସେଇଠି ଠିଆ ଠିଆ କଥା ହେଲୁ । ଏକଥା ଶୁଣି ସେ ଭଦ୍ରଲୋକ ହସିଲେ ।

ସାମାନ୍ୟ ଗମ୍ଭୀର ହୋଇଯାଇ କହିଲେ - 'ସତ କହିବାକୁ ଗଲେ ଏଗୁଡ଼ାକ ଭାରି ଅଡୁଆ କାମ । ହଁ ଫାଇଲପତ୍ର କାମ ହୋଇଥିଲେ ମୁଁ କରିଦିଅନ୍ତି । ବହିର ଗୁଡ଼ାଏ କପି ଚାରିଆଡ଼କୁ ପଠାହେବ । ଯିଏ ଯେତେ ଲବି କରିପାରିବ, ଦାନ ଦକ୍ଷିଣା ଦେଇପାରିବ ଓ ମନ୍ତ୍ରୀଙ୍କ ଦ୍ୱାରା ପ୍ରେସର ପକାଇପାରିବ, ସେ ହିଁ ପାଇ ପାଇବ । ପାରିବେ ?'

ତାଙ୍କ ପ୍ରଶ୍ନରେ ମୋ ମୁହଁ ଶୁଖିଗଲା ।

ସେ ପୁଣି କହିଲେ- 'ଆଜିକାଲି ଏତେ ଧୂର୍ତ୍ତ ଦଳ ଅଛନ୍ତି ଯେ ଏକୁଆରେକ ଚେରକଟା ଓ ବାହାପିଆ । ତାଙ୍କରି ଯୁଗ ଚାଲିଛି । ବୁଢ଼ାଙ୍କର ଜମାନା ଗଲାଣି । ଆପଣ ଲାଗିଲେ ବି କ'ଣ ପାରିବେ ଭାବୁଛନ୍ତି ?'

କିଛି ନକହି କେବଳ ନମସ୍କାରଟିଏ ପକାଇ ବିନା ଦକ୍ଷିଣାରେ ଏତେଗୁଡ଼େ ଜ୍ଞାନ ହାସଲ କରିଥିବାରୁ ମନେ ମନେ ଧନ୍ୟବାଦ ଦେଇ ହିମାଂଶୁ ସହ ଫେରିଲି । ବାଟସାରା ଆଉ କିଛି କଥା ହୋଇନାହୁଁ ।

ଘର ପାଖରେ ହିମାଂଶୁ ମୋତେ ସମବେଦନା ଛଳରେ କହିଲା - ' କେତେ ଅସମ୍ଭବ କଥା ସମ୍ଭବ ହେଉଛି ଏ ପୃଥିବୀରେ । ରହ, କିଛି ଗୋଟେ ରାସ୍ତା ଫିଟେଇବା । କାଲି ଶୀଘ୍ର ଅଫିସ୍ ଆସିବୁ ତ !'

ଘରେ ପଶୁ ପଶୁ ଭାବିଲି ବାପା ଶୋଇପଡ଼ିଥିବେ । ଯାହା ହେଉ ପ୍ରଶ୍ନଟିରୁ ତ ବର୍ତ୍ତିଯିବି !

ଧୀରେ ଧୀରେ ସ୍କୁଟର ଆଣି ରଖିଦେଲି । ଲୁଗାପଟା ବଦଳାଇ ବାଥ୍‌ରୁମ୍‌ରେ ଅଳ୍ପ ପାଣିରେ ଧୋଇ ହୋଇ ଟାୱେଲ୍‌ରେ ମୁହଁ ପୋଛୁପୋଛୁ ଅନୁକୁ ଠାରିଦେଇ ପଚାରିଲି ଯେ ବପା ଶୋଇଗଲେଣି କି ? ସେ ଇଙ୍ଗିତ ଦେଇ ସୂଚାଇ ଦେଲା ଯେ ଆଜି ସଂଧ୍ୟାରୁ ଖାଇସାରି ଶୋଇଛନ୍ତି । ଏକଥାରେ ଆଶ୍ୱସ୍ତ ହୋଇ ତାଙ୍କ କବାଟ ଦେଇ ଗଲା ବେଳକୁ ନିଦୁଆ କଣ୍ଠରେ ପଚାରିଲେ- 'ହଇରେ ଏତେ ରାତିରେ ଘରକୁ ଫେରୁଛୁ ?'

ଅବାକ୍ ହୋଇ ଠିଆ ହୋଇଗଲି ସେମିତି । ଲାଗିଲା ଯେମିତି ମୋ ଗୋଡ଼ ଦି'ଟା ମାଟିରେ କେବେଠାରୁ ପୋତି ହୋଇଯାଇଛି ।

ଗଳା ଖଙ୍କାରି ଦେଇ କହିଲି - ହଁ, ଗୋଟେ ମିଟିଙ୍ଗ୍‌ଥିଲା ସରିବାକୁ ଡେରି ହେଲା ।'

ମୋ କଥା ଶୁଣି 'ଓଃ କହି ଦୀର୍ଘଶ୍ୱାସଟେ ନେଲେ । ମୁଁ ଭାବିଲି କଥା ଯାହା ହେଉ ସରିଗଲା ।

ସବୁ ସାହସ ସଂଚୟ କରି ଆଗକୁ ଆଉ ପାଦେ ପକାଇବାକୁ ବେଳେ ଟିକେ ବଡ଼ ପାଟିରେ ପ୍ରଶ୍ନ କଲେ- 'ଆଉ ପୁରସ୍କାର କଥା କ'ଣ ହେଲା ? କେବେ ମିଳିବ ?'

ମୋ ଉଠୁଥିବା ବାଁ ଗୋଡ଼ଟା ସେମିତି ଶୂନ୍ୟରେ ରହିଗଲା । ଛାତି ଧଡ଼ଧଡ଼ ହେଲା । ଦି' ହାତରେ ଛାତିକୁ ଚାପିଦେଇ ନିଜକୁ ଦୃଢ଼ କରିନେଇ କହିଲି - 'କଥାବାର୍ତ୍ତା କରିସାରିଛି । ସମସ୍ତେ ଖୁବ୍ ପ୍ରଶଂସା କରୁଥିଲେ । ଏଇ ଅଳ୍ପଦିନର କଥା ତ !

'ହଁ- ହଉ ।' ତାଙ୍କ କଣ୍ଠସ୍ୱରରୁ ଖୁସିର ବାସ୍ନା ପାଇଲି ।

ହେଲେ ସେତେବେଳେକୁ ମୋ ହୃଦୟତନ୍ତ୍ରୀ ଅପରାଧବୋଧରେ ଥରି ଉଠୁଥିଲା । ଏତେ ବଡ଼ ମିଛ କଥାଟିଏ କେମିତି କହିପାରିଲି । ଡରରେ ଛାତି ଭିତର କମ୍ପି ଉଠିଲା ।

ସେଦିନ ତ ଏତିକି ଡର ମୋତେ ଲାଗି ନଥିଲା । କଲେଜରେ ପଢୁଥାଏ । ବାପା ଗାଁରେ ଓ ମୁଁ ପଢ଼ିବା ପାଇଁ ସହରକୁ ଯାଇଥାଏ । କଲେଜ ଆରପଟ ଗଳିରେ ମେସ୍ କରି ରହିଥାଉ । ସେ ଘରଟା ଥିଲା ଜଣେ ଖ୍ରୀଷ୍ଟିଆନ୍ ମହିଳାଙ୍କର । ପାଖକୁ ଲାଗି ସୁନ୍ଦର ଚର୍ଚ୍ଚ । ସଫାସୁତୁରା ଚାରିଆଡ଼ । ବଗିଚାରେ ଜାତିଜାତିକା ଫୁଲ ଫୁଟେ ବିଭିନ୍ନ ଋତୁରେ । ରବିବାରର ପ୍ରେୟାର ଓ ଚର୍ଚ୍ଚର ଘଣ୍ଟା ଧ୍ୱନି ମୋ ଭଳିଆ ଗୋଟେ ମଫସଲି ପିଲାକୁ ଯଥେଷ୍ଟ ଭାବପ୍ରବଣ ଓ ମୁଗ୍ଧ କରିଦିଏ ।

ତାଙ୍କ ଝିଅ ସୋନିଆ ମଧ୍ୟ ଆମ ସାଙ୍ଗରେ ପଢଥିଲା । ଖୁବ୍ ସ୍ମାର୍ଟ । ଭଲ ଗୀତ ଗାଏ । ଅଭିନୟ କରେ, ଭାଷଣ ଦିଏ ଓ ଭଲ ପଢ଼େ ମଧ୍ୟ । ତାଙ୍କ ପର୍ବପର୍ବାଣି ନଚେତ୍ ଭଲ ଦିନମାନଙ୍କରେ ତିଆରି ହୋଇଥିବା କେକ୍ ନେଇ ଆସେ । ଏମିତି ଭିତରେ କେବେ କେଜାଣି ସୋନିଆ ପ୍ରତି ଆକର୍ଷିତ ହୋଇସାରିଥିଲି ମୋତେ ଜଣା ନଥିଲା ।

ସେ ମୋତେ କେବେ କେମିତି ଚର୍ଚ୍ଚ ନେଇ ଯାଉଥିଲା । ଆଣ୍ଠୁ ମାଡ଼ି ପ୍ରେୟାର କରିବାକୁ ଶିଖାଉଥିଲା । ଭାଓଲିନ୍ ବଜାଇବା ଓ ନାଚିବା ମଧ୍ୟ ଶିଖାଇ ଦେଇଥିଲା । ଯୀଶୁଙ୍କ ମହତ୍ତ୍ୱ ସଂପର୍କରେ ଅନେକ ସମୟରେ ବର୍ଣ୍ଣନା କରେ ।

ଦିନେ ଭାବପ୍ରବଣ ହୋଇ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ସ୍ଥିର କରିଛି ବୋଲି କହିଦେଲି । ସୋନିଆ ମୋ ପ୍ରସ୍ତାବରେ ବେଶ୍ ଖୁସି ହେଲା । ତେବେ ପାଠପଢ଼ା ସରୁ ବୋଲି ସିଦ୍ଧାନ୍ତ ନେଲି ।

ସେତେବେଳେ ସୋନିଆ ମୋର ଘନିଷ୍ଠ ବନ୍ଧୁ ବୋଲି ସମସ୍ତେ ଜାଣି ସାରିଥିଲେ । ପରୀକ୍ଷା ସରିଥିଲା । ଅଚାନକ ବାପା ଆସି ପହଞ୍ଚିଲେ । ମୋତେ ତାଙ୍କ ସହ ଫେରିବା ପାଇଁ ଜିଦ୍ କଲେ । ତାଙ୍କ ଇଚ୍ଛାକୁ ସମ୍ମାନ ଦେଇ ଯେମିତି ଆସି ପହଞ୍ଚିଛି, ଆକାଶ ପାତାଳ ଫଟେଇ ଦେବାପରି ଚିତ୍କାର କଲେ - 'ହଇରେ ହିନ୍ଦୁ ଘରର ପୁଅ ହୋଇ ତୁ ଖ୍ରିସ୍ଥାନ୍ ହେବାକୁ ବାହାରିଥିଲୁ ? ଆଉ ସେ ଖ୍ରିସ୍ଥାନୀ ଝିଅକୁ ବାହାହୋଇ ଘରକୁ ଆଣିଥାନ୍ତୁ ? ଦେଖ, ଏଇଆ ଯଦି କରିବାକୁ ତୋ ମନ, ମୋ ମଲା ଦେହକୁ ଡେଇଁ ଚାଲିଯିବୁ ।'

ମୁଁ ଅବାକ୍ ହୋଇଗଲି ବାପାଙ୍କ କଥାରେ । ଏତେ କଥା ଜାଣିଲେ କେମିତି ? ଉଁ କି ଚୁଁ ପଦେ କହିଲିନି । ତାଙ୍କ ମୁଣ୍ଡ ଛୁଇଁ ଶପଥ କଲି କିଛି ଏମିତି କରିବିନି ବୋଲି ।

ହେଲେ ବାପାଙ୍କର ବୋଧେ ବିଶ୍ୱାସ ନଥିଲା ମୋ ଉପରେ । ସେଇ ଖରାଛୁଟିରେ ଅନୁ ସହ ବାହାଘର କରିଦେଲେ ।

ଦୀର୍ଘଶ୍ୱାସଟେ ଛାଡ଼ିବା ବେଳକୁ ଅନୁଭବ କଲି ପାଖରେ ଅନୁପମା ।

'ଚାଲ ଖାଇବ । କ'ଣ ଏବେ ଚିନ୍ତା କରୁଛ ?' ଅନୁ ମୋତେ ହଲାଇ ଦେଇ କହିଲା ।

ସକାଳୁ ଉଠି ଆଉ ବାପାଙ୍କ ରୁମ୍‌କୁ ଗଲି ନାହିଁ । ଶୀଘ୍ର କାମସାରି କେବଳ ଚକଟିଆ ଟିକେ ଖାଇନେଇ ସ୍କୁଟର ଧରି ବାହାରିଗଲି । ଚକଟିଆ ଖାଇବା ବେଳେ ଅନୁକୁ କହିଥିଲି - 'ବ୍ୟସ୍ତ ହେବନି ଆଜି ଫେରିବା ଡେରି ହେବ । ବାପା କିଛି ପଚାରିଲେ କହିବ ତାଙ୍କରି କାମରେ ଯାଇଛି ।'

ହିମାଂଶୁ ସେଇ ପାନ ଦୋକାନରେ ମୋତେ ଅପେକ୍ଷା କରିଥିଲା ।

ଚା'ପିଇବା ପାଇଁ ପାଖ ଷ୍ଟଲକୁ ଗଲୁ । ଅର୍ଡ଼ର ଦେଇ ପଚାରିଲି - 'ଏବେ କ'ଣ କରିବା ? ବାପା ପୁଣି ସେଇକଥା ରାତିରେ ପଚାରୁଥିଲେ ।'

'ଗୋଟେ ଉପାୟ ଚିନ୍ତା କରିଛି ।' ଏତିକି କହି ସେ ରହିଗଲା ।

ମୁଁ ଅସ୍ଥିର ଭାବେ ପଚାରିଲି - 'କ'ଣ ?'

'କହୁଛି । ଚାଲ ତାଙ୍କ ମନ ବୁଝିବା ପରି ଗୋଟାଏ ମାନପତ୍ର ତିଆରି କରିବା । ଆର୍ଟିଷ୍ଟଟେ ଯୋଗାଡ଼ କଲେ ଚଳିବ । ଆଉ ମେଡାଲଟେ କିଣି ଆଣିବା ।'

ତା' ପ୍ରସ୍ତାବରେ ଭୂତ ଦେଖିବା ପରି ଚମକି ପଡ଼ିଲି । କହିଲି - 'ହଇରେ ଏ ଚାରିଶ ବିଶ୍ କାମ କରିବା ! ତାଙ୍କ ବିଶ୍ୱାସରେ ବିଷ ଦେବି !'

ସେ ବିରକ୍ତ ହୋଇ ମୋତେ କିଛି ସମୟ ଦେଖିଲା ଓ କହିଲା- 'ହଉ ତୁ ଥା' ତୋ ବିଶ୍ୱାସକୁ ଧରି । ନିର୍ମାଲ୍ୟ କରି ସାଇତି ରଖିବୁ । ମଉସା ମଲାବେଳେ ତାକୁ ପାଣିରେ ମିଶାଇ ତାଙ୍କ ପାଟିରେ ଦେବୁ ।' ଚିଡ଼ିଯାଇ ଯିବାକୁ ଉଠିଲା ।

ହିମାଂଶୁ ଥରେ ଉଠିଗଲେ ଆଉ ଫେରିବନି ବୋଲି ଜାଣେ । ତା' ହାତକୁ ମାଡ଼ିବସି ବସାଇଦେଲି । 'ହଉ ବସ୍ । ଠିକ୍ ଅଛି ଯେ... ତେବେ ସେ ମାନପତ୍ର କ'ଣ କେମିତିଆ ମୁଁ ଆଦୌ ଦେଖିନାହିଁ । ତାକୁ ପ୍ରଶ୍ନ କଲି ।

'ସେ ସବୁ ଦି'ଦିନ ଭିତରେ ରେଡ଼ି ହୋଇଯିବ । ସବୁ କଥାରେ ଛାନିଆ ହେଉଛୁ..' ପୁଣି ଥରେ ବିଗିଡ଼ିଗଲା ।

ବସି ବସି ଚା' ପିଇଲୁ । ମନ ଭିତରେ ହଜାର ପ୍ରଶ୍ନ ମୁଣ୍ଡ ଟେକୁଥାଏ । ହେଲେ ଡରିକରି  ଆଉ କିଛି ପଚାରିଲିନି ।

ଅଫିସ୍ ବେଳ ହୋଇଯାଇଥିଲା । ଦୁହେଁ ଅଲଗା ହୋଇଯିବା ପୂର୍ବରୁ ସେ ମୋତେ ସୂଚାଇ ଦେଲା - 'ଶୀଘ୍ର ବାହାରିବୁ । ଠିକ୍ ଚାରିଟା ବେଳେ ମଉସାଙ୍କ ଘରକୁ ଯିବା ।'

ଠିକ୍ ଚାରିଟା ହେବାକୁ ପାଞ୍ଚ ମିନିଟ୍ ଥାଏ ଅଫିସ୍‌ରୁ ବାହାରିଆସିଲି । ଦୁଇ ତିନି ମିନିଟ୍ ପରେ ହିମାଂଶୁ ପହଞ୍ଚିଲା ।

କହିଲା- 'ଚାଲ୍ ତିନି ନମ୍ବର ପାଖ ମାଛ ମାର୍କେଟ୍‌ର ଆରପଟ ଗଳିକୁ ଯିବା ।'

ମୁଁ ତାଙ୍କୁ ଚାହିଁବାରୁ ହସିଦେଇ କହିଲା- 'ମୋ ସାନ ଭଉଣୀର ମଉସା ଶ୍ୱଶୁର ସେଠି ରହନ୍ତି । ତାଙ୍କ ଘରକୁ ଯିବା ।'

'ଓଃ ଯିଏ ଦଶବର୍ଷ ତଳେ ପୁରସ୍କାର ପାଇଥିଲେ !' ମୁଁ ମନେ ପକାଇବା ପରି କହିଲି ।

ମୋ କଥା ଶୁଣୁ ଶୁଣୁ ତାସଲ୍ୟ କରି କହିଲା - 'ହଁ ସେଇ ଶୁଣ୍ଢା ବୁଢ଼ା ଘରକୁ । କାମ ତ ଅଛି ଶଳା ଗଧ ପାଦ ବି ଧରିବାକୁ ହେବ ଏବେ । ହଉ ଚାଲ୍ ଚାଲ୍ ।'

ଅଳ୍ପ ସମୟ ଭିତରେ ପହଞ୍ଚିଗଲୁ । ବାଟରୁ ଷାଠିଏ ଟଙ୍କାର ମିଠା ପ୍ୟାକେଟ୍‌ଟିଏ କିଣିବାକୁ ବାଧ ହେଲି । କାମ ତ ଅଛି ।

କଲିଂବେଲ୍ ଶବ୍ଦରେ ମାଉସୀ କବାଟ ଖୋଲିଲେ । ଦୁହେଁ ପାଦଛୁଇଁ ପ୍ରଣାମ କଲୁ । ଡ୍ରଇଂରୁମ୍‌ରେ ବସିଛୁ ତ ମଉସା ଆସି ପହଞ୍ଚିଲେ । ନମସ୍କାର କରି ହାତକୁ ମିଠା ପ୍ୟାକେଟ୍‌ଟା ବଢ଼ାଇଦେଲି ।

'ଏତେଦିନେ ମନେ ପଡ଼ିଲା ଏ ବୁଢ଼ା ମଣିଷଟା !' ମଉସା ଅଭିମାନ କଲେ ।

ହିମାଂଶୁ ଚଟ୍‌କରି ଉତ୍ତର ଦେଲା- 'ଶଳା ଅଫିସର୍‌ଟା ତ ଆମକୁ ଗଧ ଭାବି ଏତେ କାମ ଦେଉଛି ଯେ ସେ ଅଡ଼ାରୁ ହୁଗୁଳି ହେଉନି । ତା'ପରେ ତୁମେ ମଉସା କେଉଁଠୁ ବୁଢ଼ା ହେଲଣି ? ତୁମ ଆଗରେ ଆମେ ବି ହାର୍ ମାନିଯିବୁ । ଇଏ ମୋ ସାଙ୍ଗ ନରେନ୍ ।'

ମଉସା ହସିଲେ । ସନ୍ତୁଷ୍ଟ ଭାବ ନେଇ କହିଲେ- 'ହଉ ସାଙ୍ଗକୁ ନେଇ କୁଆଡ଼େ ଆସିଲ ।'

'ଦେଖିବାକୁ ମନ ଥିଲା । ସେଥିରେ ନରେନ୍‌ର ମଧ ସାମାନ୍ୟ କାମ ଅଛି । ବୁଝିଲ ମଉସା, ତୁମ କବିତାର ବଡ଼ ଫ୍ୟାନ୍ ହେଉଛି ନରେନ୍ । ଗୋଟାଏ ମୋଟା ଡାଏରୀରେ କୋଟେସନ୍ କରି ରଖିଛି । ଯେତେ ବହି ପ୍ରକାଶ ପାଇଛି ସବୁପରା ଗୋଟାଏ କାଚ ଆଲମାରୀରେ ସଜେଇ ରଖିଛି । ସବୁବେଳେ ତୁମର କବିତା ଆବୃତ୍ତି କରି ଶୁଣାଏ ।'

ହିମାଂଶୁର ଏ ବାହାଦୂରୀ କଥାରେ ମୋ ଦେହରୁ ଝାଳ ବହିଲାଣି । ଇଏ କି ବିପଦ !

ମୋତେ ଖେଞ୍ଚି ଦେଇ ହିମାଂଶୁ କହିଲା - 'ମଉସାଙ୍କର ଗୋଟାଏ କବିତା ଆବୃତ୍ତି କରି ଶୁଣାଇ ଦେଉଚି ! ବୁଝିଲ ମଉସା, ନରେନ୍‌ର ସେଇଟା ମୁଣ୍ଡ ନୁହେଁ ବରଂ ତୁମ କବିତା ଫିଡ଼ିଙ୍ଗ୍ ହୋଇଥିବା ଗୋଟାଏ କମ୍ପ୍ୟୁଟର୍ ।

ମନେ ମନେ ରାଗରେ ପାଚିଯାଇ କହିଲି - 'ତୋ ମୁଣ୍ଡଗଣ୍ଡି । ଶଳା ଭଲ ଫାନ୍ଦରେ ପକାଇଲୁଣି । ଏ ବୁଢ଼ା ମାଙ୍କଡ଼ର କବିତା କିଏ ଆଉ ମୁଁ କିଏ ? ହେ ମା' କଟକଚଣ୍ଡୀ, ହେ ଲିଙ୍ଗରାଜ, ହେ ଧବଳେଶ୍ୱର - ମୋତେ ମହା ସଂକଟରୁ ରକ୍ଷା କର ।'

ମଉସା ମନଖୋଲା ପରିତୃପ୍ତ ହସଟେ ହସି ମୋ କାନ୍ଧକୁ ଥାପୁଡ଼େଇ ଦେଲେ । ଭାବିଲି ଏଥରକ ମଲି ନିଶ୍ଚିତ ଭାବେ ।

ମୋତେ ଚମକେଇ ଦେଇ କହିଲେ- 'ଥାଉ ସେ ପୁରୁଣା କବିତା । କାଲି ରାତିରେ ଗୋଟେ କବିତା ଲେଖିଛି । ପଢ଼ିକରି ମୁଁ ଶୁଣାଇଦେଉଛି ।'

ଡାଏରୀଟେ ବାହାର କରି କବିତା ପଢ଼ିଲେ । ମୁଁ ସଂକଟରୁ ବର୍ତ୍ତିଯାଇଥିବାରୁ ଆଶ୍ୱସ୍ତ ହୋଇ ଠାକୁରଙ୍କୁ ମନେ ମନେ ଧନ୍ୟବାଦ ଦେଉ ଦେଉ କବିତା ପାଠ ସରିଗଲା । ସେଥିରୁ ବିନ୍ଦୁ ବିସର୍ଗ ମୁଣ୍ଡରେ ପଶିଲାନି ।

ହିମାଂଶୁ ପଚାରିଲା- 'କରେ ଆଖିବୁଜି ଧ୍ୟାନମଗ୍ନ ହୋଇ ଗଲୁଟି କବିତା ଶୁଣୁଶୁଣୁ ! କେମିତି ହୋଇଛି !

କିଛି ନବୁଝିବାପରି କହିଦେଲି - 'ଚମତ୍କାର ! ଏମିତିଆ କବିତା କେବଳ ମଉସା ହିଁ ଲେଖିପାରନ୍ତି । Fantastic !

ମଉସା ଅତିମାତ୍ରାରେ ଖୁସି ହୋଇଯାଇ କହିଲେ - 'ଆଶୀର୍ବାଦ କରୁଛି, ଦୀର୍ଘାୟୁ ହୁଅ ।'

ହିମାଂଶୁ ପଛପଟେ ହାତ ଗଳାଇ ମୋତେ ଚୁମୁଟି ଦେଲା । ସେତିକିବେଳେ ମଉସା ପଚାରିଲେ- ଆଚ୍ଛା କ'ଣ କାମଥିଲା ପରା !'

ହିମାଂଶୁର ଇସାରା ବୁଝିଗଲି । ଗଳା ଧାର କରି କହିଲି - 'ଦଶବର୍ଷ ତଳେ ଆପଣଙ୍କ କବିତା ଯାହା ଥିଲା । ଆଜିକାଲି ସେଇ ଗୁଣମାନର କବିତା ଆଖିରେ ପଡୁନାହିଁ । ବୋଧେ ସେଇଥିପାଇଁ ଲୋକେ ଆଉ କବିତା ପଢ଼ିବାକୁ ଚାହୁଁନାହାନ୍ତି ।'

ମୋ କଥାରେ କଥା ଯୋଡ଼ି ହିମାଂଶୁ କହିଲା - 'ଆରେ ସେଇଆ ନୁହେଁ ତ ଆଉ କ'ଣ ? ଏ ଟୋକା ଟାକେଳିଆ କି କବିତା ଲେଖିବେରେ ! ଶୁଣରେ ଗୋଟାଏ ସଭାରେ ଜଣେ ଯୁବକଟି କ'ଣ କବିତା ପଢ଼ିଲେ ।'

ମଉସା ନାକ ଉପରକୁ ଚଷମା ଟେକିଦେଇ ଆଁ କରି ଚାହିଁଲେ ।

'ହେଇଟି ଶୁଣ ମଉସା'... କହି ପଢ଼ିଲା-

'ପଚା ବାଇଗଣ ବଢାର ପାଖରେ/ବରଫଦିଆ ମାଛର ଦର କଷୁକଷୁ/ତୁମକୁ ଦେଖିଲି ଆଗୋ ଆକାଶୀ ନୟନା/ବସନ୍ତର ଦେହରୁ ଛାଡୁଥିଲା କାତି / ଠିକ୍ ଚମଛଡ଼ା ରୋଗପରି ।'

ହିମାଂଶୁର କବିତା ଅଧାରୁ ଅଟକାଇ ଦେଇ ମଉସା କହିଲେ - 'ଛି ଛି ରାମ୍ ରାମ୍ । ଏଇଟା କବିତା ? ଧିକ୍ ସେ କବିକୁ ।'

ତା'ପରେ ପ୍ରସଙ୍ଗ ବଦଳେଇ କହିଲେ- 'ହଁ କହିବଟି ସେ କାମ କଥା ।'

ହିମାଂଶୁ ଆରମ୍ଭ କଲା- ' ମଉସା ! ଘଣ୍ଟାକ ପାଇଁ ପୁରସ୍କାର ମାନପତ୍ର ଦରକାର ଥିଲା ।'

ଏକଥା ଶୁଣିବା ମାତ୍ରକେ କିଲେ ରକ୍ତ ଶୁଖିଗଲା ମଉସାଙ୍କ ଦେହରୁ । 'ଘଣ୍ଟାଏ ପାଇଁ କ'ଣ କରିବ ! ମୋ ପ୍ରାଣଠାରୁ ବଳି ସାଇତି ରଖିଛି । ଘଣ୍ଟାଏ କ'ଣ, ମୁଁ ମିନିଟ୍‌ଟାଏ ପାଇଁ ମାନପତ୍ରକୁ ମୋ ଠାରୁ ଅନ୍ତର କରିନାହିଁ ।'

ତୁମେ ଓଲଟା ଭାବୁଛ ମଉସା ! ଗୋଟାଏ ଆର୍ଟିଷ୍ଟ ପାଖରେ ନରେନ୍ ବାପାଙ୍କ ପାଇଁ ମାନପତ୍ରଟେ ତିଆରି କରିବାର ଅଛି । ତେଣୁ ନେଇ ତାକୁ ଦେଖାଇଥାନ୍ତୁ ।' ହିମାଂଶୁ ନିଜ ବିରକ୍ତିକୁ ଚାପିଦେଇ କହିଲା ।

'ଆର୍ଟିଷ୍ଟ କଥା ତ ! କହୁନ ସେଇକଥା । ଗୋଟାଏ କାମ କର, ତାକୁ ଏଇଠିକି ନେଇଆସ । ସେ ଏଇଠି ଦେଖିଦେଇ କରିଦେବ ।' ଥଙ୍ଗେଇ ଥଙ୍ଗେଇ କହିଲେ ।

'ହଉ ନରେନ୍, ତୁ ବସିଥା । ମୁଁ ଡାକି ଆଣୁଛି ।' କହି ହିମାଂଶୁ ବାହାରିଗଲା ।

ମଉସା ଭିତରକୁ ଗଲେ ମାନପତ୍ର ଆଣିବାକୁ । ଶୁଣିଥିଲି ତିନି ନମ୍ବରରେ ଥିବା

ଷ୍ଟୁଡ଼ିଓ 'ମାଳିନୀ'ର ମାଲିକ ଯଦିଓ ବୁଢ଼ା ହୋଇଗଲେଣି, ତଥାପି ଭଲ ଆର୍ଟିଷ୍ଟ । କାମ ହୋଇଯିବ ନିଶ୍ଚୟ । ପାଞ୍ଚମିନିଟ୍ ଭିତରେ ହିମାଂଶୁ ସେ ଭଦ୍ରଲୋକଙ୍କୁ ନେଇ ପହଞ୍ଚିଗଲା ।

ଧଇଁସଇଁ ହୋଇ କହିଲା- 'ଏଇବାଟେ ଯାଉଥିଲେ, ସୌଭାଗ୍ୟବଶତଃ ପାଇଗଲି ।'

ମୁଁ ଅତି ଖୁସି ହୋଇଗଲି । ଉଠିଯାଇ ନମସ୍କାର କଲି । -- ମଉସା ଭିତରୁ ଡାକିଲେ- 'ଆରେ ହିମାଂଶୁ ଆସ ---ଭିତରକୁ । ସେ ଉପର ବାକ୍ସଟା ବାହାର କରିବ ।'

ଉଠୁଉଠୁ ହିମାଂଶୁ ମୋତେ ଅନୁଚ୍ଚ ସ୍ୱରରେ କହିଲା ଶଳା ଶୁଣୁ ବୁଢ଼ା ! କେତେ ପେଖେନା ବାହାର କରୁଛି । କି ଗଲାବେଳକୁ ମାନପତ୍ରକୁ ମୁଣ୍ଡେଇ ନେବ ଯେମିତି !'

ରାଗୁ ପଛେ ଭିତରକୁ ଯାଇ ହାତିକିଆ ବାକ୍ସଟାଏ ନେଇ ଆସିଲା । କେଉଁ କାଳରୁ ଅଳନ୍ଧୁ ଲାଗିଯାଇଛି । ବାହାରେ କଳଙ୍କି ଧରିଗଲାଣି । ବାକ୍ସରେ ତଳକୋଣ କଙ୍କିଖାଇ କଣା ହୋଇଛି । ତାଲା ଖୋଲିବାକୁ କଷ୍ଟ ହେଲାରୁ ହିମାଂଶୁ ଟାଣିଦେଇ ଭାଙ୍ଗିଦେଲା ।

ମଉସା ଲଣ୍ଡଭଣ୍ଡ ହୋଇ ଖୋଲିଦେବାରୁ ଦେଖିଲେ ଯେ ମାନପତ୍ର ଚଷୁ ପରି ବିଛା ହୋଇଛି । ତା ଭିତରେ ଚୁଟିଆମୂଷାବେ ଚାରି-ଛ'ଟା ଛୁଆଧରି ଉପରକୁ ଲୁକ୍ଲୁକ୍ କରି ଅନେଇଛି । ଭିତରଟା ମୂଷା ଲଣ୍ଡି ଗନ୍ଧରେ ଫାଟିପଡୁଛି ।

କିଛି ସମୟର ନୀରବତା ପରେ ଆମେ ଦୀର୍ଘଶ୍ୱାସ ଛାଡ଼ି ଫେରିଲୁ ।

ସେ ସହୃଦୟ ବୃଦ୍ଧ ଆର୍ଟିଷ୍ଟ ଜଣକ ସବୁ ଶୁଣି ସମବେଦନା ଜଣାଇ ପ୍ରତିଶ୍ରୁତି ଦେଲେ ଯେ କାଲି ସକାଳକୁ ମାନପତ୍ରଟେ ତିଆରି କରିଦେବେ ।

ନଈବଢ଼ି ବେଳେ କୁଟାଖଣ୍ଡକ ବି ନୌକାପରି ମନେହୁଏ । ମନକୁ ମନ ସାନ୍ତ୍ୱନା ଦେଇ ଫେରିଲି ।

ଫେରିବା ବେଳକୁ ଖୁବ୍ ରାତି ହୋଇଯାଇଥିଲା । ବାପା କାଳେ କଲିଂବେଲ୍ ଶବ୍ଦରେ ଉଠିପଡ଼ିବେ ସେଥିପାଇଁ କବାଟରେ ଆସ୍ତେ ଶବ୍ଦ କଲି । ଅନୁ କବାଟ ଖୋଲିଲା ।

କାନ୍ଦ ସ୍ୱରରେ କହିଲା - 'ସକାଳୁ ଯାଇଛ ଯେ ରାତି ଅଧ ହେଲାଣି । ବାପାଙ୍କ ଦେହ ଭାରି ଖରାପ ହେବାପରି ଲାଗୁଛି । ସାରାଦିନ ଖୋଜୁଥିଲେ ।'

ଏତେ ଭିତରେ ଶାନ୍ତ ରହି ନପାରି ଚିଡ଼ିଉଠି କହିଲି - 'ମୋତେ ଖୋଜୁଥିଲେ ପୁରସ୍କାର କଥା ପଚାରିବାକୁ ନା ?'

'ସେମିତି କ'ଣ କହୁଛ । ସେକଥା କିଛି କହିନାହାନ୍ତି । କହୁଥିଲେ- ପୁଅଟା ଏତେ ଖଟୁଛି । କହିବ ଆସିଲେ ମୋ ପାଖରେ କିଛି ସମୟ ବସିବ । କଥା ଦି'ପଦ ହେବାକୁ କ'ଣ ବେଳ ନାହିଁ !' ଅନୁ ଆଖିରୁ ଲୁହ ଟୋପା ଟୋପା ହୋଇ ଝରି ପଡ଼ିଲା ।

ଶୋଇବା ବେଳକୁ ଠିକ୍ କଲି ଯେ ସକାଳୁ ମାନପତ୍ର ସହ ହିମାଂଶୁ କିଣିଥିବା ମେଡାଲ୍‌ଟାକୁ ଆଣି ଧରାଇ ଦେଇ ତାପରେ ତାଙ୍କ ପାଖରେ ବସିବି । ଅନ୍ତତଃ ଏ କାମ ପୂର୍ବରୁ ତାଙ୍କୁ ଦେଖା କରିବିନାହିଁ ।

ସକାଳ ସାତଟାରେ ଉଠିବା ମାତ୍ରକେ ମୁହଁ ଧୋଇ ବ୍ରଶ୍ କରି ପ୍ୟାଣ୍ଟସାର୍ଟ ଗଳାଇ ଦେଇ କାହାକୁ କିଛି ନକହି ବାହାରିଗଲି ।

ଭଦ୍ରଲୋକ ତାଙ୍କ ପ୍ରତିଶ୍ରୁତି ଅନୁସାରେ ରେଡ଼ି କରିଥିଲେ । ଏତେ ଚମତ୍କାର

ଭାବେ ତିଆରି କରିଥିଲେ ଯେ ସତ କି ମିଛ ବାରି ହେବା କଷ୍ଟକର । ପେପର୍‌ରେ ଗୁଡ଼ାଇ ଦେଇ ମୋ ହାତକୁ ବଢ଼ାଇଦେଲେ । ମୁଁ ପକେଟରୁ ଟଙ୍କା ବାହାର କଲାବେଳକୁ ମୋ ହାତକୁ ଚାବୁଡ଼ି ଧରି କହିଲେ- 'ଏଥିପାଇଁ ଟଙ୍କା ନେବିନାହିଁ । ମୋ ବାପାଙ୍କ ପାଖରେ ମୁଁ ଋଣି ଥିଲି । ତାଙ୍କ ଶେଷ ଇଚ୍ଛା ପୂର୍ଣ୍ଣ କରି ପାରିନଥିଲି । ଏଇ ରାସ୍ତାରେ ପିତୃଋଣ ପରିଶୋଧ ହୋଇପାରିବ ବୋଲି ଆଶା କରୁଛି ।' ଫେରିବା ବାଟରେ ହିମାଂଶୁଠାରୁ ମେଡାଲ୍‌ଟା ଆଣିଲି । ରାତିରୁ କିଣି ସାରିଥିଲା ତାଙ୍କ ଘର ପାଖ ଦୋକାନରୁ ।

ଘରେ ପହଞ୍ଚିବା ବେଳକୁ ନ'ଟା ବାଜି ସାରିଥିଲା । ଘର ନିସ୍ତବ୍ଧ ଲାଗୁଥିଲା ସରପ୍ରାଇଜ୍ ଦେବି ବୋଲି ପାଦ ଚିପିଚିପି ଘରେ ପଶିଲି ଯେମିତି କେହି ମୋତେ ଦେଖିପାରିବେ ନାହିଁ । ଭାବିଲି ସିଧା ବାପାଙ୍କ ରୁମ୍‌ରେ ପଶିଯିବି ଓ କହିବି - 'ଦେଖ ବାପା ! ତୁମକୁ ପୁରସ୍କାର ମିଳିଛି । ତୁମେ ଶଯ୍ୟାଶାୟୀ ବୋଲି ମୋତେ ଗ୍ରହଣ କରିବାକୁ ପଡ଼ିଲା । ଦେଖ କେଡ଼େ ସୁନ୍ଦର ମାନପତ୍ର ଫଳକ ।'

ତାପରେ ବାପା ଖୁସିରେ ଆଁ କରି ଦେଖିବେ । ଆହୁରି ଖୁସି ହେବେ ଯେ ମୁଁ ତାଙ୍କ ଶେଷ ଇଚ୍ଛାକୁ ପୂର୍ଣ୍ଣ କରିଛି ବୋଲି ।

ଭାବିବା ମଧ୍ୟରେ ବାପାଙ୍କ ରୁମ୍ କବାଟକୁ ଠେଲି ଦେଇ ପଶିଗଲି । ବାପା ଡାକିହୋଇ ଶୋଇଥିଲେ । ତାଙ୍କ ବିଛଣାରେ କପ୍ ଓ ମାନପତ୍ର ଥୋଇଦେଇ କହିଲି- 'ତୁମେ ପୁରସ୍କାର ପାଇଛ ବାପା ! ନିଅ ଦେଖ ।'

'କାହାକୁ ଠକୁଛ ? ବାପାଙ୍କୁ ? ତାଙ୍କର ଦରକାର ନାହିଁ ମାନପତ୍ର, ପୁରସ୍କାର କିମ୍ୱା ଏ ମିଛ ପ୍ରହସନ ।' କମ୍ପିତ ଗଳାରେ ପଛରୁ ଅନୁ କହିଲା ।

ମୁହଁ ବୁଲାଇ ଆସ୍ତେ କରି କହିଲି - 'ଚୁପ୍‌କର' ।

ଅନୁ ମୋତେ ବାପାଙ୍କ ମୁହଁ ପାଖକୁ ଟାଣିଆଣି ଠିଆ କରାଇ ଦେବା ସଂଗେ ସଂଗେ ମୁହଁରୁ ଚଦରଟା ଧୀରେ କାଢ଼ିଦେଲା । ବାପା ଅନେଇଛନ୍ତି ।

ମୁଁ ଭୟରେ ସଙ୍କୁଚିତ ହୋଇଗଲି । 'ତାହେଲେ ବାପା ଆମ କଥା ଶୁଣି ଦେଇଛନ୍ତି ।'

'କେମିତି ମୂର୍ଖଙ୍କ ପରି କଥା କହୁଛ ! ସକାଳ ଆଠଟାଯାଏ କେବଳ ତୁମକୁ ହିଁ ଖୋଜିଛନ୍ତି । କହିଲେ- 'ପୁଅ କ'ଣ ମୋ ଉପରେ ଅଭିମାନ କରି ଚାଲିଗଲା କି ? ତାକୁ ଡାକ ଥରେ ଦେଖିବି । ମୋର ସେ ପୁରସ୍କାର ଦରକାର ନାହିଁ । କହୁ କହୁ ଅନୁ ଜୋର୍‌ରେ କାନ୍ଦିଲା ।

ତା'ମାନେ ବାପା ଆଉ ନାହାନ୍ତି ।' ଅବିଶ୍ୱାସ କଣ୍ଠରେ କେଇଟି ଶବ୍ଦ ଗୁଞ୍ଜରିତ ହେଲା ।

ସେ ମାନପତ୍ର ଓ ମେଡାଲ୍‌ଟାକୁ ଝିଙ୍କିଆଣି ବାହାରକୁ ଫୋପାଡ଼ି ଦେଇ ବାପାଙ୍କ ପାଦତଳେ ଲୋଟିପଡ଼ିଲି । ମୁଁ ଲୁହରେ ଭିଜୁଥିଲି ଓ ଭିଜୁଥିଲା ବାପାଙ୍କ ପାଦ ଦୁଇଟି ।

# ଗୋଧୂଳିର ରଙ୍ଗ

ସାରା ସନ୍ଧ୍ୟାର ପ୍ରୋଗ୍ରାମ୍ ଠିକ୍ କରିସାରିଥିଲି ।

ପାଦରେ ସ୍ଲିପର ଗଳାଇ ଦେଇ ବାଥ୍‌ରୁମ୍‌ରେ ପଶୁ ପଶୁ ଦେଖିଲି ବାଥ୍‌ଟବ୍‌ରେ ବାମ୍ଫଉଠା ଗରମ ପାଣି ରଖା ହୋଇଛି । କବାଟ ବନ୍ଦ କରି ଦେଇ ଇରିନାକୁ ମନେ ମନେ ଧନ୍ୟବାଦ ଦେଲି । ପାଖରେ ଥିଲା ରୋଜ୍ କ୍ରିମ ଓ ଅଲିଭ୍ ଅଏଲ୍‌ର ପେଷ୍ଟ । ଦେହରେ ପେଷ୍ଟକୁ ହାଲ୍‌କା ଭାବେ ଘଷିନେଇ ଦେହସୁହା ଗରମ ପାଣିରେ ଗାଧୋଇବା ବେଳେ ଇରିନାକୁ ଆଉଥରେ ଧନ୍ୟବାଦ ଦେଲି ଅସ୍ଫୁଟ କଣ୍ଠରେ ।

ଚେଞ୍ଜ ପାଇଁ ରୁମ୍‌ରେ ପାଦ ଦେଲାବେଳେ ଦେଖିଲି ଇରିନା ମୋ ଗାଉନ୍ ସଜାଡୁଛି । ମୋତେ ଦେଖି ସ୍ମିତ ହସି ଶୁଭସନ୍ଧ୍ୟା ଜଣାଇଲା । କହିଲା- ''ରଷିଆନ୍ ପାଟର୍ଣ୍ଣ ଗାଉନ୍ ରଖିଛି । ଠିକ୍ ମାନିବ । ମୁଁ ଫାୟାର ପ୍ଲେସ୍‌ରେ ଅପେକ୍ଷା କରିଛି ।' ମୋ ଉତ୍ତରକୁ ଅପେକ୍ଷା ନକରି ସେ ବାହାରିଗଲା । ଅବଶ୍ୟ  ମୋର ତାକୁ ଆଉ କିଛି କହିବାକୁ ନଥିଲା ।

ଇରିନାକୁ ଭେଟିଥିଲି ଘର ପଛପଟ ଲେକ୍ କୂଳରେ । ଆତ୍ମହତ୍ୟା କରିବାକୁ ଡେଇଁ ପଡ଼ିଥିଲା । ଅଥଚ ଭାଗ୍ୟବଳରୁ ହେଉ କିମ୍ବା ଆୟୁଷ ଥିବାରୁ, କୂଳରେ ଅଚେତ୍ ଅବସ୍ଥାରେ ଲାଗିଥିଲା । ବଗିଚାରେ ସକାଳୁ ବୁଲିବାବେଳେ ତାକୁ ଦେଖିଥିଲି ଘରକୁ ଆଣିବା ପରେ ସେ ଚେତା ଫେରିପାଇଲା । ସେଇଦିନୁ ସେ ଏ ଘରେ ଅଛି । ପାଞ୍ଚବର୍ଷ ହୋଇଗଲାଣି ।

ସପ୍ତାହକ ପରେ ସନ୍ଧ୍ୟାରେ କଫି ପିଇବା ବେଳେ ତା' ଆତ୍ମହତ୍ୟା କରିବାର କାରଣ ପଚାରିଥିଲି । ସଂଧ୍ୟା ଆକାଶର ସ୍ତିମିତ ଆଭା ପରି ମଉଳା ହସଟେ ହସି କହିଥିଲା- 'ସ୍ୱାମୀ ତାର ଯଦିଓ ଏତେ ଭଲ ନୁହେଁ ତଥାପି ଚଳି ଯାଉଥିଲା । ହେଲେ ଆଉ ଗୋଟେ ସ୍ୱାମୀ ପରିତ୍ୟକ୍ତା ସ୍ତ୍ରୀକୁ ଦ୍ୱିତୀୟ ବିବାହ କରିବା ପାଇଁ ଛାଡ଼ପତ୍ର ଦେବାରୁ ଦୁଃଖ ସହି ନପାରି ଆତ୍ମହତ୍ୟା କରୁଥିଲା ।''

ମୋତେ ଯେତିକି ଦୁଃଖ ଲାଗୁଥିଲା, ତା'ଠାରୁ ଅଧିକ ରାଗ ଲାଗୁଥିଲା ଇରିନାର ଏ ମୂର୍ଖାମୀ ପାଇଁ । କିଛି କହିଲିନି । ପଚାରିଲି - ''ଯା ପରେ କ'ଣ କରିବ ?''

ସେତେବେଳେ ସେ ପାଇନ୍ ଗଛର ଚକ୍‌ଚକ୍ ପତ୍ରକୁ ନିରିଖେଇ ଦେଖୁଥିଲା । ନିରୁତ୍ତର ରହିଲା ମୋ ପ୍ରଶ୍ନରେ ।

କହିଲି - ''ମୋ ପାଖରେ ରହିବ !''

ମୋ ପ୍ରଶ୍ନରେ ଥରଟିଏ ପାଇଁ ମୋତେ କୃତଜ୍ଞତାଭରା ଚକ୍ଷୁରେ ଦେଖିଲା । ନୀଳ ଆଖିରେ ଲୁହ ଜମାଟ ବାନ୍ଧିବାକୁ ଆରମ୍ଭ କରୁଥିଲା, ସତେ ଯେମିତି ହ୍ରଦଟିଏ ପାଲଟି ଯିବକି ?

ସେଇଦିନୁ ଇରିନା ମୋ ପାଖରେ ଅଛି । ଅନ୍ତରଙ୍ଗ ବନ୍ଧୁଟିଏ ପରି, ମାଆଟିଏ ପରି ।

ଗାଉନ୍ ପିନ୍ଧି ନେଇ ଫାୟାର ପ୍ଲେସ୍‌ରେ ପାଦ ଦେଲି । ସଂଧ୍ୟା କ୍ରମଶଃ ଘନୀଭୂତ ହେଉଥିଲା, ଠିକ୍ ପାହାଡ଼ତଳେ ବସ୍ତିରେ ରହୁଥିବା କୃଷ୍ଣକାୟ ନିଗ୍ରୋ କନ୍ୟାର ଇତଃସ୍ତତଃ ଭାବେ ଝୁଲିପଡ଼ିଥିବା କେଶଗୁଚ୍ଛ ପରି । ଆର୍ମ ଚେୟାରଟିଏ ଟାଣି ଆଣି ବସିଲି ଫାୟାର ପ୍ଲେସ୍‌ଠାରୁ କିଛି ଦୂରରେ । ଇରିନା କଫି କପ୍‌ଟିଏ ଦେଇ ବେତମୋଡ଼ା ଟାଣିଆଣି ପାଖରେ ବସିଲା । ମୋତେ ପ୍ରଶ୍ନିଳ ଚାହାଣିରେ ଚାହିଁ ରହିଲା ।

ଏ ଚାହାଣୀର ଅର୍ଥ ମୁଁ ବୁଝେ ।

କହିଲି - ''ବବ୍ ଚାଲିଗଲା । ତା' ଅବର୍ତ୍ତମାନରେ ନିଃସଙ୍ଗ ଲାଗୁଛି, ଦୁଃଖ ବି ଲାଗୁଛି । ବରଂ ବେଶୀ ଦୁଃଖ ଲାଗୁଛି ତା' ଅଳ୍ପବୟସ୍କା ସ୍ତ୍ରୀ ଓ ଛୋଟ ପୁଅଟି ପାଇଁ ।''

ଇରିନା ମୁଣ୍ଡ ଟୁଙ୍ଗାରିଲା ।

ଦୀର୍ଘଶ୍ୱାସ ଛାଡ଼ି ପୁଣି କଥା ଆରମ୍ଭ କଲି- ''ବବ୍ ଖୁବ୍ ଭଲ ସାଙ୍ଗଟିଏ ଥିଲା । କିଏ ଜାଣିଥିଲା ପିକ୍‌ନିକ୍ କରିବାକୁ ଯାଇ ୱାଟରଫଲ୍‌ରେ ମିଶିଯିବ ବୋଲି ! ଡାକ୍ତର ହିସାବରେ ଭଲ ହାତ ବି ଥିଲା । କାଲି ସଧାରେ ତା' ପାଇଁ ଶୋକସଭା ହେବ । ସବୁ ସାଙ୍ଗମାନେ ତା' ପାଇଁ ଗୋଟେ ସୋଭେନିଅର ପ୍ରକାଶ କରିବୁ । ହେଲେ କାଲି ପାଇଁ ଲେଖାଟେ ଜରୁରୀ ଅଛି । ଆଜି ରାତିରେ ଲେଖିବାକୁ ପଡ଼ିବ ।''

''ତୁମକୁ ଲେଖିବାକୁ ପଡ଼ିବ ଜାଣି ଷ୍ଟଡ଼ିରୁମ୍ ସଜାଡ଼ି ଦେଇଛି ।'' ସେ ଆଗ୍ରହରେ କହିଲା ।

''ଧନ୍ୟବାଦ ଇରିନା ।'', ସ୍ମିତ ହସି କହିଲି ।

ଅଳସ ଭାଙ୍ଗି ଉଠିବାକୁ ଚେଷ୍ଟା କଲାବେଳେ ହଠାତ୍ ମେହେଗାନି କାଠରେ ତିଆରି ସଦର ଦରଜା ବାହାରେ କଲିଂବେଲ୍ ବାଜି ଉଠିଲା ।

ଇରିନା ଥିଲା ବୋଲି ମୁଁ ଏତେଟା ଗୁରୁତ୍ୱ ନଦେଇ ଷ୍ଟଡ଼ିରୁମକୁ ଚାଲିଗଲି । କିଛି ସମୟ ପରେ ଇରିନା ମଥା ନୁଆଁଇ ମୋ ପାଖରେ ନୀରବରେ ଠିଆହେଲା ।

ମୋ ହାତରେ କଲମ ଅଟକିଗଲା । ପରିବେଶ ଈଷତ୍ ଥଣ୍ଡା ଥିଲା । କାର୍ଡ଼ିଗନ୍‌ଟାକୁ ଦେହ ଉପରକୁ ଟାଣିନେଇ ତାକୁ କିଛି ପ୍ରଶ୍ନ କରିବା ପୂର୍ବରୁ ସେ ସେମିତି ତଳକୁ ମୁହଁ ପୋତି କହିଲା- ମିଃ. ଲ୍ୟାଣ୍ଡଲର୍ଡ଼ ତଳକୁ ଡକାଇଛନ୍ତି ।''

'ଏବେ' -ଆଶ୍ଚର୍ଯ୍ୟ ଭାବେ ପ୍ରଶ୍ନ କଲି ।

'ହଁ'ଟିଏ ମାରି ସେ ନୀରବ ରହିଲା ।

''କାରଣ କ'ଣ ଜାଣ କି ?'' ଚେୟାର ଘୁଞ୍ଚାଇବା ବେଳେ ପଚାରିଲି । ''ଜାଣେନା । ତଥାପି ଜଣେ ସ୍ତ୍ରୀଲୋକ ତଳେ ବସିଛନ୍ତି ଓ ଉତ୍ତ୍ୟକ୍ତ ହୋଇ କ'ଣ ବକୁଥିଲେ । ଏତିକି ଦେଖିଛି । '' ଧିର କଣ୍ଠର ଉତ୍ତର ଦେଲା ।

''ଧେତ୍, ମୋର ଲେଖାଟା ଶେଷ କରିବାର ଥିଲା । କାଲି ସନ୍ଧ୍ୟା ସୁଦ୍ଧା ପ୍ରିଣ୍ଟ କରି ପଢ଼ିବାକୁ ହେବ ।'' ମନର ବିରକ୍ତିକୁ ତା' ସମ୍ନାରେ ଖୋଲିଦେଲି ।

''ଚାଲ, ଆସିଲେ ଦେଖିବା ।'' କହି ସେ କାନ୍ଥ କଡ଼କୁ ଆଉଜି ଗଲା ।

ଫରର କୋଟ୍‌ଟା ଦେହରେ ଗଳାଇ ଦେଇ ତାରକସି କାମର ହାଫ୍ ସୁ' ପାଦରେ ପିନ୍ଧି ତଳକୁ ଓହ୍ଲାଇଲି ।

ପରଦା ଆଡ଼େଇଦେଲା ଇରିନା ଓ ମୁଁ ଭିତରେ ପ୍ରବେଶ କଲି । ସେଇଟା ଥିଲା ତିନିପୁରୁଷ ତଳର କୋର୍ଟରୁମ୍ ।

ଗୋଟାଏ ସଦୃଶ୍ୟ ସିଂହାସନ ପରି ବୃହଦ୍‌କାୟ ଚେୟାରରେ ବସିଥିଲେ ଲ୍ୟାଣ୍ଡଲର୍ଡ୍ ଜେମ୍ସ । କିଛି ଦୂରରେ ଜଣେ ବୟସ୍କା ସ୍ତ୍ରୀ ଲୋକ । ବିବାହିତା କି ଅବିବାହିତା କିଛି ଜଣାପଡୁ ନଥିଲା ।

ମୁଁ ନୀରବରେ ଯାଇ ଜେମ୍ସଙ୍କ ବାଁପଟ ଚେୟାରରେ ବସିଲି ।

''ଶୁଣ, ଏ ଭଦ୍ରମହିଳା କ'ଣ କହୁଛନ୍ତି ?'' ଜେମ୍ସଙ୍କ କଣ୍ଠରେ ଉଷ୍ଣତା ଖେଳି ବୁଲୁଥିଲା ।

''କହିଲେ ସିନା ଜାଣିବି ।'' ସମସ୍ୱରରେ ମୁଁ ଉତ୍ତର ଦେଲି ।

''ତାଙ୍କ ଅଭିଯୋଗ ହେଉଛି ତୁମ ବହି ପଢ଼ି ପଢ଼ି ତାଙ୍କ ସ୍ୱାମୀ ବଦଳି ଯାଉଛନ୍ତି ଏବଂ ପ୍ରେମ କରି ଦ୍ୱିତୀୟ ପତ୍ନୀ ଗ୍ରହଣ କରିଛନ୍ତି । ତେଣୁ ତାଙ୍କ ଦୃଷ୍ଟିରେ ତୁମେ ହିଁ ଦୋଷୀ । ତାଙ୍କ ଦୁର୍ଦ୍ଦଶା ପାଇଁ ତୁମେ ଦାୟୀ ।'' ବିଚାରପତିଙ୍କ ପରି ଜେମ୍ସ ଶୁଣାଇଦେଲେ ।

ମୁଁ ସେଠାରେ ହସିବି କି କାନ୍ଦିବି କି ରାଗିବି, ମୋ ଚିନ୍ତା ବହିର୍ଭୂତ ଥିଲା । ତଥାପି ନିଜକୁ କିଛି ମାତ୍ରାରେ ଶାନ୍ତ ରଖିବାକୁ ଚେଷ୍ଟା କରି ପଚାରିଲି - ''ମୋ ବହି ପଢ଼ି ଏମିତି ଅବସ୍ଥା ହୋଇଛି । ମୋର ବିଶ୍ୱାସ ହେଉନାହିଁ । ବହି ତ ଜଣକ ଉଦ୍ଦେଶ୍ୟରେ ଲେଖା ହୋଇନାହିଁ । ହଜାର ହଜାର ଲୋକ ପଢ଼ିଛନ୍ତି । ପ୍ରଶଂସା କରିଛନ୍ତି । ପୁରସ୍କାର ବି ପାଇଛି । କେହି ଆଜି ପର୍ଯ୍ୟନ୍ତ ଏମିତି ଅଭିଯୋଗ କରିନାହାନ୍ତି । ସେ ବହି ତୁମେ ପଢ଼ିଛ ?''

''ହେଁ- ମୁଁ ପଢ଼ିଛି । କେବଳ ପଢ଼ିନାହିଁ, ସେ ବହି ନିଜେ କିଣି ଘରକୁ ନେଇଥିଲି । ତୁମ ଲେଖାର ପ୍ରଶଂସକ ଥିଲି ଅଥଚ ମୋ ଘର ଭାଙ୍ଗିଯିବା ପରେ ତୁମକୁ ଘୃଣା କରୁଛି ।' ଫଣଫଣ ମୁହଁ କରି ବିକୃତ ସ୍ୱରରେ ସେ କହିଲା ।

ଅନେକ ପ୍ରଶଂସା ପାଇଥିଲି । ହେଲେ ଏ ଘୃଣାର ତୀବ୍ରତା ଯନ୍ତ୍ରଣାସିକ୍ତ କରିଦେଲା ।

''ମୋ ସ୍ୱାମୀ ସେ ବହି ପଢ଼ିବା ପରେ ମୋତେ ଛାଡ଼ି ଚାଲିଗଲେ । ଏବେ ଶୁଣିଲି ଯେ ସେ ପ୍ୟାରିଠାରେ ବିବାହ କରିଛନ୍ତି । ଖବରକାଗଜରେ ଫଟୋ ମଧ୍ୟ ଛପା ହୋଇଛି । ମୋ ଭାଗ୍ୟ ସହ ତୁମେ ଖେଳ ଖେଳିଛ । ମୋ ସୌଭାଗ୍ୟକୁ ଚୁର୍‌ମାର କରିଦେଇଛ ।'' ପୁନର୍ବାର ସେ କହିଲା ।

''ହେଲେ ଏଥିପାଇଁ କ'ଣ ମୁଁ ଦାୟୀ ? ତୁମ ସ୍ୱାମୀକୁ ବାନ୍ଧି ରଖିବାର ଦାୟିତ୍ୱ ତୁମର । ବହି ପଢ଼ି କିଏ କ'ଣ ଜୀବନର ଗତିପଥ ବଦଳାଇ ଦିଏ ?'' ମୋ କଥାରେ ସେ ଆହତ ସର୍ପିଣୀ ପରି ଚମକି ଉଠିଲା ।

କହିଲା- ''ତୁମେ ଏଥରକ ମୋ ଭରଣପୋଷଣର ଦାୟିତ୍ୱ ନେବ । ମରିବାଯାଏ ମୁଁ ଏଠୁ ଉଠିବି ନାହିଁ ।''

କହୁ କହୁ ଗୋଡ଼ ଉଠାଇ ଢାକିଳୁକି ହୋଇ ଆଣ୍ଠୁରେ ମଥା ଲଦି ବସିଲା । ସ୍ତ୍ରୀ ଲୋକଟାର ଉଦ୍ଧତପଣ ପାଇଁ ମୋ ରକ୍ତରେ ନିଆଁ ଲାଗିଗଲା ପରି ଅନୁଭବ କଲି ।

ଭାବିଲି ଦରୱାନ୍‌କୁ କହି ଗଳାଧକ୍କା ଦେବାକୁ ନଚେତ୍ ଡୋବରମ୍ୟାନ୍ ହର୍ଷିକୁ ତା' ପିଛାରେ ଲଗାଇଦେବାକୁ ।

କ୍ଷଣକ ପାଇଁ ଜେମ୍ସଙ୍କୁ ଦେଖିଲି । ରାଗରେ ମୁହଁ ଲାଲ୍ ଦିଶୁଛି ଓ କପାଳରେ ଶିରା ଫୁଲି ଉଠିଛି । ଦୁଇହାତ ପାପୁଲିକୁ ଚାପି ଧରିଛନ୍ତି ।

ଅଚାନକ ଉଠିପଡ଼ି କବାଟ ଆରପଟରେ ଅପେକ୍ଷା କରିଥିବା ଇରିନାକୁ ଡାକିଲେ । ସେ ଆସିବା ମାତ୍ରକେ କହିଲେ- 'ଏ ଭଦ୍ରମହିଳାଙ୍କୁ ପ୍ରଥମ ଗେଷ୍ଟ ରୁମ୍‌କୁ ନେଇଯାଅ ।''

ଏତକ ଶୁଣିବା ମାତ୍ରକେ ସେ ସ୍ତ୍ରୀଲୋକର ଆଖିରେ କିଛି ମାତ୍ରାରେ ଖୁସି ଚମକି ଉଠିଲା, ଯେମିତି ନୀଳହ୍ରଦରେ ପ୍ରଥମ ଉଷାଲୋକ ପ୍ରତିବିମ୍ବିତ ହୁଏ । ସେ ଉଠିଲା ଯିବାପାଇଁ ।

ଏଥରକ ଜେମ୍ସ ମୋତେ ଚାହିଁଲେ । ଗମ୍ଭୀର ସ୍ୱରରେ କହିଲେ - 'ଆଜିଠାରୁ ଏ ଲେଖାଲେଖି ସବୁଦିନ ପାଇଁ ବନ୍ଦ । ସଂସାର ପ୍ରତି ଦୃଷ୍ଟି ଦିଅ । ନଚେତ୍ ଡାଇଭୋର୍ସ ପାଇଁ ବେଶୀ ସମୟ ଲାଗିବନି ।'

ଆଗକୁ ପାଦ ବଢ଼ାଉଥିବା ଇରିନା ଥମିଯାଇ ମୋତେ ଚାହିଁଲା । ମୋତେ ଲାଗିଲା ପାଦ ତଳୁ ମାଟି ଧସି ଯାଉଥିଲା । ଅପମାନରେ ଜେମ୍ସଙ୍କ ମୁହଁ ଚାହିଁନପାରି ସେଠାରୁ ଦ୍ରୁତ ପାଦରେ ଚାଲିଆସିଲି ।

ଷ୍ଟଡ଼ି ରୁମ୍‌କୁ ନ ଫେରି ସିଧାସଳଖ ଉପରେ ଥିବା ନିଜ ବେଡ୍ ରୁମ୍‌କୁ ଚାଲି ଆସିଲି । ଯଦିଓ କାନ୍ଦ ଲାଗୁଥିଲା ତଥାପି ଭିତରର କୋହକୁ ଚାପି ଦେଲି ।

ସେ ସ୍ତ୍ରୀ ଲୋକଙ୍କୁ ଯେତିକି ରାଗ ଲାଗୁ ନଥିଲା, ତା'ଠାରୁ ଅଧିକ ରାଗ ଲାଗୁଥିଲା ଜେମ୍ସଙ୍କ ଉପରେ । କିଛି ବିଚାର ନ କରି, କୌଣସି ପ୍ରମାଣ ନ ପାଇ ମୋତେ ଦୋଷକରାଇ ଦେଲେ । ବିଚିତ୍ର ସ୍ୱାମୀଟିଏ !

ଏଇ ହ୍ରଦର ଆରପଟେ ଗୋଟେ ସୁନ୍ଦର ଘଞ୍ଚ ଜଙ୍ଗଲ ଅଛି । ଆଉ ତା' ଆରପଟେ ପରୀକାହାଣୀର ସୁନ୍ଦର ଗାଁ ପରି ଆମ ଗାଁ । ଗାଁର ଶେଷ ଗଳିରେ ଘର । ଘର ସାମ୍ନାରେ ଡାଫୋଡିଲ୍‌ର ବଗିଚା ଓ ପଛରେ ଅନେକ ଚେରି, ପିସ୍ତାବାଦାମ୍‌ର ଗଛ ଅଛି । ପାଠ ପଢ଼ା ସାଙ୍ଗରେ ଲେଖାଲେଖି କରୁଥିଲି ।

ସେଥରକ ଯାହାଙ୍କ ହାତରୁ ପୁରସ୍କାର ଆଣିଥିଲି ସେ ଥିଲେ ଜେମ୍ସଙ୍କ ବାପା । ଶୁଭେଚ୍ଛା ଜଣାଇ କହିଥିଲେ, ''ତୁମେ ନିଶ୍ଚୟ ପ୍ରସିଦ୍ଧି ଅର୍ଜନ କରିବ । ବଡ଼ ଲେଖିକା ହେବ ।'' ତାଙ୍କ ସାମ୍ନାରେ ମଥା ନୁଆଁଇଥିଲି ।

ଏ ଘଟଣାର ପାଞ୍ଚ ଛ' ମାସ ପରେ ଗୋଟେ ସୁନ୍ଦର ଦାମିକା ଗାଡ଼ିରେ ବସି ଆମ

ଘର ପାଖରେ ପହଞ୍ଚିଲେ । କରିଡ଼ରରେ ବସି ଲେଖୁଥାଏ । ତାଙ୍କୁ ଦେଖି ପାଛୋଟି ଆଣିଲି ।

ଆମ ଛୋଟ ଡ୍ରଇଁରୁମ୍‌ରେ ବସିପଡ଼ି ଅତି ନିବିଡ଼ ବନ୍ଧୁଟିଏ ପରି ମୋ ବାପାଙ୍କ ସାମ୍ନାରେ ତାଙ୍କ ଆଗମନର ଉଦ୍ଦେଶ୍ୟ ଜଣାଇଲେ ।

ତାଙ୍କ ପୁଅ ଜେମ୍ସ ସହିତ ମୋର ବିବାହ ହେଉ ବୋଲି ସେ ଚାହାନ୍ତି । ଜେମ୍ସ ପାଠପଢ଼ି ଘରକୁ ଫେରି ଦାୟିତ୍ୱ ନେବା ପରିବର୍ତ୍ତେ ସାଙ୍ଗସାଥୀରେ ଟଙ୍କା ଉଡ଼ାଇ ମଉଜ କରୁଛନ୍ତି । ଥିଏଟର ଓ ବ୍ୟାଲେରେ ରାତି କଟାଉଛନ୍ତି । ତେଣୁ ତାଙ୍କ ପୁଅକୁ ବାଟକୁ ଆଣିବାପାଇଁ ଗୋଟେ ସୁନ୍ଦରୀ ଓ ସ୍ୱାଧୀନଚେତା ଝିଅ ଚାହାନ୍ତି । ସେଥିପାଇଁ ପ୍ରସ୍ତାବ ନେଇକରି ଆସିଛନ୍ତି ।

ବାପାଙ୍କ ନୀରବତା ଦେଖି ସେ ମୋ ସାମ୍ନାରେ ଠିଆ ହୋଇ ଅନୁନୟ କଣ୍ଠରେ କହିଲେ - "ମୁଁ କ'ଣ ଶୂନ୍ୟ ହସ୍ତରେ ଫେରିଯିବି ଝିଅ ? ତୁମ ପରି ବୋହୂଟିଏ ପାଇଲେ ମୋ ପୁଅକୁ ପୁଣି ଫେରିପାଇବି ।"

କିଛି କହିବାକୁ ପଡ଼ିଲା ନାହିଁ । ମୁଣ୍ଡ ହଲାଇ ସ୍ୱୀକୃତି ଦେଲି । ସେଇ ସପ୍ତାହରେ ବିବାହ ସମ୍ପନ୍ନ ହେଲା ଚର୍ଚ୍ଚରେ ଅତି ଆଡ଼ମ୍ବର ସହକାରେ ।

ବିବାହ ପରେ ଜେମ୍ସ ଧୀରେ ଧୀରେ ବଦଳିଗଲେ ।

ବଦଖର୍ଚ୍ଚ କରିବା, ମତଲବି ସାଙ୍ଗଙ୍କ ସହିତ ରାତି କଟାଇବା, ନାଚ ଦେଖି ପଇସା ଉଡ଼ାଇବା, ପାର୍ଟି ଦେବା - ସବୁ ବନ୍ଦ କରିଦେଲେ । ବରଂ ପିତାଙ୍କ ମୃତ୍ୟୁ ପୂର୍ବରୁ ଜମିଦାରୀ ଠିକ୍‌ଭାବେ ସମ୍ଭାଳିବାକୁ ଶିଖିଗଲେ ।

ଏ ରାଜପ୍ରାସାଦ ପରି ଘରର ପଛପଟେ ସୁନ୍ଦର ହ୍ରଦଟିଏ ଅଛି । ପାଖକୁ ଲାଗି ରହିଛି ପାଇନ୍ ଅରଣ୍ୟ । ଘର ଓ ହ୍ରଦ ମଝିରେ ବିଭିନ୍ନ ଫୁଲଭରା ବଗିଚାଟିଏ । ଜହ୍ନରାତିରେ ଜେମ୍ସ ହ୍ରଦ କୂଳକୁ ବୁଲାଇ ନିଅନ୍ତି । କେବେ କେବେ ବୋଟିଂ କରୁ । ଅନୁରୋଧ କରନ୍ତି କବିତା ଶୁଣାଇବାକୁ, ଗପର ସ୍କେଚ୍ କଥା କହିବାକୁ । ଉତ୍ସାହ ଦିଅନ୍ତି ଭଲ ଲେଖା ଲେଖିବାକୁ । ଅନ୍ୟ ଲ୍ୟାଣ୍ଡଲେଡିମାନଙ୍କ ପରି ଆଭିଜାତ୍ୟର ଦୌଡ଼ରେ ସାମିଲ୍ ନ ହୋଇ ବରଂ ପ୍ରତିଭା କ୍ଷେତ୍ରରେ ନିଜର ବ୍ୟକ୍ତିତ୍ୱ ଓ ସ୍ଥିତିକୁ ଜାହିର କରିବା ପାଇଁ ଅନୁରୋଧମିଶ୍ରିତ ଉପଦେଶ ଦିଅନ୍ତି । ବହି ପ୍ରକାଶ କରିବା ପାଇଁ ବେଶ୍ ତତ୍ପର ରୁହନ୍ତି ସେଇ କିଛିଦିନ । ନିଜେ ପ୍ରୁଫ୍ ଦେଖନ୍ତି, କଭରପାଇଁ ଆର୍ଟିଷ୍ଟଙ୍କୁ ଡାକନ୍ତି, ବାଇଣ୍ଡିଂ ପାଇଁ ଦଶଥର ଦୌଡ଼ନ୍ତି । ମନଲାଖି ସୁନ୍ଦର ବହିଟିଏ ନ ହେବା ପର୍ଯ୍ୟନ୍ତ ନିଦ ନଥାଏ । ପ୍ରଥମ କପିଟି ଛୁଇଁ ଦେଇ ଖୁବ୍ ଖୁସି ହୁଅନ୍ତି ।

ଯେଉଁ ବହି ପାଇଁ ଆଜି ସଂଧ୍ୟାରେ ଦୁର୍ଘଟଣା ଘଟିଲା ସେଇ ବହି ପ୍ରେସ୍‌ରୁ ଆସିବା ଦିନ ଜେମ୍ସ ଖୁସି ହୋଇ କହିଥିଲେ- "ଜାଣ ହନି ! ଏ ଚମତ୍କାର ବହି ପାଇଁ ତୁମେ ବଡ଼ ପୁରସ୍କାର ପାଇବ ।"

ପୁରସ୍କାର ତ ପାଇଥିଲି । ହେଲେ ଜେମ୍ସଙ୍କର ଏଇ ପଦକ କଥା ମୋ ଜୀବନର ଶ୍ରେଷ୍ଠ ପୁରସ୍କାର ଥିଲା ।

ହେଲେ ସେ ସ୍ତ୍ରୀଲୋକଟାର ଆବିର୍ଭାବରେ ମନେ ହେଉଛି ସାତବର୍ଷ ଧରି ଯେଉଁ

ଜେମ୍ସଙ୍କ ସାଥୀରେ ପ୍ରତିଟି ମୁହୂର୍ତ୍ତ ଅନ୍ତରଙ୍ଗ ଭାବେ କଟାଇ ଆସିଛି, ସେ ସେଇ ଜେମ୍ସ ନୁହଁନ୍ତି ବରଂ ଜଣେ ବିଚାରପତି କିମ୍ୱା ନିର୍ଦ୍ଦୟ ଘାତକ !

ବିନା ପ୍ରମାଣରେ ସେ ଇତର ସ୍ତ୍ରୀଲୋକଟା ସାମ୍ନାରେ ଛାଡ଼ପତ୍ର କଥା କହିପାରିଲେ ଜେମ୍ସ । ପୁଣି କହିପାରିଲେ ଲେଖାଲେଖି ଚିରକାଳ ପାଇଁ ବନ୍ଦ କରିବାକୁ !

ଏକଥା ଶୁଣିବା ପୂର୍ବରୁ କାହିଁକି ମୋର ମୃତ୍ୟୁ ହେଲାନାହିଁ ଯେ ? ଉଦ୍‌ଗତ ଅଶ୍ରୁକୁ ଚାପି ନେଇ ଆଲୁଅକୁ ପଛ କରି ଶୋଇବାକୁ ଚେଷ୍ଟା କଲି ।

ହାଲ୍‌କା ନିଦ ଲାଗିଆସିବା ବେଳକୁ ଅନୁଭବ କଲି ମୋ ପାଦ ଉପରେ କାହାର ହାତର ସ୍ପର୍ଶ । ଭାବିଲି ଇରିନା ନୁହେଁ ତ ? ହେଲେ ସାମାନ୍ୟ ଦୃଢ଼ ଚାପରେ ଚାହିଁ ଦେଖିଲି ଜେମ୍ସ ପାଦ ପାଖରେ ବସିଛନ୍ତି । ତାଙ୍କ ହାତ ମୋ ପାଦ ଉପରେ ।

କିଛି ନ କହି ଶୋଇବାକୁ ଚେଷ୍ଟା କଲି । ପାଦ ମଧ ଘୁଞ୍ଚାଇ ନେଲି ନାହିଁ । ଆଖି ବନ୍ଦ କରିବା ଦେଖି ଧୀର କଣ୍ଠରେ ପଚାରିଲେ - ''ମୋ ଉପରେ ଖୁବ୍ ରାଗିଛ ନା ହନି !''

ଏ ପ୍ରଶ୍ନରେ ମୋତେ ରାଗ ଲାଗିଲା । ନିଜକୁ ନିଜେ କହିଲି - ''ତୁମେ ସେ ପୁରୁଷ ତ ଯିଏ କହୁଥିଲା ଛାଡ଼ପତ୍ର ଦେବ ବୋଲି ।''

''ହନି ପ୍ଲିଜ୍ ଉଠ ! ମୋ ସହ କଥା ହୁଅ । ମୋର ରାଗିବା କିମ୍ୱା ଏମିତି କହିବା ଆଦୌ ଠିକ୍ ନୁହେଁ । ପାଟିରୁ ତ ବାହାରିଯାଇଛି । ପ୍ରକୃତରେ ସେ ଭ୍ରଦମହିଳାଙ୍କ ଅବସ୍ଥା ଦେଖି ମୋ ନିଜ ଉପରେ ନିୟନ୍ତ୍ରଣ ରହିଲା ନାହିଁ ।'' ନେହୁରା ହେବା ପରି ଜେମ୍ସ କହିଲେ ।

ମନେ ମନେ ରାଗିଲି । ସେ ଇତର ସ୍ତ୍ରୀଲୋକଟାକୁ ପୁଣି ଭଦ୍ରମହିଳା କହୁଛ ? କୋଉ ଭଦ୍ରଘରର ସ୍ତ୍ରୀ ଆସି ବୃଥାରେ ହଟଚମଟ ସୃଷ୍ଟି କରିବ ? ଅଭଦ୍ର ସ୍ତ୍ରୀଲୋକଟି ?

ଜେମ୍ସ ମୋ ପାଦକୁ ଆଉଁସି ଦେଇ ସଲସଲ କରିବାକୁ ଆରମ୍ଭ କଲେ । ସେ ଜାଣନ୍ତି ଏଇଥିରେ ମୁଁ ହସିପକାଏ ଓ ମୋ ରାଗ କୁଆଡ଼େ ଉଭେଇଯାଏ । ହେଲେ ନା ଆଜି ମୁଁ ଜମା ହସିବିନି । ନ ହସିବା ପାଇଁ କିଛି ମାତ୍ରାରେ ଶ୍ୱାସରୁଦ୍ଧ କରି ଦେହକୁ ଟାଣ କରିନେଲି ।

ଚେଷ୍ଟା ବ୍ୟର୍ଥ ହେବା ଜାଣି ଜେମ୍ସ ପାଦ ମୋଡ଼ିବାକୁ ଆରମ୍ଭ କଲେ । ସ୍ତ୍ରୀର ପାଦସେବା କଲେ କୁଆଡ଼େ ଅଭିମାନ ଦୂର ହୁଏ ବୋଲି ଶୁଣିଛନ୍ତି । ମୁଁ ବି ଅଟଳ ରହିଲି ଜମା ହଲିବିନି ବୋଲି ।

ସେଇ ମୁହୂର୍ତ୍ତରେ ଭାବିଲି ସେ ସ୍ତ୍ରୀଲୋକଟାର ଏଇକ୍ଷଣି ଏଠିକୁ ଆସିବା ଉଚିତ୍ । ଅନ୍ତତଃ ସାମ୍ନାରେ ଦେଖୁ ଯେ ଯେଉଁ ସ୍ୱାମୀ ଏତେ କଠୋର ଭାବେ ନିଷ୍ପତ୍ତି ଶୁଣାଇଥିଲା, ସେ କେମିତି ପାଦ ଧରି ମିନତି କରୁଛି, ପ୍ରାୟଶ୍ଚିତ କରୁଛି !

ପାଦଘଷା ଓ ନିଜ ଭାବନାରେ ମୋତେ କେତେବେଳେ ନିଦ ହୋଇଯାଇଥିଲା ଜାଣେନା ।

ନିଦ ଭାଙ୍ଗିଗଲା ଜଳଚର ପକ୍ଷୀର ମିଳିତ କାକଳିରେ । ସକାଳର ସୂଚନା ଦିଅନ୍ତି

ଗୀତ ଗାଇ ଗାଇ । ପାଣିରୁ ଉଠି କିଛି ଉପରକୁ ଯାଇ ଉଡ଼ିବାକୁ ଚେଷ୍ଟା କରି କଳରବ କରନ୍ତି । ଆଉ ଠିକ୍ ସେତିକିବେଳେ ମୋ ନିଦ ଭାଙ୍ଗେ ।

ଆଖି ଖୋଲି କବାଟ ଆଡ଼କୁ ଚାହିଁଲି । କବାଟ ଭିତରୁ ବନ୍ଦ ହୋଇଛି । ଭାବିଲି ଇରିନା ବୋଧହୁଏ ଆରପଟ ଛୋଟ ଡିଭାନ୍ ଉପରେ ମୋ ପାଇଁ ଶୋଇଯାଇଛି । କେବେ କେବେ ଦରକାର ପଡ଼ିଲେ ସେ ଏଇଠି ଶୋଇଯାଏ । ଏକଥା ଚିନ୍ତାକରି ଚାହିଁବା ବେଳକୁ ଦେଖିଲି ବିଛଣାର ଆରପଟେ ନିଜେ ଜେମ୍ସ ଶୋଇଯାଇଛନ୍ତି । ଚୁପ୍‌ଚାପ୍ ଉଠିଯିବାକୁ ଆରମ୍ଭ କରିଛି ତ ନିଦୁଆ କଣ୍ଠରେ ଜେମ୍ସ କହିଲେ- ''ଆଉ ଟିକେ ବିଶ୍ରାମ ନିଅ । ବବ୍ ପାଇଁ ଅଧାଲେଖାଟା ପୂରା କରିବ ପୁଣି ।''

ଖୋଲା ଯାଉଥିବା ସାମ୍ପେନ୍ ବୋତଲ ପରି ବିଛଣା ତଳକୁ ଉଛୁଳି ପଡ଼ିଲି । ପୁଣି ମନେପଡ଼ିଲା ଗତ ସଂଧ୍ୟାର ଅଭାବନୀୟ ଦୁର୍ଘଟଣା କଥା ।

ରାଗ ସମ୍ଭାଳି ନ ପାରି କହିଲି- ''କାଲିଠାରୁ ଲେଖା ଚୁଲିକୁ ଗଲାଣି ।''

ମୋ କଥା ଶୁଣିବା ମାତ୍ରକେ ଜେମ୍ସ ବିଛଣାରୁ ଉଠି ବସିଲେ- ''ପ୍ଲିଜ୍ ସକାଳୁ ସକାଳୁ ବିରକ୍ତ ହୁଅନାହିଁ । କାଲିର ଘଟଣା ପାଇଁ ତ କ୍ଷମା ମାଗିସାରିଛି । କହିବ ତ ଏବେ ଆହୁରି ଶହେଥର କ୍ଷମା ମାଗିବି ।''

ଚଟାପଟ୍ ତଳକୁ ଓହ୍ଲାଇ ଆସି ମୋ ପାଦ ପାଖରେ ଆଣ୍ଠେଇପଡ଼ି ଡାହାଣ ହାତକୁ ଧରି ଓଠରେ ଛୁଆଇଁ ନେଲେ ।

ସକାଳୁ ଅଯଥା ଯୁକ୍ତି ତର୍କ ନ କରି ନୀରବ ରହିବାକୁ ଚେଷ୍ଟା କଲି । ଜେମ୍ସ ତଳୁ ଉଠି ଠିଆ ହେଲେ । ମୁଁ କବାଟ ଖୋଲିବାକୁ ପାଦେ ଆଗେଇଛି ତ ମୃଦୁ କରାଘାତ ସହ ଇରିନାର ତ୍ରସ୍ତ କଣ୍ଠସ୍ୱର ଶୁଣାଗଲା ।

ଜେମ୍ସ ଧାଇଁଯାଇ କବାଟ ଖୋଲିଦେଲେ ।

ଇରିନାର ନାଇଟ୍ ଗାଉନ୍ ହାତ ଓ କାନ୍ଧପାଖରୁ ଚିରି ଯାଇଥିଲା । ବେକ ଓ ଗାଲରେ ନଖରେ ରାମ୍ପୁଡ଼ା ଚିହ୍ନ ସହ ଗୋଟେ ଦି'ଟା ଜାଗାରୁ ରକ୍ତ ବାହାରୁଥିଲା । ସେ ଧଇଁସଇଁ ହୋଇଉଠୁଥିଲା । ୱାର୍ଡ୍‌ରୋବ୍‌ରୁ କାର୍ଡିଗନ୍‌ଟେ ନେଇ ଇରିନା ଦେହରେ ବେଢ଼େଇ ଦେଲି ।

ତାକୁ ନେଇ ନିକଟରେ ଥିବା ଫାୟାରପ୍ଲେସ୍‌ରେ ବସିଲୁ । ଜେମ୍ସ ଦୁଇଖଣ୍ଡ ହାଲ୍‌କା କାଠ ପକାଇଦେଲେ । ସେହି ସମୟରେ ହର୍ଷି ଭୁକି ଭୁକି ଧାଇଁ ଆସିଲା । ତା' କାନରୁ ରକ୍ତ ଝରୁଛି ।

ଆମେ ଦୁହେଁ ଏ ଅଭାବିତ କାଣ୍ଡକାରଖାନାରେ ସ୍ତବ୍ଧ ହେବା ସଙ୍ଗେ ସଙ୍ଗେ ନିର୍ବାକ୍ ହୋଇପଡ଼ିଲୁ । ପାଚେରୀ ଘେରା ପ୍ରାସାଦସମ ଘର ସାମ୍ନାରେ ଦରୱାନ । ଘର ଭିତରେ ପରିଚାରକ, ପରିଚାରିକା ଓ ମାଳି ଇତ୍ୟାଦି ଡଜନେ ଅଛନ୍ତି । ସେଥିସହିତ ବିଶ୍ୱସ୍ତ ହର୍ଷି ମଧ ରାତିରେ ଘର ଜଗେ । ତେବେ କିଏ ଏମିତି ଇରିନା ଓ ହର୍ଷିର ଅବସ୍ଥା କରିଛି !

ଜେମ୍ସ କ୍ରୁଦ୍ଧ ସିଂହ ପରି ଲମ୍ଫ ଦେଇ ଝିଙ୍କି ଆଣିଲେ କାନ୍ଥରେ ଟଙ୍ଗା ଯାଇଥିବା ରାଇଫଲକୁ । ଜେମ୍ସଙ୍କ କ୍ରୋଧ ଦେଖି ଇରିନା ତ୍ରସ୍ତ ହୋଇ ଉଠିଲା ।

କହିଲା - ''କ୍ଷମା କରିବେ ଲ୍ୟାଣ୍ଡଲର୍ଡ଼ ! ଆପଣ ଶାନ୍ତ ହୋଇ ମୋ କଥା ଶୁଣନ୍ତୁ ।''

''ତୁମର ଓ ହର୍ଷିର ରକ୍ତାକ୍ତ ଅବସ୍ଥା ଦେଖି ମୁଁ ଶାନ୍ତ ହେବି !'' ଚିତ୍କାର କଲେ ଜେମ୍ସ ।

''ଦୟାକରି ମୋ କଥା ଶୁଣନ୍ତୁ ।'' ଅନୁରୋଧ କଲା ଇରିନା ।

ମୁଁ ଜେମ୍ସଙ୍କ ହାତରୁ ବନ୍ଧୁକ ନେଇ ରଖିଦେଲି ଓ ହାତ ଧରି ପାଖରେ ବସାଇ ଦେଲି ।

''କାଲି ରାତିର ଘଟଣା ମୋତେ ବ୍ୟସ୍ତ ଓ ବ୍ୟଥିତ କରିଥିବାରୁ ମୁଁ ଶୀଘ୍ର ଶୋଇବାକୁ ଚାଲିଗଲି । ଆପଣ ଦୁହେଁ ନ ଖାଇବାରୁ କେହି ମଧ୍ୟ ଖାଇନାହାନ୍ତି । ହର୍ଷିର ରାତି ବ୍ରେଡ୍ ଓ ପୋର୍କ ପ୍ରାଏ ସେମିତି ଅଛି । ସେ ମଧ୍ୟ ଖାଇନାହିଁ । କେବଳ ସେ ଭଦ୍ରମହିଳାଙ୍କୁ ତାଙ୍କ ରୁମ୍‌ରେ ଖାଇବାକୁ ଦିଆଯାଇଥିଲା । ଠକ୍ ଠକ୍ ଶବ୍ଦରେ ନିଦ ଭାଙ୍ଗିଗଲା । ଭାବିଲି ମାଡାମ୍ ଡାକୁଛନ୍ତି । ବାହାରକୁ ବାହାରି ଦେଖେ କେହି ନାହାନ୍ତି । ଭ୍ରମ ଭାବି ପୁଣି ଶୋଇଗଲି ।

ତା'ର କିଛି ସମୟ ପରେ ପୁଣି ସେଇ ଶବ୍ଦରେ ନିଦ ଭାଙ୍ଗିଗଲା । ଧୀର ପାଦରେ ବାହାରକୁ ବାହାରି ଦେଖିଲି ଯେ, ସେ ଭଦ୍ରମହିଳା ମାଡାମ୍‌ଙ୍କ ଷ୍ଟଡ଼ି ରୁମ୍ ଆଡ଼କୁ ଯାଉଛନ୍ତି । କିଛି ଦୂରତା ରଖି ପିଛା କଲି । ସେ ଭିତରକୁ ପଶିଗଲାପରେ ମୁଁ କବାଟ ଫାଙ୍କରେ ଦେଖିଲିଯେ ସେ ଭିତରେ କ'ଣ ଖୋଜୁଛି । ସେଲ୍‌ଫରୁ ବହି ବାହାର କରି ତଳେ ଫୋପାଡ଼ିଦେବାକୁ ଲାଗିଲା । ଏଇ ସମୟରେ ମୁଁ ଭିତରକୁ ଯାଇଛି ତ ସଂଧ୍ୟାର ଅଧାଲେଖା କାଗଜ ଉଠାଇ ଆଣି ଚିରିଦେଲା ।

ମୁଁ ଅଟକାଇବାକୁ ଚେଷ୍ଟା କଲି । ଅଥଚ ପାରିଲିନି । ତା' ବଡ଼ବଡ଼ ମୁନିଆଁ ନଖରେ ମୋତେ ରାମ୍ପୁଡ଼ି ଦେଇ ଜୋର୍‌ରେ ମାରିଲା । ମୁଁ ମଧ୍ୟ ତାକୁ ମାରିଛି । ହେଲେ ସେ ସ୍ତ୍ରୀଲୋକଟାର ଦେହରେ ଅସୁର ପରି ବଳ ଥିଲା । ହର୍ଷି ଦୌଡ଼ି ଆସିଲା । ମୋତେ ରକ୍ଷା କଲାବେଳକୁ ତା' ବେକକୁ ଧରି ପାଟିରେ କାନକୁ ମାଡ଼ିବସି ଦାନ୍ତରେ ଛିଣ୍ଡାଇ ଦେଲା ।

ସେତେବେଳକୁ ରାତି ପାହିବାକୁ ଅଳ୍ପ ସମୟ ଅଛି । ସେ କରିଡ଼ର୍‌ରେ ଧାଇଁଲା । ଆମେ ତା' ପଛରେ ଧାଇଁବା ବେଳକୁ ସେ ବାହାର କବାଟ ଖୋଲିଦେଇ ଦରଓ୍ୱାନ୍‌କୁ ଧକ୍କାଟିଏ ପକାଇଲା ଓ ଗେଟ୍ ଉପରେ ଚଢ଼ିଯାଇ ରାସ୍ତାରେ ଅଦୃଶ୍ୟ ହୋଇଗଲା ।''

କହିବା ପରେ ଇରିନା ଦୀର୍ଘଶ୍ୱାସଟିଏ ନେଲା । କବାଟ ପାଖରେ ଅନ୍ୟମାନେ ଜମା ହୋଇସାରିଥିଲେ । ଜଣେ ଗ୍ଲାସ୍‌ରେ କିଛି ବ୍ରାଣ୍ଡି ଆଣି ଇରିନାକୁ ପିଆଇ ଦେଲା । ଅନ୍ୟଜଣେ ଫୋନ୍ କରି ଡକ୍ଟରଙ୍କୁ ଡକାଇଲା ଓ ହର୍ଷିକୁ ମେଡ଼ିକାଲ ନିଆଗଲା ।

କେବଳ କଫି କପ୍‌ଟିଏ ପିଇଦେଇ ଜେମ୍ସ ଦେହରେ ଓଭରକୋଟ ଗଳେଇ ଦେଇ ଡ୍ରାଇଭର ଓ ଜଣେ ପରିଚାଳକ ସହ ବାହାରିଗଲେ ।

ଏ ଘଟଣା ପରେ ନିସ୍ତବ୍ଧତା ଖେଳିଗଲା ଘରସାରା । ଦୁଇଜଣ ଦରଓ୍ୱାନ ଏକାସାଙ୍ଗରେ ଡ୍ୟୁଟିରେ ରହିଲେ ରାଇଫଲ୍ ଧରି ।

ଦ୍ୱିପ୍ରହର ବେଳେ କ୍ଳାନ୍ତ ହୋଇ ଜେମ୍ସ ଫେରି ଶୁଣାଇଦେଲେ ଯେ ସେ ସ୍ତ୍ରୀଲୋକ ଯେଉଁଠି ରହୁଛି ବୋଲି କହୁଥିଲା ସେଠି କେହି ସେମିତି ନାହାନ୍ତି । ସେ ଘର ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ପଡ଼ିଛି ।

ବବ୍ ପାଇଁ ଯେମିତି ହେଲେ ଲେଖିବାକୁ ପଡ଼ିବ । ମୋ ପୌରହିତ୍ୟରେ ହିଁ ଶୋକସଭା ସମ୍ପାଦିତ ହେବ ତାଙ୍କ ଘରେ ।

ଜେମ୍ସ ମୋତେ ଷ୍ଟଡ଼ିରୁମ୍ ପାଖରେ ଛାଡ଼ିଦେଇ କହିଲେ, ''ଯାଅ ଅଧାଲେଖା ତ ନଷ୍ଟ ହୋଇଗଲା । କଷ୍ଟକରି ଆଉଥରେ ଲେଖିନିଅ । ସଂଧ୍ୟାରେ ତୁମ ସହିତ ମୁଁ ଯିବି । ଆମ ପାଇଁ ବ୍ୟସ୍ତ ନ ହୋଇ ଶୀଘ୍ର ଲେଖ ।''

ଯାହା ବି ହେଉ ଅପରାହ୍ଣ ସମୟରେ ଲେଖା ସରିଗଲା ଓ ଆମେ ଦୁହେଁ ସଂଧ୍ୟାରେ ସଭାକୁ ଯାଇ ରାତିରେ ଫେରିଆସିଲୁ ।

ସପ୍ତାହେ କଟିଯାଇଥିଲା । ଇରିନା ଓ ହର୍ଷି ଭଲ ହୋଇଯାଇଥିଲେ । ଏ ଘଟଣା ଶୁଣି ପ୍ରତ୍ୟେକ ଦିନ କିଛି ବନ୍ଧୁ ଦେଖା କରିବାକୁ ଆସୁଥିଲେ ।

ସହର ସାରା ଏ ଘଟଣା ଅଳ୍ପବହୁତ ସମସ୍ତେ ଶୁଣିସାରିଥିଲେ ।

ସେଦିନ ସପ୍ତାହ ଶେଷର ପେପର ଆସିଥିଲା । ବଗିଚାର ହ୍ୟାଙ୍ଗିଙ୍ଗ୍ ଚେୟାର୍‌ରେ ବସି ପେପର ପଢ଼ିବାକୁ ଭଲ ଲାଗେ । ତେଣୁ ହାତରେ ପେପର ଧରି ନରମ ଖରାକୁ ବାହରିଗଲି ଓ ଝୁଲି ଝୁଲି ପଢ଼ିଲି । ପୃଷ୍ଠା ପରେ ପୃଷ୍ଠା ଓଲଟାଉଥିବା ବେଳେ ଚତୁର୍ଥ ପୃଷ୍ଠାର ଉପରେ ଗୋଟେ ଫଟୋ ଦେଖି ଦୃଷ୍ଟି ଅଟକି ଗଲା ।

ଛବିରେ ଥିବା ଚେହେରାକୁ କେଉଁଠି ଭେଟିଛି । ସଙ୍ଗେ ସଙ୍ଗେ ମନେ ପକାଇ ପାରିଲିନି କେଉଁଠାରେ ଓ କେବେ ଦେଖିଛି ବୋଲି ।

ମନେ ପଡ଼ିବାରୁ ଚିତ୍କାର କଲା ପରି ଡାକିଲି ଇରିନାକୁ । ଜେମ୍ସ ଫିସିଙ୍ଗ୍ ପାଇଁ ବାହାରୁଥିଲେ । ମୋ ପାଟି ଶୁଣି ପାଖକୁ ଆସିଲେ । ଭିତରୁ ଇରିନା ଓ ଅନ୍ୟମାନେ ଦୌଡ଼ି ଆସିଲେ ।

ଜେମ୍ସ ଅସ୍ଥିର ଭାବେ ପ୍ରଶ୍ନ କଲେ - ''କ'ଣ ହେଲା ହନି ?''

'ଜେମ୍ସ ! ଦେଖ ସେ ସ୍ତ୍ରୀଲୋକର ଏ ଫଟୋ ବାହାରିଛି ।' ମୋ କଥାରେ ପାଖକୁ ଆସି ନଇଁପଡ଼ିଲେ ଓ ଇରିନା ମଧ ପଛପଟେ ଠିଆହୋଇ ଚାହିଁଲା ।

ଦୁହିଁଙ୍କ ପାଟିରୁ ଏକାସାଙ୍ଗରେ ବାହାରିପଡ଼ିଲା - 'ହଁ ତ ।'

''କ'ଣ ଲେଖାଯାଇଛି ପଢ଼ିଲ । ପାଇଲେ ସୁଟ୍ କରିଦେବି ।'' କ୍ରୋଧରେ ଥରି ଉଠିଲେ ଜେମ୍ସ ।

''ରୁହ କହୁଛି ।'' କହି ନୀରବରେ ପଢ଼ିଦେଇ ସାରାଂଶ ଶୁଣାଇ ଦେଲି ଯେ, ସେ ସ୍ତ୍ରୀଲୋକଟି ଦୀର୍ଘ ପଚିଶ ବର୍ଷ ଧରି ପାଗଳ ହୋଇ ଯାଇଛି । ବିବାହ ପରେ ଏ ସ୍ତ୍ରୀଲୋକଠାରୁ ସାମାନ୍ୟ ଭଲପାଇବା ନପାଇବାରୁ ଗପ କବିତା ପଢ଼ିବାକୁ ଭଲ ପାଉଥିଲା ସ୍ୱାମୀଟି ଦୁଇବର୍ଷ ପରେ ଛାଡ଼ପତ୍ର ଦେଇଦେଲା । ଅନ୍ୟ ସହରକୁ ଚାଲିଯାଇ ଦ୍ୱିତୀୟ ବିବାହ

କଲାପରେ ଏ ପାଗଳ ହୋଇଯାଇଛି । ସେହିଦିନଠାରୁ ମେଣ୍ଟାଲ୍ ହସ୍ପିଟାଲରେ ରହୁଥିଲା । କବି ଲେଖକଙ୍କ ନାଁ ଶୁଣିବା ମାତ୍ରକେ ଉତ୍ତ୍ୟକ୍ତ ହୋଇ ବକିବାକୁ ଆରମ୍ଭ କରେ । ଏଇ କିଛି ଦିନ ତଳେ ସାମାନ୍ୟ ସୁଯୋଗ ପାଇ ପାଚେରୀ ଡେଇଁ ବାହାରକୁ ଆସି ବିଭିନ୍ନ କାଣ୍ଡକାରଖାନା କରିଛି ।

ପ୍ରତିଷ୍ଠିତ ଲେଖକମାନଙ୍କୁ ହଇରାଣ କରିଛି । ପ୍ରତ୍ୟେକ ଗଳିରେ ପଚାରି ବୁଝେ କିଏ ଲେଖକ ରହୁଛନ୍ତି ବୋଲି । ତା' ପରେ ଏକା ପରି ହଇରାଣ କରେ । ଗତକାଲି ସକାଳେ ଫୋର୍ଥ ଆଭେନ୍ୟୁରେ ଥିବା ଲେଖକ ମିଃ. ଜନ୍‌ଙ୍କ ଘରେ ପଶି ତାଙ୍କୁ ଫଳକଟା ଛୁରୀରେ ଆକ୍ରମଣ କଲାବେଳେ ଧସ୍ତାଧସ୍ତିରେ ତା' ତଣ୍ଟିରେ ଗଳିଗଲା । ହସ୍ପିଟାଲରେ ଆଡ଼ମିଟ୍ କରାଗଲା । ହେଲେ ପ୍ରଚୁର ରକ୍ତସ୍ରାବ ହେତୁ ଅଳ୍ପ ସମୟ ପରେ ମୃତ୍ୟୁବରଣ କଲା ।

''ଓଃ ଏତେ ହତଭାଗିନୀ ସ୍ତ୍ରୀ ଲୋକ'', କହି ଲଥ୍ କରି ସେଇ ଲନ୍‌ରେ ବସିପଡ଼ିଲା ଇରିନା । ଅନ୍ୟମାନେ ଆବାକାବା ହୋଇ ପରସ୍ପର ମୁହଁ ଦେଖୁଥିଲେ ।

ଜେମ୍ସ ସ୍ଥାନକାଳ ପାତ୍ର ଭୁଲିଯାଇ ମୋ ପାଦତଳେ ଆଣ୍ଠେଇ ପଡ଼ି କହିଲେ - ''ହନି ଡିଅର ! 'ମୋତେ କ୍ଷମା କର, କ୍ଷମା କର । ପଚିଶ ବର୍ଷ ତଳେ ତୁମେ ତ ଶିଶୁ ଥିବ । ମୁଁ ସନ୍ଦେହ କରି ଅଯଥା କଷ୍ଟ ଦେଇଛି ଓ ବିପଦକୁ ଟାଣି ଆଣିଛି । ଶେଷଥର ପାଇଁ କ୍ଷମାକର ।''

ମୁଁ ଅତି ସ୍ନେହରେ ସାନ୍ତ୍ୱନା ଦେଇ ଜେମ୍ସଙ୍କ ଗହଳ କେଶକୁ ଆଉଁସି ଦେଲି । ଉଠିପଡ଼ି କହିଲି- ''ଚାଲ ପ୍ରେୟାର ରୁମ୍‌କୁ ଯାଇ ମୃତ ଆତ୍ମାର ସଦ୍‌ଗତି ପାଇଁ କିଛିକ୍ଷଣ ପ୍ରାର୍ଥନା କରିବା ।''

ଆମେ ସମସ୍ତେ ବଗିଚାରୁ ବାହାରି ଆସିଲୁ ପ୍ରେୟାର ରୁମ୍ ଅଭିମୁଖେ । ଲନ୍ ଉପରେ ପେପର ପଡ଼ି ଧୀର ପବନରେ ଉଡ଼ିଯାଉଥିଲା ହ୍ରଦ ଆଡ଼କୁ ଈଶ୍ୱରଙ୍କ ପାଦରେ ଆତ୍ମା ଯେମିତି ମିଶିଯିବାକୁ ଆଗେଇଯାଏ, ଠିକ୍ ସେମିତି ଆଗେଇ ଯାଉଥିଲା । ଉଡ଼ି ଯାଉଥିଲା ଦୂରକୁ ଦୂରକୁ ।

# ମାୟାମୃଗ

ସେତେବେଳକୁ ଏ ମାଳ ଅଞ୍ଚଳରେ ବସନ୍ତ ଋତୁ ଆସିବ ଆସିବ ହେଉଥିଲା । ପାହାଡ଼ର ପାଦ ଦେଶରେ ଅରଣ୍ୟର ଅଗ୍ନିଶିଖା ପରି ପଳାଶଗଛମାନଙ୍କ ମଥାନରେ ଫୁଲର ମହୋତ୍ସବ ।

ସଂଧ୍ୟା ଆସିବାକୁ ଆହୁରି ବିଳମ୍ବ ଥିଲା । ଘରେ ତାଲାପକେଇ ବାହାରକୁ ବାହାରି ଆସିଲି । ହାଲ୍‌କା ପବନରେ ବାରିହେଉଥିଲା ଈଷତ୍ ଉଷ୍ଣତାର ସ୍ପର୍ଶ ।

ଅବିନାଶଙ୍କର ଫେରିବାକୁ ଆହୁରି ତିନିଦିନ ବିଳମ୍ବ ହେବ । ଥରେ ଟୁର୍‌ରେ ବାହାରିଗଲେ ବୋଧହୁଏ ବିଳମ୍ବର ଦୁର୍ଯୋଗଟି ଲେଖା ହୋଇଥାଏ । ଅବିନାଶ ଟୁର୍‌ରେ କିଛିଦିନ ପାଇଁ ବାହାରକୁ ଚାଲିଗଲେ, ଏ ମାଳଅଞ୍ଚଳର ରୁକ୍ଷପଣ ନିଃସଙ୍ଗତା କାୟା ବିସ୍ତାର କରେ ମୋ' ମନ ଭିତରେ ।

ରାସ୍ତାର ଦୁଇପଟେ ପଳାଶ ଗଛ । ଫୁଲ ଝରିପଡ଼ିଛି ରାସ୍ତାରେ, ଧୂସରିଆ ଭୂଇଁର ସବୁଜ ଘାସଉପରେ । ଅଧକିଲୋମିଟର ଦୂରରେ ଛୋଟ ବଜାର । ସେତିକି ରାସ୍ତା ଅତିକ୍ରମ କରିବାକୁ ପଡ଼ିବ ।

ପରିବା କିଣିସାରି ଫେରୁଛି, ଅନୁଭବ କଲି, କିଏ ଯେମିତି ପଛରୁ ମୋ' ନାଁ ଧରି ଡାକୁଛି । ବିସ୍ମିତ ହୋଇ ବୁଲିପଡ଼ି ପଛକୁ ଚାହିଁଲି ।

କିଛି ଦୂରରେ ଜଣେ ଭଦ୍ରମହିଳା ଠିଆହୋଇ ମୋ' ଆଡ଼କୁ ହାତବଢ଼ାଇ ଡାକୁଛନ୍ତି । ମୁଁ ତାଙ୍କ ପାଖକୁ ଯିବି କି ଯିବି ନାହିଁ, ଏଇ ଦ୍ୱନ୍ଦରେ ପଡ଼ିଯାଇଥିଲାବେଳେ ସେ ମୋ' ଆଡ଼କୁ ଆଗେଇ ଆସିଲେ ।

'ମୋତେ ଚିହ୍ନିପାରୁନୁ ଜୋସ୍ନୁ ?' ଓଠରେ ହସ, ଓ ଦେହ ଲତାଟି ପରି ଦୋହଲି ଯାଉଥିଲା ।

ମୁଁ ଭଲକରି ନିରୀକ୍ଷଣ କରି ମନେପକାଇବାକୁ ଚେଷ୍ଟା କଲି । କିଏ ହୋଇଥିବ କେଜାଣି ? ତେବେ, କେଉଁଠି ଦେଖିଲା ଦେଖିଲା ଭଳି ମନେହେଲା । କେଉଁଠି ଯେ ?

'ହେ ଭଗବାନ ! ମୁଁ ଉର୍ବଶୀ...'

ମୁଁ ବିସ୍ଫାରିତ ଚକ୍ଷୁରେ କ୍ଷଣକ ପାଇଁ ତାକୁ ଚାହିଁଲି ଓ ଅବିଶ୍ୱାସର ଚକ୍ରବ୍ୟୁହରେ ଛନ୍ଦି ହୋଇପଡ଼ିଲି ।

'ଉର୍ବଶୀ....ସତରେ ...' ଭିନ୍ନ ଗ୍ରହର ଜୀବଟି ପ୍ରତି ସମ୍ବୋଧନ ସ୍ୱର ମୋ' କଣ୍ଠରୁ ନିର୍ଗତ ହେଲାପରି ଅନୁଭବ କଲି ।

'ସତରେ କ'ଣ ଚିହ୍ନିପାରୁନୁ ଜୋସ୍ନୁ ?' ଉଚ୍ଛଳ ହସଟେ ହସି ପ୍ରଶ୍ନ କଲା ।

ମୁଁ ସାମାନ୍ୟ ସହଜ ହେଉହେଉ କହିଲି, ''ନା, ସେକଥା ନୁହେଁ । ଏତେ ବର୍ଷ ପରେ ସାକ୍ଷାତ । ସେଥିରେ ତୋ'ର ଏ ଚେହେରା... ।''

ମୋ ଅଧାକଥାକୁ ଚାପି ଦେଇ କହିଲା- ''ମୋଟା ହୋଇ ଯାଇଛି ନୁହେଁ ? କ'ଣ କରିବି କହ ? ରାଜରାଣୀ ପରି ଅୟସ କରି ରହିଲେ ଯାହା ଅବସ୍ଥା ହୁଏ । ହେଲେ, ତୁ ସେ କୋଡ଼ିଏ ବର୍ଷ ତଳର କଲେଜ ପଢୁଆ ଝିଅ ପରି ରହିଯାଇଛୁ ।''

ସେତେବେଳକୁ ଆମେ ଗୋଟେ ଛୋଟ ରେଷ୍ଟୁରାଣ୍ଟ ଭିତରେ ବସି ସାରିଥିଲୁ । ସେ ନାକଟେକି ସାରିଥିଲା ମାଟିଆ ପଡ଼ିଆସିଥିବା ଟେବୁଲ ବେଞ୍ଚ ଦେଖିସାରି ।

ମୁଁ ପଚାରିଲି, 'କ'ଣ ନେବୁ ?'

ଅନାସକ୍ତ ଭାବରେ ଉତ୍ତର ଦେଲା, 'କଫି ।'

ଗରମ ଯୋଗୁଁ କାନ୍ଧରେ ଗଞ୍ଜି ପକାଇ ଟହଲ ମାରୁଥିବା ପିଲାଟି ସୂଚାଇ ଦେଲା ଯେ ସେଠି କେବଳ ଚା' ମିଳେ ।

ଏ ପ୍ରକାର ସୂଚନାରେ ଉର୍ବଶୀର ଆଖି କପାଳ ଉପରକୁ ଟେକି ହୋଇଗଲା । ସେ ଫିସ୍‌ଫିସ୍ କଣ୍ଠରେ କହିଲା, ''ଏଠି ମଣିଷ ରୁହନ୍ତି ତ ? ଏଠି ଚଳିବା ଅସମ୍ଭବ ମନେ ହେଉଛି ।''

ଚା' ପିଇବା ଭିତରେ ସେ ତା'କଥା ଗପି ଚାଲିଥିଲା । ବାହାହୋଇଛି ଜଣେ ବିଜିନେସ୍‌ମ୍ୟାନକୁ । ସେ କୁଆଡ଼େ ଏକ ଇଷ୍ଟେଟର ଉତ୍ତରାଧିକାରୀ । ଶାଢ଼ୀ, ଗହଣା, ବ୍ୟାଙ୍କବାଲାନ୍ସ, ଷ୍ଟାଟସ୍ ଓ ପାର୍ଟି ପିକ୍‌ନିକ୍ ଭିତରେ ଅଣନିଃଶ୍ୱାସୀ ହୋଇ ସେ କିଛିଦିନ ପାଇଁ ଏ ମାଳ ଅଞ୍ଚଳରେ ରହିବାକୁ ଆସିଛି । ତା' ହଜ୍‌ବ୍ୟାଣ୍ଡ ଏଠୁ ଶହେ କିଲୋମିଟର ଦୂର ମୁଖ୍ୟ ସହରରେ ନିଜର ବିଜ୍‌ନେସ୍ ଶୋ'ରୁମ୍ ଖୋଲିବାର ପ୍ରସ୍ତୁତିରେ ଅଛନ୍ତି ।

ଇତି ମଧ୍ୟରେ ସଂଧ୍ୟା ହୋଇସାରିଥିଲା । ମୁଁ ଚା' ପଇସାଦେଇ ବାହାରକୁ ତା' ସହିତ ଆସିଲି । ପଚାରିଲି, 'ଆଚ୍ଛା, ରହୁଛୁ କେଉଁଠି ।'

''ମିଃ. କହୁଥିଲେ, ଏଇଠି ମୋ' ପାଇଁ ଘରଟେ ତିଆରି କରିବାକୁ ହେଲେ, ଆମେ ତ ଉଡ଼ନ୍ତା ଚଢ଼େଇ ବସାବାନ୍ଧିବାର ଦରକାର କ'ଣ ? ଭଲ ଘରଟେ ଖୋଜିଲି ଯେ ମିଳିଲାନି । ଏଇ ରାସ୍ତାରେ ଡାହାଣ ପଟ ଗଳିର ଶେଷ ହଳଦିଆ କୋଠାରେ ରହୁଛି ।'' ତା' କଥାରେ ମିଶି ରହିଥିଲା କିଛି ଗର୍ବ ଓ କିଛି ବିରକ୍ତି ।

''ଅନେକ ବର୍ଷ ପରେ ଦେଖା । ମୋ'ସାଙ୍ଗରେ ଚାଲ୍, ଆମ ଘରକୁ ।'' ମୁଁ ତାକୁ ନିମନ୍ତ୍ରଣ କଲି ।

''ତୋ, ଘରକୁ ? ତୋ'ର ଏଠି ଘର ଅଛି ଜାଣିଥିଲେ, ମୁଁ ଏ ଭଡ଼ାଘରେ ଆଦୌ ରହି ନଥାନ୍ତି...''

''ଘର ଆଉ କେଉଁଠି କଲି ? କ୍ୱାର୍ଟରରେ ରହୁଛି ?'' ମୁଁ କହିଲି ନିଜର ଅସହାୟତା ପ୍ରକାଶ କରି ।

''ଆଜି ନୁହେଁ ତୋ'ଘର ଠିକଣା ଦେଇଥା' । ଆଉ କେବେ ଯାଇ ପହଞ୍ଚିବି । ମିଷ୍ଟରଙ୍କ ଆଜି ଫେରିବାର ଅଛି ।' ତା' ଦାମୀ ଶାଢ଼ୀର ପଣତକୁ ସଜାଡ଼ିନେଇ ସେ ଉତ୍ତର ଦେଲା ।

''ଠିକ୍ ଅଛି । ଆସିବୁ ନିଶ୍ଚୟ ।'' ମୋ କଥାରେ କାନ୍ଧ ହଲାଇ ମୁଣ୍ଡ ଟୁଙ୍ଗାରି ସମ୍ମତି ଦେଲା ସେ ।

ସଂଧ୍ୟାର ପ୍ରଲେପ ବହଳ ହେଉଥିଲା । ଆମେ ଦୁହେଁ ପରସ୍ପରର ବିପରୀତ ଦିଗରେ ଚାଲିବାକୁ ଆରମ୍ଭ କଲୁ ।

ସବୁକାମ ସାରି ବିଛଣାରେ ଅଳସ ଦେହକୁ ଲୋଟାଇ ଦେଲାବେଳେ ଉର୍ବଶୀର ମୁହଁ ମନେପଡ଼ିଲା ।

କଲେଜରେ ପଢ଼ିଲାବେଳେ ଉର୍ବଶୀ ମୋ କ୍ଲାସମେଟ୍ ଥିଲା । ସାଧାରଣ ସୌଜନ୍ୟ ଭିତରେ ସୀମିତ ଥିଲା ଆମର ବନ୍ଧୁତା ।

ପାଞ୍ଚଫୁଟ୍ ତିନିଇଞ୍ଚର ପାତଳୀ ଶ୍ୟାମାଙ୍ଗୀ ଥିଲା ଉର୍ବଶୀ । ସେ ଯେ ଅସାଧାରଣ, ସୂଚେଇଦେବାକୁ ସବୁବେଳେ ଚେଷ୍ଟାକରେ ଉର୍ବଶୀ । ନୂଆ ନୂଆ ଚକ୍‌ମକ୍ ଓଢ଼ଣୀ ପକାଏ । ତା'ର କେଶବିନ୍ୟାସ ଦୃଷ୍ଟି ଆକର୍ଷଣ କରେ । ଅଣ୍ଟା ଦୋହଲାଇ ରାଜହଂସୀର ଚାଲିକୁ ଅନୁସରଣ କରେ । ଏଇ ହେଉଛି ସେଦିନର ଉର୍ବଶୀ ।

ଅଥଚ ଅତୀତ ଓ ବର୍ତ୍ତମାନର ଉର୍ବଶୀ ଭିତରେ ଆକାଶ ପାତାଳ ଫରକ୍ ।

କେଶକୁ କାଟି ଏବେ ବବ୍‌କଟ୍ କରିଦେଇଛି । ଭ୍ରୂଲତାର ଗହଳ କମିଯାଇ ମାତ୍ର ରେଖାଟିଏ ପରି ଦୃଶ୍ୟମାନ ହେଉଛି । ଓଠରେ ଲିପଷ୍ଟିକର ବହଳ ଆସ୍ତରଣ । ମେଦବୃଦ୍ଧି ଫଳରେ ବୟସ୍କା ସ୍ତ୍ରୀ ଲୋକଟିଏ ପରି ଦିଶୁଛି ଏବେ । ପେଟର ଅନାବଶ୍ୟକ ମେଦ କଟିର କୃଶତାକୁ ଲିଭେଇ ସାରିଛି ।

ଆଦୌ ମନେ ହେଉନାହିଁ, ଇଏ ସେଇ ଉର୍ବଶୀ, ଯିଏ ସେଦିନ କଲେଜରେ ପ୍ରଜାପତି ପରି ଉଡ଼ି ବୁଲୁଥିଲା । ଓଠ ଲମେଇ, ଆଖି ନଚେଇ ପୁଅଙ୍କ ସାମ୍ନାରେ ନିଜକୁ ଅସାମାନ୍ୟ ବୋଲି ମନେ କରୁଥିଲା ।

ତିନିଦିନ କଟିସାରିଛି । ଅବିନାଶ ଫେରିଆସିଛନ୍ତି । ପୂର୍ବ ଅପେକ୍ଷା ପଳାଶଫୁଲ ଖୁବ୍ ଫୁଟୁଛି, ଝରୁଛି ମୁଠାମୁଠା ହୋଇ ସକାଳେ । ଅବିନାଶ ଟୁର୍‌ରୁ ଫେରିଆସିବାରୁ ଏତେ ବିଭୋର ଥିଲି ଯେ ଉର୍ବଶୀ କଥା କହିବାକୁ ଭୁଲିଯାଇଥିଲି ।

ତା' ପରଦିନ ଛୁଟି ଥିଲା । ଅପରାହ୍ଣରେ ଅବିନାଶ ବଗିଚାରେ ପାଣି ଦେଉଥିଲେ । ଖୁବ୍ ଫୁଲପ୍ରିୟ । ଗୋଟେ ପଟେ କ୍ରିସେନ୍ଥମମ୍‌ର ସବୁସବୁପତ୍ରରେ ପାଇପ୍ ସାହାଯ୍ୟରେ ପାଣି ସିଞ୍ଚୁଥିଲାବେଳେ ଉର୍ବଶୀ ଆସିଲା ।

ଗେଟ୍ ଖୋଲୁଖୋଲୁ ପ୍ରଶ୍ନ କଲା - ''ଏ ମାଳୀ, ତୁମ ମାଡାମ୍ ଅଛନ୍ତି ?''

ଅବିନାଶ ସ୍ତମ୍ଭୀଭୂତ ହୋଇ ରହିଗଲେ ଓ ମୁଣ୍ଡଟୁଙ୍ଗାରୀ ହଁ ଭରିଲେ । ଅବଶ୍ୟ ସେଦିନ ମୁଁ ନିଜେ ତାଙ୍କୁ ଗୋଟେ ଗ୍ରେ ଟ୍ରାଉଜର୍ସ ଓ ପୁରୁଣା ହାଫ୍‌ସାର୍ଟଟେ ପିନ୍ଧିବାକୁ ଦେଇଥିଲି । ବଗିଚାରେ ଗଛର ଯତ୍ନ ନେଲାବେଳେ ମାଟି ସହ ମାଟି ହୋଇଯାଇଥାନ୍ତି ସେ । ତେଣୁ ଏମିତି ବେଶରେ ଅବିନାଶଙ୍କୁ ଚିହ୍ନିବାରେ ସାମାନ୍ୟ ତ୍ରୁଟି ହୋଇପାରେ ତା'ର ।

ଘରଭିତରେ ପାଦ ଦେଉ ଦେଉ ଉର୍ବଶୀ ବଡ଼ପାଟିରେ ମୋତେ ଡାକିଲା ।

ମୁଁ ତା ଡାକରେ କିଚେନ୍‌ରୁ ବାହାରି ଆସିଲି । ଟାୱେଲ୍‌ରେ ହାତ ପୋଛୁପୋଛୁ କହିଲି, 'ଆସିବାକୁ ମନେ ନଥିଲା ବୋଧେ । ଆଚ୍ଛା, ଘର ଖୋଜି ପାଇବାରେ କଷ୍ଟ ହେଲାନି ତ ?' ତାକୁ ଡ୍ରଇଁ ରୁମ୍‌ରେ ବସାଇଲି ।

ସେ ସୋଫାରେ ବସୁ ବସୁ କହିଲା, ''କଷ୍ଟ ଆଉ କ'ଣ ? ତୁ କ'ଣ ଭାବୁଛୁ, ଏ ଛୋଟ ପାହାଡ଼ିଆ ଜାଗାଟା ନିୟୁୟର୍କ, ବୋଷ୍ଟନ ନା ହଙ୍କଂ । ଘରଟା ପାଇ ନଥାନ୍ତି କେମିତି ?'' ବୋଧେ ଏ ଜାଗାର ତୁଚ୍ଛତାକୁ ପ୍ରମାଣିତ କରିବାକୁ ସେ ଉଚ୍ଚାରଣ କଲା ଏତକ ।

ଏହି ସମୟରେ ହାତରେ ପାଇପ୍ ଗୁଡ଼େଇଧରି ଅବିନାଶ ଡ୍ରଇଁ ରୁମ୍ ବାଟେ ଭିତରକୁ ଗଲେ ।

ଉର୍ବଶୀ ମୋତେ ଈଷତ୍ ଉଷ୍ମ ସ୍ୱରରେ ପ୍ରଶ୍ନ କଲା, ''ତୋ' ଘରେ ମାଳୀମାନେ କ'ଣ ଘରର ମାଲିକ ପରି ଚାଲନ୍ତି ? ସେମାନେ କ'ଣ ସଂଭ୍ରମବୋଧ ଜାଣନ୍ତି ନାହିଁ । ମୋ' ଘର ହୋଇଥିଲେ ଯାକୁ ଦିନଟିଏ ବି ରଖନ୍ତି ନାହିଁ । ତୁ କେମିତି ତାକୁ ଟଲରେଟ୍ କରିଛୁ, କେଜାଣି ।''

ତା' ନିର୍ବୋଧପଣରେ ହସିଲି ଓ କହିଲି, ''ଆଫଟର ଅଲ ହି ଇଜ୍ ମାଇଁ ହଜ୍‌ବ୍ୟାଣ୍ଡ ।''

ଆକାଶରୁ ଖସିପଡ଼ିଲା ପରି ମୋତେ ଚାହିଁଲା ଉର୍ବଶୀ, 'ହ୍ୱାଟ ? ଏଇ ଟଏସ୍ ତୋ'ର ଶେଷରେ ।''

'କାଇଁ, ତୋ'ର ପସନ୍ଦ ହେଉନି ? କ୍ଲାସ ଟୁ ଅଫିସର କ'ଣ ପସନ୍ଦଯୋଗ୍ୟ ନୁହେଁ ? ଅବିନାଶ ଖୁବ୍ ଭଲପାଆନ୍ତି ଗଛକୁ, ଫୁଲକୁ ସନ୍ତାନ ପରି ସ୍ନେହ କରନ୍ତି । ସେମାନଙ୍କୁ ନିଜ ହାତରେ ଯତ୍ନ ନିଅନ୍ତି । ଇଏ କ'ଣ ତାଙ୍କର ଅଯୋଗ୍ୟତା ?''

ମୋ' ପ୍ରଶ୍ନରେ ସେ ଦବିଗଲା ନାହିଁ, ବରଂ ନିଜପକ୍ଷ ସମର୍ଥନ କରି କହିଲା, ''ଯାହା ବି ହେଲେ ନିଜ ଷ୍ଟାଟସ୍ ମେଣ୍ଟେନ କରିବା କଥନା । ଲୋକେ କ'ଣ କହିବେ ?''

''ଲୋକଙ୍କ କଥାରେ କ'ଣ ନିଜ ରୁଚିକୁ ପରିତ୍ୟାଗ କରି ହେବ ।'' ମୋ କଥା ସରିବା ମାତ୍ରକେ ଅବିନାଶ ସଫାସଫି ହୋଇ ପୋଷାକ ବଦଳାଇ ଡ୍ରଇଂ ରୁମ୍‌କୁ ଆସିଲେ ।

ଦୁହିଁଙ୍କୁ ପରିଚିତ କରାଇଦେଲି । ଜଳଖିଆ ଓ କଫି ପରେ ଉର୍ବଶୀ ଯିବାକୁ ବାହାରିଲା । ତାକୁ ରାସ୍ତାରେ ବଳେଇଦେଇ ଆସିଲୁ । ସେ ଗୋଟାଏ ରିକ୍ସାରେ ଗଲା ।

ସଂଧ୍ୟା ହୋଇସାରିଥିଲା । ପାହାଡ଼ର ଆରପଟୁ ଜହ୍ନ ହସୁଥିଲା ନୀଳ ଆକାଶରେ । ଘରେ ପାଦ ଦେଉଦେଉ ହସି ପକାଇଲେ ଅବିନାଶ ।

ଅବିନାଶଙ୍କ ମନଖୋଲା ହସ ମୋତେ କୌତୂହଳୀ କରି ପକାଇଲା । ପଛକୁ ବୁଲିପଡ଼ି ହସିଲା ଆଖିରେ ତାଙ୍କୁ ଚାହିଁଲି ।

ଡିଭାନ୍‌ରେ ନିଜକୁ ଲୋଟାଇ ଦେଇ ହସି ହସି ମୋତେ ସେ ଓଲଟା ପ୍ରଶ୍ନ କଲେ, 'ଏଥରକୁ ଏ ମାଳୀ-ସ୍ୱାମୀଟି ସହ ଆଉ ବାଟ ଚାଲିପାରିବଟି ? ଉର୍ବଶୀଙ୍କ ଷ୍ଟାଟସ୍ ସାମ୍ନାରେ କେତେ ନ୍ୟୁନ ହୋଇଗଲ ସତେ !''

କୌତୁକପ୍ରିୟ ଅବିନାଶଙ୍କ କଥାରେ ମୋ ଦେହରେ ନିଆଁ ଚରିଗଲା ଯେମିତି ।

ରାଗ ଓ ବିରକ୍ତିରେ ଭିତରକୁ ଚାଲିଗଲି । ପ୍ରଥମଥର ପାଇଁ ଅନୁଭବ କଲି, ସତେଯେମିତି ଉର୍ବଶୀ ଝଡ଼ଟିଏ ପରି ଆମ ଦିହିଁଙ୍କ ଭିତରେ ନିଃଶବ୍ଦରେ ପ୍ରବାହିତ ହେବାକୁ ଆରମ୍ଭ କରିଛି ।

ରାତିରେ ରୋଷେଇ ସାରିଲା ପରେ ଡାଇନିଙ୍ଗ ଟେବୁଲ୍‌ରେ ପ୍ଲେଟ୍ ସଜେଇସାରି ଦେଖିଲି, ଅବିନାଶ ନୀରବରେ 'ଦି ବ୍ଲାଇଣ୍ଡ ଆସାସିନ୍' ପଢୁଛନ୍ତି । ନୀରବରେ ଫେରିଆସିଲି ।

ମୋ'ଫେରିବା ଦେଖି ଉଠିଆସିଲେ ଅବିନାଶ । ପାଖକୁ ଆସି ମୋ କାନ୍ଧରେ ହାତ ରଖି ସ୍ମିତ ହସି ପ୍ରଶ୍ନ କଲେ, 'ମୋ ପରିହାସରେ ରାଗିଗଲ ନା ? ସରି ।'

ମୁଁ ଦୀର୍ଘଶ୍ୱାସ ଛାଡ଼ିଲି । ମୋ' କାନ୍ଧରୁ ହାତ ଖସାଇ ନେଇ ଅବିନାଶଙ୍କୁ ଗୋଟେ ଚେୟାର୍‌ରେ ବସାଇ ଦେଇ ବାଢ଼ିଲି ଓ ଦୁହେଁ ଖାଉ ଖାଉ କଲେଜ ଜୀବନରୁ ଏଠି ତାକୁ ଭେଟିବାର ଦୀର୍ଘ କାହାଣୀ ଶୁଣାଇଲି ।

ସବୁ ଶୁଣିଲା ପରେ ସେ ଟିପ୍ପଣୀ ଦେଲେ, ''ଯାହାହେଲେ ବି ନାରୀସୁଲଭ ଗୁଣ ରହିବନି କେମିତି ?''

ଏ ଭିତରେ ଅନେକ ଦିନ ବିତିଯାଇଛି । ବସନ୍ତ ଋତୁ କେବେଠୁଁ ବିଦାୟ ନେଇସାରିଲାଣି । ପଳାଶ ଗଛର ଥୁଣ୍ଟାଡାଳରେ ପତ୍ରର ସବୁଜିମା । ସୂର୍ଯ୍ୟାଲୋକର ତୀବ୍ରତା କଷ୍ଟ ଦେଉଥିବାବେଳେ ମନେ ହେଉଥିଲା, ଦିନ ସବୁ ଅସରନ୍ତି ହୋଇ ଉଠୁଛନ୍ତି ।

ଅନେକ ଥର ଉର୍ବଶୀ ଆସିଛି ଆମ ଘରକୁ । କହେ, ଭଲ ଲାଗୁନି ଏଠିକାର ନୀରସ ପରିବେଶ । ନା କ୍ଲବ ଅଛି, ନା ପାର୍ଟି, ପିକ୍‌ନିକ୍, ନା କିଛି ଫଙ୍କସନ୍ ହେଉଛି । ମିଷ୍ଟର ତ ସବୁବେଳେ ବିଜିନେସ୍‌ରେ ବ୍ୟସ୍ତ । ମୋତେ ବୁଲାଇବାକୁ ବି ସମୟ ମିଳୁନି । କି ବୋରିଂ ଏଠିକାର ଜୀବନ !'

ଏସବୁ କଥା ପାଇଁ ମୋ'ପାଖରେ କୌଣସି ଉତ୍ତର ନଥାଏ । କେବଳ ନୀରବରେ ଶୁଣେ ଓ ଅନିଚ୍ଛା ସତ୍ତ୍ୱେ ସାମାନ୍ୟ ହସେ ।

ସେ ପ୍ରଶ୍ନ କରେ, ''ତୋତେ ବୋର୍ ଲାଗେନି !''

''ବୋର୍ କାହିଁକି ଲାଗିବ । ସକାଳ ସାରା କାମ ଲାଗିଥାଏ । ନିତ୍ୟକର୍ମ ଠାରୁ ରୋଷେଇ ଭିତରେ ସକାଳ କଟିଯାଏ । ଅବିନାଶ ଅଫିସ୍ ଚାଲିଗଲେ ଅଳ୍ପ ସମୟ ରେଷ୍ଟ ନେଇ ବହିପତ୍ର ପଢ଼େ । କେବେ କେମିତି ଲେଖାଲେଖି କରେ । ଚାରିଟାବେଳେ ଅପେକ୍ଷା କରେ ଅବିନାଶଙ୍କୁ ? କେବେକେବେ ଏଇ ପାହାଡ଼ତଳି ଗାଁ ପାଖର ନଈକୂଳକୁ ବୁଲିଯାଉ । ନହେଲେ ସଂଧ୍ୟାରେ ବଗିଚାରେ ପାଣି ଦେଲାବେଳେ ସେ ମୋତେ କବିତା ଶୁଣାନ୍ତି । ସମୟ ପାଇଲେ ଦୁହେଁ ମାର୍କେଟିଙ୍ଗ ପାଇଁ ଯାଉ । ସମୟ କେମିତି କଟିଯାଏ ଜଣାପଡ଼େନି ।'' ମୁଁ ହସିଦେଇ ଉତ୍ତର ଦିଏ । ! ମୁଁ ଜାଣେ, ସେ ମୋ ଉତ୍ତରରେ ସନ୍ତୁଷ୍ଟ ହୁଏନାହିଁ ନିଜ ଅନ୍ତଃକରଣରେ । ଅପେକ୍ଷା କରୁଥାଏ ମୋ' ଅସନ୍ତୋଷର କାହାଣୀ ଶୁଣିବାକୁ । ମୋ ଉତ୍ତର ଶୁଣି ସାମାନ୍ୟ ଈର୍ଷାର ସ୍ୱରରେ କୁହେ, ''ସତରେ ?''

ଉର୍ବଶୀ ସବୁଥର ପିନ୍ଧିକରି ଆସେ ଦାମୀଦାମୀ ପାଟଶାଢ଼ୀ । ଘରେ ପାଦ

ଦେଉଦେଉ ବଖାଣେ ଶାଢ଼ୀମାନଙ୍କର ଇତିହାସକୁ । ମୋ' ସାମ୍ନାରେ ଦୁଇଚାରି ଘେରା ଘୂରିଯାଇ ପ୍ରଶ୍ନ କରେ, ''କେମିତି ମାନୁଛି, କହିଲୁ, ଆଉଟିଂରେ ଗତବର୍ଷ ଯାଇଥିଲୁ । ଫେରିଲାବେଳେ ମଦୁରାଇରୁ ଏଇଟାକୁ ଆଣିଥିଲି । ଆଉ ଟିକେ କଷ୍ଟଲି ଖୋଜୁଥିଲି, ନ ମିଳିବାରୁ ୟା'କୁ ହିଁ ଆଣିଲି । ସାଢ଼େ ଚାରିହଜାର ନେଇଛି । କେମିତି ଲାଗୁଛି ?''

ସ୍ମିତ ହସି କୁହେ, ''ହଁ ଖୁବ୍ ଭଲ ମାନୁଛି ତତେ ।''

ସେ ଯେମିତି ଅପେକ୍ଷା କରିଥାଏ ମୋ' ଓଠର ପ୍ରଶଂସାକୁ । ଶୁଣିସାରି ଆତ୍ମପ୍ରସାଦରେ ଫୁଲିଉଠି ଆଷାଢ଼ର କୂଳଲଂଘିନୀ ନଦୀପରି ଉଚ୍ଛୁଳି ପଡ଼େ ।

ଥରେ ଥରେ ମୋ ଶାଢ଼ୀ ଦେଖି ପଚାରେ, 'ତୁ ଏ ଶାଢ଼ୀ କେମିତି ପିନ୍ଧିପାରୁଛୁ !'

ଘରେ ଥିଲାବେଳେ ମୋ ଦେହରେ ଚଢ଼ିଥାଏ ଖଣ୍ଡେ ସୁପରଫାଇନ୍ ସୂତାଶାଢ଼ୀ । ଉତ୍ତର ଦିଏ, ''ଘରେ ସୂତାଶାଢ଼ୀ ପିନ୍ଧିବାକୁ ଭଲଲାଗେ । ବେଶ୍ କମ୍ଫର୍ଟ ଫିଲ୍ କରେ ।''

ତାଚ୍ଛଲ୍ୟ କଲାପରି ସେ କହେ- ''କମ୍ଫର୍ଟ ନା ଛତୁ । ଆଜିକାଲି କିଏ ଘରେ ଶାଢ଼ୀ ପିନ୍ଧୁଛି । ଘରେ ଚାକରାଣୀଟେ ରଖ୍ । ନିଜ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେ' । ନହେଲେ ସ୍ଲିମ୍ ଫିଗର ବିଗିଡ଼ିଯିବ । ସକାଳେ ଜଗିଙ୍ଗ କର । ବିଉଟି ଟିପ୍‌ସ ନେ' । ନିଜକୁ ସ୍ମାର୍ଟ କର । ସୁନ୍ଦର ସୁନ୍ଦର ପୋଷାକ ପିନ୍ଧ । ଏଇ ଦେଖୁନୁ ମୋତେ ନୂଆ ଶାଢ଼ୀ ଗହଣା ଓ କେୟାର ଭିତରେ କେମିତି ରହୁଛି ମୁଁ ?''

ଆଖିକୋଣରେ ଲୁହ ଢଳେଇଆସେ ତଥାପି ହସିବାକୁ ପଡ଼େ । କହେ, 'ତୋ ପରି ଭାଗ୍ୟ କ'ଣ ସମସ୍ତଙ୍କର ଅଛି ?' ଏଇ ପଦକରେ କଥା ଶେଷ କରିବାକୁ ଚେଷ୍ଟା କରେ ମୁଁ ।

ଏ ଭିତରେ ଅନେକଥର ଚେଷ୍ଟା କରିଛି, ଉର୍ବଶୀକୁ ସ୍ପଷ୍ଟ କହିଦେବି ଯେ ଭବିଷ୍ୟତରେ ସେ ଯଦି ଏମିତି ପ୍ରସଙ୍ଗମାନ ଉଠାଏ, ତେବେ ଆମ ବନ୍ଧୁତାରେ ଭଙ୍ଗା ପଡ଼ିଯିବ । ହେଲେ ମୋ' କଥା ମୋ' ମନ ଭିତରେ ରୁଦ୍ଧ ହୋଇ ରହିଯାଏ । ଓଠ ଦେଇ ଫୁଟିପାରେ ନାହିଁ ।

ସାବିତ୍ରୀ ଅମାବାସ୍ୟାର ପୂର୍ବ ସପ୍ତାହରେ ଉର୍ବଶୀ ଆସି ପହଞ୍ଚିଲା । ହାତରେ ଥାଏ ଗୋଟେ ବଡ଼ ପ୍ୟାକେଟ । ସେଦିନ ରବିବାର ସଂଧ୍ୟା । ଅବିନାଶ ଓ ମୁଁ ଠିକ୍ କରିଥିଲୁ ନଈକୂଳ ଆଡ଼େ ବୁଲିଯିବାକୁ । ହେଲେ, ଉର୍ବଶୀ ଆସି ପହଞ୍ଚିଯିବାରୁ ଆମ ବୁଲିଯିବାରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା ।

ଉର୍ବଶୀ ତା' ଭ୍ୟାନିଟିରୁ ରୁମାଲ୍ ବାହାର କରି କପାଳର ଝାଳକୁ ଧୀରେଧୀରେ ପୋଛିନେଇ କହିଲା- 'ଦେଖିଲୁ, ମୋ ପାଇଁ ମିଷ୍ଟର ଏ ଶାଢ଼ୀସବୁ ସାବିତ୍ରୀବ୍ରତ ପାଇଁ ଆଣିଛନ୍ତି । କେଉଁଟା ସେଦିନ ପିନ୍ଧିବି, କହ ତ ?''

କହୁକହୁ ଶାଢ଼ୀସବୁ ବାହାର କରି ମୋ ସାମ୍ନାରେ ସଜାଇ ଦେଲା । ମୁଁ ଅନୁମାନ କଲି, ପ୍ରତ୍ୟେକ ଶାଢ଼ୀର ଦାମ୍ ଚାରିପାଞ୍ଚ ହଜାରରୁ କମ୍ ହେବନାହିଁ ।

''ସବୁ ଶାଢ଼ୀ ତ ତୋତେ ମାନିବ, ଉର୍ବଶୀ । ତେବେ ତୋ ଚଏସ୍ ଅନୁସାରେ ତୁ ପିନ୍ଧିବା କଥା ।'' ତା' ମତ ଜାଣିବାକୁ ପ୍ରଶ୍ନ କଲି ।

''ଜାଣିଚୁ ? କୌଣସି ପର୍ବପର୍ବାଣୀରେ ମୋ'ର ଗୋଟେ ଶାଢ଼ୀ ଦରକାର ଥିଲେ,

ସେ ଆଠ ଦଶଟା ଶାଢ଼ୀ ଆଣି ଗଦେଇଦେବେ । ଆଉ ମୁଁ ଚଏସ୍ କରି ପିନ୍ଧିବାବେଳକୁ ବଡ଼ ମୁସ୍କିଲ୍‌ରେ ପଡ଼େ ।''

ସେତିକିବେଳେ ଅବିନାଶ ଡ୍ରଇଂରୁମକୁ ପଶିଆସିଲେ । ଉର୍ବଶୀ ଆଖି ନଚାଇ ପଚାରିଲା- ''ଆପଣ ଢୋସୁ ପାଇଁ କେତେଟା ଶାଢ଼ୀ ଆଣିଛନ୍ତି ?''

ଅବିନାଶ ବିସ୍ମିତ ହୋଇ ପଚାରିଲେ, ''କ'ଣ ପାଇଁ ?''

''ଆଗରେ ପରା ସାବିତ୍ରୀ ଅମାବାସ୍ୟା ।'' ତୀକ୍ଷ୍ଣ କଣ୍ଠରେ ସୂଚାଇଲା ସେ ।

''ଓଃ ମୁଁ ଭୁଲିଯାଇଥିଲି ପ୍ରକୃତରେ ।'' ଅବିନାଶଙ୍କ କଣ୍ଠରେ ଅନୁଶୋଚନା ।

''ଏବେ ମନେପଡ଼ିଲା ନା ? ଆଚ୍ଛା କେତେଟା ଶାଢ଼ୀ କିଣିବେ ଏଥରକ ? କେତେ ରେଞ୍ଜରେ ଆଣନ୍ତି ?'' ଉର୍ବଶୀର ଅନୁସନ୍ଧିତ୍ସୁ ପ୍ରଶ୍ନରେ ଅବିନାଶ ଅସ୍ତବ୍ୟସ୍ତ ହୋଇଗଲେ ।

କଥା ହାଲ୍‌କା କରିବାକୁ ଯାଇ ଉତ୍ତରଦେଲେ, ''ଢୋସୁର ପସନ୍ଦରେ କିଣା ହୁଏ । ମୋର ଏ ବିଷୟରେ କିଛି ଧାରଣା ନାହିଁ ।''

''ହଁ ତା'ର ତ ଯାହା ପସନ୍ଦ, ସେଇଟା ଦେଖିପାରୁଛି । ଶହେଟଙ୍କିଆ ସୂତାଶାଢ଼ୀରେ ତା' ଚଏସ୍ ଜଣାପଡୁଛି । ହେଲେ ଆମ ମିଷ୍ଟର ସବୁ ପସନ୍ଦ କରନ୍ତି ନାହିଁ । ଶାଢ଼ୀ ଗହଣାରୁ ସ୍ତ୍ରୀଲୋକମାନଙ୍କର ଟେଷ୍ଟ ଓ ଆଭିଜାତ୍ୟ ଜଣାପଡ଼େ ।' ତା' କଥାରେ ଥିଲା ତାଚ୍ଛଲ୍ୟ, ବ୍ୟଙ୍ଗ ଓ ଆକ୍ଷେପ ।

ସେ ଯିବାର ଅନେକ ସମୟ ପର୍ଯ୍ୟନ୍ତ ଆମେ ଦୁହେଁ ଚୁପ୍ ଥିଲୁ, ଠିକ୍ ପାହାନ୍ତି ନୀରବତା ପରି । ଅବିନାଶ ସୋଫା ଉପରେ ଆଖି ବନ୍ଦ କରି ବସି ରହିଥିଲେ । ଉଠିଯାଇ ମନ ହାଲ୍‌କା କରିବାକୁ ଗଛରେ ପାଣି ଦେଲେ ନାହିଁ କି ଅସ୍ଥିରତାରୁ ମୁକ୍ତିପାଇବାକୁ ଗୀତ ଶୁଣିଲେ ନାହିଁ ।

ମୁଁ କାଛକୁ ଆଉଜି କିଛି ସମୟ ଅବିନାଶଙ୍କୁ ଚାହିଁଲି । ତାଙ୍କର ଏମିତିକା ଗମ୍ଭୀର ଚେହେରା ମୋ' ପାଇଁ ବୋଧହୁଏ ଏଇ ପ୍ରଥମ । ସାହସ ସଂଚୟ କରି ଧୀରପାଦରେ ପାଖକୁ ଯାଇ ଅବିନାଶଙ୍କ ବେକରେ ହାତଛନ୍ଦି କାନ୍ଧ ଉପରେ ମଥା ରଖିଲି ।

ସେମିତି ବନ୍ଦ ଆଖିରେ ମୋ' ମଥା ସାଉଁଳାଇଦେଇ ମୋତେ ପାଖରେ ବସାଇଲେ ସେ । ସେତେବେଳେକୁ ମୋ' ଛାତିତଳର ଦୁଃଖ ଅମାନିଆ ଲୁହ ହୋଇ, ସମୁଦ୍ରର ଜୁଆର ପରି, ଝରିଗଲାଣି । ଟୋପାଟୋପା ଲୁହ ଝରିପଡ଼ିଲା ଅବିନାଶଙ୍କ ହାତପାପୁଲିରେ ।

ଚମକି ପଡ଼ି ସେ ଆଖି ଖୋଲିଲେ ଓ ମୋ ଆଖିର ଲୁହ ପୋଛିଦେଲେ ।

ଥରଥର ଗଳାରେ କହିଲି, ''ଉର୍ବଶୀର କଥାରେ ଖୁବ୍ ଆଘାତ ପାଇଛନା ? ତା' ପାଇଁ କ୍ଷମା ମାଗୁଛି ।''

ଦୁଃଖ ଓ ଯନ୍ତ୍ରଣାରେ ତାଙ୍କ ହାତକୁ ଚାବୁଡ଼ି ଧରିଲି । ସଂତ୍ରସ୍ତ ବେଦନାରେ ମୋ ଦେହ ଝରାପତ୍ର ପରି ଥରିଉଠୁଥିଲା ।

ମୋତେ ବକ୍ଷ ସଂଲଗ୍ନ କରି ଅବିନାଶ ହସିଲେ । କହିଲେ, ''ଏସବୁ କ'ଣ କହୁଛ ? ବରଂ ମୋର ଭୁଲାମନ ପାଇଁ ମୁଁ ଲଜ୍ଜିତ । ଉର୍ବଶୀର କଥାରେ କ'ଣ ଆମ

ସଂସାରର ମୂଳଦୂଆ ପଡ଼ିଛି । ସେ ଝଞ୍ଜା ପରି ଆସିଛି ଝଞ୍ଜାପରି ଉଭେଇଯିବ । କ୍ଷଣିକର ସ୍ଥିତି ତା'ର । ପୂର୍ବରୁ ସେ ନଥିଲା, କି ଭବିଷ୍ୟତରେ ରହିବନି । ତା'କଥା ମୁଁ ଚିନ୍ତା କରୁନି । କାଲି ମୋର ହେଡ୍ ଅଫିସ୍‌କୁ ଯିବାର ଅଛି । ଶୀଘ୍ର ରେଡ଼ି ହେଲେ ସାଙ୍ଗ ହୋଇ ଯିବା । ମୋ କାମ ହେବ, ତୁମ ଶାଢ଼ୀକିଣା ବି ହେବ ।''

ଆଷାଢ଼ର ପ୍ରଥମ ବର୍ଷାବିନ୍ଦୁ ପରି ଦୁଇଟୋପା ଲୁହ ପୁଣିଥରେ ଆଖିରୁ ଝରିପଡ଼ିଲା । ମୁହଁ ଉଠାଇ ଚାହିଁଲି ଅବିନାଶଙ୍କୁ । କହିଲି, ''ଲୋକଦେଖାଣିଆ ଜୀବନଚର୍ଯ୍ୟାରେ ବାହାରଟା ଚକ୍‌ମକ୍ ଦିଶେ, ଅଥଚ ଆତ୍ମା ଆଉ ବିବେକ କଷ୍ଟ ପାଆନ୍ତି । ମୋତେ ଅନ୍ତତଃ ଏମିତି କଷ୍ଟ ଆଉ କେବେ ଦେବନାହିଁ । ଆମ ପରିପୂର୍ଣ୍ଣ ସଂସାରର ସୁଖ ହିଁ ମୋ ପାଇଁ ଶ୍ରେଷ୍ଠ । ତା' ତୁଳନାରେ ଏ ଶାଢ଼ୀ ଗହଣା ଆଉ ଫମ୍ପା ଆଭିଜାତ୍ୟ କେତେ ମୂଲ୍ୟହୀନ ସେକଥା କହିବା କ'ଣ ନିହାତି ଦରକାର !''

ଅବିନାଶ ଗଭୀର ଦୃଷ୍ଟିରେ ଚାହିଁଲେ ମୋତେ, ହ୍ରଦର ସ୍ଥିର ଜଳରେ ଆକାଶ ନିଜର ମୁହଁ ଦେଖିଲାପରି । ପଚାରିଲେ ''ଆଉ ଶାଢ଼ୀକିଣା କଥା...''

''ଯିବି । ହେଲେ, ମୋ' ପସନ୍ଦର ସାଧାରଣ ଶାଢ଼ୀଟେ କିଣିବି । ଯଦି ରାଜି ହେବ ତ ଯିବି ।''

ଅବିନାଶ ହସିଲେ ନୀରବରେ । ଆଖିକୋଣରେ ଝଲମଲ କରି ଉଠିଲା ଖୁସିର ଲୁହ ।

ଉର୍ବଶୀ ଆସିଲା ସାବିତ୍ରୀ ଅମାବାସ୍ୟା ଦିନ ଅପରାହ୍ନରେ । ଦେହରେ ଦାମିକା ଶାଢ଼ୀ । ଦାମୀ ଗହଣାରେ ମଣ୍ଡି ହୋଇଛି । ମଥାର ସକାଳର ସୂର୍ଯ୍ୟ ପରି ଝଲସୁଛି ବଡ଼ ସିନ୍ଦୂରଟୋପା ।

ବସୁବସୁ ଅନେକ କଥା ଗପିବାକୁ ଆରମ୍ଭ କଲା ଉର୍ବଶୀ- ଯେମିତି କଥା ନୁହେଁ, ନଦୀର ସ୍ରୋତ । ସାରାଦିନର ଧାରାବିବରଣୀ ଶୁଣାଇଦେଲା । ତା' ସ୍ୱାମୀ କେତେ ଫଳ, ମିଠା ଓ ଅନ୍ୟ ଅନେକ ଜିନିଷ ଆଣି ଆସିଥିଲେ, କେତେବେଳେ ସେ ମନ୍ଦିର ଗଲା ଓ ମନ୍ଦିରରୁ ଆସିଲାପରେ କେମିତି ସ୍ୱାମୀଙ୍କୁ ପୂଜା କଲା ଇତ୍ୟାଦି ଇତ୍ୟାଦି । ମୁଁ ମାତ୍ର ନୀରବ ଶ୍ରୋତା ଥିଲି ତା' ସାମ୍ନାରେ ।

ଶେଷରେ ମୋ ଶାଢ଼ୀ ଦେଖିବାକୁ ବାଧ କଲା । ଅବିନାଶଙ୍କ ପସନ୍ଦ ଅନୁଯାୟୀ ମୋତିର ସୁନ୍ଦର କାମ ହୋଇଥିବା ହାଲକା ଆକାଶୀ ରଙ୍ଗର ସିଲ୍କ ଶାଢ଼ୀଟିକୁ ଆଣିଥିଲି । ଦେହକୁ ଚମତ୍କାର ମାନୁଛି ବୋଲି ସକାଳସାରା ଅବିନାଶ ଖୁବ୍ ପ୍ରଶଂସା କରୁଥିଲେ । ।

ଦେଖୁଦେଖୁ ନାସିକା କୁଞ୍ଚନ କଲା ଉର୍ବଶୀ । ବ୍ୟଙ୍ଗ କରି କହିଲା, ''କି ବୁଦ୍ଧି ତୋ'ର । ଆଜି ପରି ଦିନରେ ଏ ଶାଢ଼ୀ କେଉଁ ସ୍ତ୍ରୀ କିଣେ ଯେ' ? ବର୍ଷକୁ ତ ଏଇ ଗୋଟାଏ ଦିନରେ ମଉକା ମିଳେ, ସ୍ୱାମୀ ଠାରୁ ଦାମିକା ଶାଢ଼ୀଟେ ପାଇବା ପାଇଁ । ଆଉ ତୁ ମୂର୍ଖଙ୍କ ପରି ଏହି ସାଧାରଣ ଶାଢ଼ୀଟେ ଆଣିଛୁ ! କୋଉଦିନ ତୋ'ର ଘରକରଣା ବୁଦ୍ଧିହେବ କେଜାଣି !''

ଅନ୍ୟଦିନ ପରି କିନ୍ତୁ ଆଜି ଦୁଃଖ ଦେଲାନାହିଁ ତା ବିଦ୍ରୂପ । ସ୍ମିତ ହସି ନୀରବ ରହିଲି ।

ସଂଧ୍ୟା ଆସନ୍ନ । ସର୍ବତ ପିଇ ସେ ଯିବାକୁ ଉଠିଲା । ଏତିକିବେଳେ ଅବିନାଶ ଅଫିସ୍‌ରୁ ଫେରିଲେ ।

"ଆଜିପରି ଦିନରେ ଆପଣ ଅଫିସ୍ ଯାଇଥିଲେ !" ତା କଥା ପଦକରେ ଲୁଚି ରହିଥିଲା ପ୍ରଚ୍ଛନ୍ନ ପରିହାସ ।

"ଜରୁରୀ ମିଟିଙ୍ଗ୍ ଥିଲା ବୋଲି ଯିବାକୁ ବାଧ ହେଲି । ତେବେ ଜୋସୁ ତ ସକାଳୁ ପୂଜା ସାରିଛି ।" କୈଫିୟତ୍ ଦେଲାପରି ଶୁଣେଇଦେଲେ ଅବିନାଶ ।

ଉର୍ବଶୀ ଚୁପ୍ ରହିଲା । ମୁଁ ଆଶଙ୍କା କରିସାରିଥିଲି, ସେ ନିଶ୍ଚୟ କିଛି ଆଘାତ ଦେବ, ତା' ଶବ୍ଦବାଣରେ ।

ସେ ଫେରିଗଲା । ଅବିନାଶ ପୋଷାକ ବଦଳାଇବା ପରେ ନିଜ ହାତରେ ଚା'କଲେ । ପିଉପିଉ ବଗିଚାକୁ ଆସିଲେ ।

ସେତେବେଳ ପର୍ଯ୍ୟନ୍ତ ଉର୍ବଶୀ ଚାଲିଯିବାର ରାସ୍ତାକୁ ଚାହିଁ ରହିଥିଲି । ନିଜେ ବି ଜାଣେନା, କେଉଁ ଏକ ଅଦ୍ଭୁତ ଖିୟାଲରେ ଦୂରଦିଗ୍‌ବଳୟରେ ଦୃଷ୍ଟି କେନ୍ଦ୍ରୀଭୂତ ହୋଇଥିଲା ।

ଚା' ପିଉପିଉ ମୋ'ର ଅତି ନିକଟରେ ଠିଆହେଲେ ଅବିନାଶ । ଅବିନାଶଙ୍କ ଦେହରେ ପଡ଼ିଲା ଅସ୍ତରାଗ ଓ ମୋ ସାମ୍ନାରେ ଆଙ୍କି ହୋଇଗଲା ତାଙ୍କର ଦେହର ମ୍ଳାନ ଛାୟା । ମୋ'ଧ୍ୟାନ ଭାଙ୍ଗିଗଲା । ଆଖିଟେକି ଚାହିଁଲି ।

ଧୀରଭାବେ ଅବିନାଶ ପ୍ରଶ୍ନ କଲେ, "ଆଚ୍ଛା, ଗୋଟେ କଥା ପଚାରିବି ?"

ମୁଁ ମୁଣ୍ଡହଲାଇ ସ୍ୱୀକୃତି ଦେଲି ଓ ପରବର୍ତ୍ତୀ ପ୍ରଶ୍ନକୁ ଅପେକ୍ଷା କଲି ।

"ଉର୍ବଶୀ ଏଠିକୁ ତିନିଚାରିମାସ ହେବ ଆସିଲେଣି । ଆମ ପାଖକୁ ଅନେକ ଥର ଆସୁଛନ୍ତି । ଅଥଚ ଆମକୁ ତ କେବେ ନିମନ୍ତ୍ରଣ କରିନାହାନ୍ତି ତାଙ୍କ ଘରକୁ ଯିବାଲାଗି - ସୌଜନ୍ୟ ଦୃଷ୍ଟିରୁ ପଦଟିଏ ବି କହି ନାହାନ୍ତି । ତମେ କ'ଣ ଏ ବିଷୟରେ ଚିନ୍ତା କରିନାହଁ ?" ତାଙ୍କ କଥାରେ ଫୁଟିଉଠୁଥିଲା ସନ୍ଦେହ ।

"ସେ ମୋର ଏମିତି ଘନିଷ୍ଠବନ୍ଧୁ ନଥିଲା ଯେ ମୁଁ ତା' ନିମନ୍ତ୍ରଣକୁ ଅପେକ୍ଷା କରିଛି । ସେ ନିମନ୍ତ୍ରଣ ନକଲେ ମୋତେ ବି ବାଧୁନାହିଁ । ସେ ଆପେ ଆପେ ଏଠିକୁ ଆସୁଛି ।" ମୋ ସ୍ୱରରେ ଥିଲା ଈଷତ୍ ଅପମାନ୍ ଅନୁଭବ କରିବା ପରର ବ୍ୟଞ୍ଜନା ।

"ମୋ କଥାରେ କିଛି ଫିଲ୍ କଲ ବୋଧହୁଏ । ପ୍ରକୃତରେ ଆଘାତ ଦେବା ପରି ମୋର ମାନସିକତା ନଥିଲା ।" ଅବିନାଶଙ୍କ କଣ୍ଠରେ ଅନୁତାପର ଆଭାସ ।

କ୍ଷଣକ ଭିତରେ ନିଜକୁ ହାଲକା କରିନେଲି । ସାମାନ୍ୟ ହସି କହିଲି, "ଛାଡ଼, ତା' କଥା ନେଇ ବିତର୍କ କରିବାରେ ଲାଭ ନାହିଁ । ସେ ଗୋଟାଏ ଦୂରନ୍ତ ଝଡ଼ ପରି ମନଇଚ୍ଛା ପଶିଆସୁଛି ।"

ମୋ କଥା ଶୁଣି ଅବିନାଶଙ୍କ ମୁହଁରେ ହସରେ ଛାୟାଟେ ଝଲସି ଉଠିଲା । ପ୍ରସ୍ତାବ ଦେଲେ, 'ଏବେ ନଈକୂଳ ଆଡ଼େ ବୁଲିଯିବା ?"

ତାଙ୍କ ହାତରୁ କପ୍‌ଟା ନେଇ ଭିତରେ ରଖିଦେଇ ତାଲା ବନ୍ଦ କରି କହିଲି, "ଏଇ ସାଙ୍ଗେ ସାଙ୍ଗେ ଯିବା ।"

ଇତିମଧ୍ୟରେ ମାସଟିଏ ବିତିଯାଇଥିଲେ ବି ଉର୍ବଶୀ ଆଉ ଆସିନଥିଲା ତା' ନ ଆସିବାରେ ଯେତିକ ଖୁସି ହେଉଥିଲି, ଭିତରେ ବି ଥିଲା ସେତିକି ଦୁଶ୍ଚିନ୍ତା । ଶେଷରେ ଭାବିଲି ସେ ବୋଧେ କୁଆଡ଼େ ବାହାରକୁ ଯାଇଛି କିମ୍ବା ଫେରିଯାଇଛି ।

ଅବିନାଶ ସେଇ ସଂଧ୍ୟା ପରଠାରୁ ଉର୍ବଶୀ ବିଷୟରେ ପଦଟିଏ ପଚାରିନାହାନ୍ତି । ଆଉ ମୁଁ ମଧ୍ୟ ନୀରବ ଥିଲି ତା' ପ୍ରସଙ୍ଗରେ ।

ସେଇ ଛୋଟ ବଜାର ପାଖରେ ମେଳା ବସିଥିଲା । ସପ୍ତାହବ୍ୟାପୀ ମେଳା । ସେ ଅଞ୍ଚଳର ବଡ଼ ମେଳା । ଦୂରଦୂରାନ୍ତରୁ ଲୋକମାନେ ଆସନ୍ତି । ସାରା ରାତି ନାଚଗୀତ, କିଣାବିକାରେ ସମୟ କଟେ ।

ସେଦିନ ଅଫିସ୍‌ରୁ ଫେରି ଅବିନାଶ ଛୋଟଛୁଆଙ୍କ ପରି ଜିଦ୍ କଲେ ଯେ ସଂଧ୍ୟାରେ କିଛି ସମୟ ପାଇଁ ମେଳା ବୁଲିଯିବାକୁ । ଅବିନାଶଙ୍କ ଆଗ୍ରହ ଭାଙ୍ଗି ପାରିଲିନି ।

ସାଢ଼େ ସାତଟା ବେଳକୁ ଦୁହେଁ ବାହାରିଲୁ । ପାହାଡ଼ିଆ ରାସ୍ତାରେ ଫୁଟିଛି ଅନାମିକା ଫୁଲ । ପବନରେ ଭାସିଆସୁଛି ଫୁଲର ମିଠା ମିଠା ବାସ୍ନା । ଆକାଶରେ ଚନ୍ଦ୍ର ଦୋଳି ଖେଳୁଛି ରୂପେଲି ବାଦଲ ଦେହରେ । ଚନ୍ଦ୍ରାଲୋକରେ ଆଖପାଖ ସମସ୍ତ ଅଞ୍ଚଳ ଦୃଶ୍ୟମାନ ହେଉଛି ।

କିଛି ସମୟ ଭିତରେ ପହଞ୍ଚିଗଲୁ । ବୁଲିବା ଭିତରେ କିଛି ଜିନିଷ ଘର ପାଇଁ କିଣିଲି । ଘଣ୍ଟାକୁ ଚାହିଁଲି ରାତି ନଅଟା ବାଜିବ । ଫେରିବାପାଇଁ ଅବିନାଶଙ୍କୁ କହିଲି । ସାମ୍ନାରେ ଭିଡ଼ ଜମିଥିଲା । ତେଣୁ ପଛପଟ ରାସ୍ତାରେ ଫେରିଲୁ ।

ସେଇ ରାସ୍ତାରେ ପଡ଼େ ଉର୍ବଶୀର ଭଡ଼ାଘର । ସେଇ ହଳଦିଆର କୋଠାକୁ ଦେଖାଇଦେଇ କହିଲି - ''ଏଇଠି ଉର୍ବଶୀ ରହେ ।''

''ଯିବ କି ?''

'ତୁମ ଇଚ୍ଛା ।'

''ଠିକ୍ ଅଛି । ଚାଲ, ଅନିମନ୍ତ୍ରିତ ଅତିଥିଭାବେ ହେଉ ପଛେ ଥରଟିଏ ପାଇଁ ଯିବା ।'' ଅବିନାଶ ମୃଦୁ ପରିହାସ କଲେ ।

ହଳଦିଆ କୋଠାର ଗେଟ୍ ଖୋଲି ଅବିନାଶ ଓ ମୁଁ ଭିତରେ ପାଦ ଦେଲୁ । ବାରଣ୍ଡାର ଧାରେ ଧାରେ ଫୁଲକୁଣ୍ଡ । ପାହାଚ ଅତିକ୍ରମ କରି ଅବିନାଶ କଲିଂବେଲ୍‌ରେ ହାତ ଦେଲେ ।

ଦୁଇମିନିଟ୍ ପରେ ଜଣେ ଭଦ୍ରମହିଳା କବାଟ ଖୋଲିଦେଇ ଆମ ଦୁହିଁଙ୍କୁ ବିସ୍ମିତ ଦୃଷ୍ଟିରେ ଚାହିଁଲେ । ବାରଣ୍ଡାର ଆଲୁଅ ମ୍ଳାନ ଦିଶୁଥିଲା । ତଥାପି ଚଉକାଠ ଟପି ଆସି ଈଷତ୍ ରୁକ୍ଷ ଓ ଥରିଲା ଗଳାରେ ପ୍ରଶ୍ନ କଲେ, ''କାହାକୁ ଖୋଜୁଛ ?''

ଅବିନାଶ ସଙ୍କୁଚିତ ହୋଇପଡ଼ି ଉତ୍ତର ଦେଲେ- ''ମାଉସୀ ଆମେ ଶୁଣିଥିଲୁ ଏଠି ଉର୍ବଶୀ ଦେବୀ ରହୁଛନ୍ତି ବୋଲି... ''

ଅବିନାଶଙ୍କ କଥା ନସରଣୁ ତମ୍ପ ସାପ ପରି ଗର୍ଜି ଉଠିଲେ ବୃଦ୍ଧା ଜଣକ, ''କି ଦୁର୍ଯୋଗରେ ସେ ମାଇକିନିଆଟାକୁ ଘରେ ରଖିଲି କେଜାଣି ! ଆଚ୍ଛା ତୁମଠାରୁ ସେ କ'ଣ ସବୁ ଆଣିଛ ?''

ହତବାକ୍ ଦୃଷ୍ଟିରେ ଦୁହେଁ ଦୁହିଁଙ୍କୁ ଚାହିଁଲୁ । ମୁଁ ପଚାରିଲି, ''ମାଉସୀ, ଏମିତି ରାଗୁଛ କାହିଁକି ? କଥା କ'ଣ ? ତୁମେ ଖୋଲକରି ନ କହିଲେ ଜାଣିବୁ କେମିତି ?''

''ଆଚ୍ଛା, ତୁମେ ଦୁହେଁ ତାକୁ କେମିତି ଜାଣିଲ ?''

ସେ ମୋ ସହପାଠିନୀ ବୋଲି ସଂକ୍ଷେପରେ ବୁଝାଇ ଦେଲି ।

ବୃଦ୍ଧା ତାଚ୍ଛଲ୍ୟ କଲେ - ''ସେ ମାଇକିନିଆ କାହା ସହ ବନ୍ଧୁ ବାନ୍ଧିବାକୁ ଯୋଗ୍ୟ ହେବ ! ହେଇଟି କହୁଛି ଶୁଣ ।''

ତା'ପରେ ବୃଦ୍ଧା ଜଣକ ଯାହା କହିଲେ, ଯେତିକି ଚମକପ୍ରଦ ଥିଲା, ସେତିକ ଦୁଃଖଦ ।

ଉର୍ବସୀର ସ୍ୱାମୀ କୌଣସି ବିଜିନେସ୍‌ମ୍ୟାନ ବା ଇଷ୍ଟେଟ୍‌ର ମାଲିକ ନଥିଲା । ସହରରେ ଥିବା ଗୋଟାଏ ନାମକରା ଡ୍ରାଏଓ୍ୱାସ୍ ଲଣ୍ଡ୍ରିର ଓ୍ୱାର୍କର ଥିଲା । ଉର୍ବଶୀ ପ୍ରେମକରି ଘରଛାଡ଼ି ତା' ସହିତ ରହୁଥିଲା । ସହରରେ ଘରଭଡ଼ା ବ୍ୟୟବହୁଳ ହେବାରୁ ଉର୍ବଶୀକୁ ଏଠି ରଖିଥିଲା ଏବଂ ନିଜେ ଷ୍ଟୋର ରୁମ୍‌ର ଦେଖାଶୁଣା କରିବା ସଙ୍ଗେ ସଙ୍ଗେ ସେଇଠି ରହୁଥିଲା । କେବେ କେମିତି ଏଠିକୁ ମଝିରେ ମଝିରେ ଆସେ । ଆସିବାବେଳେ ଲଣ୍ଡ୍ରିରୁ ଡ୍ରାଏଓ୍ୱାସ ପାଇଁ ଆସୁଥିବା ଶାଢ଼ୀରୁ ବାଛି ବାଛି କିଛି ଶାଢ଼ୀ ଆଣୁଥିଲା । କିଛିଦିନପରେ ମାଲିକ ଏକଥା ଜାଣି ଧରପଗଡ଼ କରି ଏଠିକୁ ଆସି ଖାନତଲାସ କଲେ । ଆଗରୁ କଷ୍ଟମରମାନେ ଡେରି ପାଇଁ ଅଭିଯୋଗ କରୁଥିଲେ । ସବୁ ଶାଢ଼ୀ ଜବତ କରି ନେଇଗଲେ । ଉର୍ବଶୀ ଓ ତା' ସ୍ୱାମୀ କୁଆଡ଼େ ପଳାଇଯାଇଛନ୍ତି । ମୂଳରୁ ଘରଭଡ଼ା ଦେଇନାହାନ୍ତି, ବରଂ କିଛି ଟଙ୍କା ଧାର ସୂତ୍ରରେ ନେଇଛନ୍ତି । ଆଉ ଯେଉଁ ଗହଣା ବନ୍ଧକରେ ରଖିଥିଲେ, ତା ବି ନକଲି ।

ବୃଦ୍ଧାଙ୍କ ଆମୂଳଚୂଳ ବର୍ଣ୍ଣନାରେ ଲଜ୍ଜା ଓ ଅପମାନରେ ମୋ ଦେହ ଶିହରି ଉଠୁଥିଲା । ଅବିନାଶଙ୍କ ପାଖକୁ ଘୁଞ୍ଚିଯାଇ ତାଙ୍କ ହାତ ଧରି ଇସାରା ଦେଲି ଫେରିବାପାଇଁ ।

ଫେରିବା ରାସ୍ତାରେ ଆଶଙ୍କା ହେଲା, କାଳେ ଅବିନାଶ ମୋତେ ପରିହାସ କରିବେ, ଉର୍ବଶୀ ସହ ମୋ ବନ୍ଧୁତାକୁ ନେଇ । ହେଲେ, ବାଟସାରା ନୀରବତା ବ୍ୟାପିଥିଲା । ଅନୁଭବ କଲି, ଆମ ଭିତରେ ଯୋଜନ ଯୋଜନ ଦୂରତା, ଯଦିଓ ଦୁହେଁ ଏକାସାଙ୍ଗରେ ଚାଲୁଥିଲୁ ।

ସେଇ ନୀରବତା ଭିତରେ ଘରେ ପହଞ୍ଚିଗଲୁ । ଫ୍ରେଶ୍ ହେଲୁ, ଅଳ୍ପ କିଛି ଖାଇନେଲୁ, ଯଦିଓ ତଣ୍ଟିରେ ଗଳୁ ନଥିବା ପରି ମନେ ହେଉଥିଲା । ତା' ପରେ ବେଡ୍‌ଲାଇଟ୍ ଜଳାଇ ଶୋଇବାକୁ ଚେଷ୍ଟା କଲୁ ଆମେ ।

ଭୟାନକ ଦୁର୍ଘଟଣା ମନରୁ ପୋଛିବାକୁ ଚେଷ୍ଟା କଲେ, ତା' ଯେମିତି ଆହୁରି କାୟା ବିସ୍ତାର କରି ଆତଙ୍କିତ କରେ, ସେମିତି ଉର୍ବଶୀ ପ୍ରସଙ୍ଗକୁ ଭୁଲିବାକୁ ଚେଷ୍ଟା କଲାବେଳେ ସବୁକଥା ପେଣ୍ଡାପେଣ୍ଡି ହୋଇ ବେଦନାସିକ୍ତ କରିଦେଉଥିଲା ମୋତେ ।

ଦୀର୍ଘଶ୍ୱାସ ଛାଡ଼ି କଡ଼ ଲେଉଟାଇଲି । ଅବିନାଶ ଉଠି ବସିଲେ । ନରମ ଗଳାରେ ପଚାରିଲେ, ''ଶୋଇନାହଁ ?''

''ନା'', କ୍ଷୀଣ ସ୍ୱରରେ କହିଲି ।

''କେତେକ ଲୋକ ଥା'ନ୍ତି, ଯିଏ ସ୍ୱପ୍ନରେ ରହିବାକୁ ଭଲପାଆନ୍ତି । ସେଠି କାଳ୍ପନିକ ପ୍ରାଚୁର୍ଯ୍ୟ ଥାଏ, ସୁଖ ଥାଏ । କଳ୍ପନାର ଇନ୍ଦ୍ରଧନୁରେ ସେମାନେ ଝୁଲନ୍ତି । ବାସ୍ତବତାର ସାମ୍ନାସାମ୍ନି ହୋଇପାରନ୍ତି ନାହିଁ । ଅନ୍ୟ ପାଖରେ ନିଜକୁ ସବୁଠାରୁ ବଡ଼ ବୋଲି ପ୍ରମାଣିତ କରନ୍ତି । ନିଜର ଶ୍ରେଷ୍ଠତା ଦେଖାଇହେବା ସଙ୍ଗେ ସଙ୍ଗେ ଅନ୍ୟର ନ୍ୟୁନତାକୁ ଉଖାରି ହୀନମନ୍ୟତାରେ ଉକ୍ତ୍ରାନ୍ତ କରି ଆନନ୍ଦ ପାଆନ୍ତି । ଅନ୍ୟର ଶ୍ରେଷ୍ଠତାକୁ ଏମାନେ ସହ୍ୟ କରିପାରନ୍ତି ନାହିଁ । ଆପଣାର ବଡ଼ିମାରେ ବଞ୍ଚିବାକୁ ଚାହାନ୍ତି । ଏଇମାନଙ୍କ ଭିତରୁ ଉର୍ବଶୀ ଜଣେ । ମିଛ ଆଭିଜାତ୍ୟର କାଚଘରେ ଏମାନେ ବନ୍ଦୀ ହୋଇ ରହନ୍ତି । ହେଲେ କେତେଦିନ ? ଦିନ ଆସେ କାଚଘର ଭାଙ୍ଗିଯାଏ ଓ ସେମାନେ ସେଇ କାଚଖଣ୍ଡର ତୀକ୍ଷ୍ଣ ଧାରରେ ଉକ୍ତ୍ରାନ୍ତ ହୁଅନ୍ତି ।'

ମୁଁ ନୀରବରେ ଶୁଣୁଥିଲି ଅବିନାଶଙ୍କ କଥା । କେଡ଼େ ନିଚ୍ଛକ ସତେ !

ଭାବିଲି, ଉର୍ବଶୀର କ'ଣ ବିବେକବୋଧ ନଥିଲା । ନିଜକୁ ବଡ଼କରି ଦେଖାଇବା ପାଇଁ ମୋତେ ଏତେ ଆକ୍ଷେପ ଓ ଅପମାନିତ କରୁଥିଲା । ନିଜେ ଅନ୍ୟମାନଙ୍କର ପାଲଟା ଶାଢ଼ୀ ପିନ୍ଧି ମୋତେ ଆଭିଜାତ୍ୟର ଭାଷଣ ଶୁଣାଉଥିଲା ! ଛି, ଧିକ୍ ଏମିତି ବନ୍ଧୁତ୍ୱକୁ !

''ଉର୍ବଶୀ ଗୋଟେ ମାୟାମୃଗୁଣୀ ଥିଲା । ଆମ ଶାନ୍ତିର ସମୟକୁ ବ୍ୟସ୍ତ ବିବ୍ରତ କରିଛି ନିଜର ଲୋଭନୀୟ ଜୀବନର ଆଖିଝଲସା ରୂପସଂଭାର ମେଲାଇ ।''

ଅବିନାଶ ହସିଦେଇ କହିଲେ, ''ଯଦି ସୀତାଙ୍କ ପରି ତୁମେ ଜିଦ୍ କରିଥାନ୍ତନା, ଆମ ସଂସାର ଭିତରେ ଗୋଟେ ବିଭେଦର ପ୍ରାଚୀର ମୁଣ୍ଡ ଟେକି ସାରିଥାନ୍ତା । ତୁମ ସ୍ଥିର ଓ ଶାନ୍ତମନ ପାଖରେ ମୁଁ ଋଣୀ ।''

''ଝଞ୍ଜା ପରି ଆସି ପୁଣି ତା' ବାଟରେ ଚାଲିଗଲା । ତେବେ, ଆଜିଠାରୁ ଏ ପ୍ରସଙ୍ଗରେ ପୂର୍ଣ୍ଣଚ୍ଛେଦ ପଡୁ । ଭୁଲିଯିବା ଉର୍ବଶୀକୁ ଓ ଉର୍ବଶୀର ଟ୍ରାଜେଡ଼ିକୁ ।''

''ଠିକ୍ କହୁଛ । ଭୁଲିଯିବା ଆମେ ତିକ୍ତ ସ୍ମୃତି ଓ ସମୟକୁ । କାଲି ସକାଳୁ ଆରମ୍ଭିବ ପୁଣି ନୂଆ ସମୟ । ମାୟାମୁକ୍ତ ସମୟର ନୂଆ ଜୀବନ । ଅନେକ ରାତି ହେଲାଣି, ଶୋଇପଡ଼ ।'' କହୁକହୁ ଅଳସ ଦେହକୁ ଲୋଟାଇ ଦେଲେ । ମୁଁ ମଧ ଶୋଇବାକୁ ଚେଷ୍ଟା କଲି ।

ସେତେବେଳକୁ ପାହାଡ଼ିଆ ପକ୍ଷୀମାନେ ମଧରାତ୍ରିର ସୂଚନା ଦେଇ ଅସ୍ପଷ୍ଟ ସ୍ୱରରେ ଗୀତ ଗାଉଥିଲେ ଓ ଝିଙ୍କାରିମାନେ ନିଦୁଆ କଣ୍ଠରେ ଝିଁ ଝିଁ ଶବ୍ଦ କରୁଥିଲେ ।

# ନିଶୀଥର ସୂର୍ଯ୍ୟ

ଚିକ୍କଣ ମୁଖ୍ୟ ରାସ୍ତାରୁ ଗାଡ଼ି ସରୁ ରାସ୍ତାକୁ ଗଡ଼ିଲା । ଦୁଇପାର୍ଶ୍ୱରେ ଅଯତ୍ନବର୍ଦ୍ଧିତ ଦେବଦାରୁ ଗଛ । ଦୁଇଶହ ମିଟର ପରେ ଡ୍ରାଇଭର ଗାଡ଼ି ରଖିଲା ।

ସଂତ୍ରସ୍ତ ଗଳାରେ ସେ ଦୃଷ୍ଟି ତଳକୁ କରି କହିଲା - 'ଏ ସ୍ଥାନ ଆପଣଙ୍କ ପାଇଁ ଯୋଗ୍ୟ ନୁହେଁ । ତଥାପି ଚା' ଖୁବ୍ ଭଲ ହୁଏ ଏଠି । ଆସନ୍ତୁ ମାଡାମ୍ ।' କହୁ କହୁ ଡୋର୍ ଖୋଲି ଧରିଲା ।

ନୀରବ ରହିଲି । କାରଣ ମୋତେ ଜଣା ଥିଲା ଦୀର୍ଘ ଅଶୀ କିଲୋମିଟର ମଧ୍ୟରେ ଭଲ ରେଷ୍ଟୁରାଣ୍ଟ୍ ନାହିଁ । ଓହ୍ଲାଇବା ମାତ୍ରକେ ଆଖିରେ ପଡ଼ିଲା ଛୋଟ ଚା' ଷ୍ଟଲଟି । ନଡ଼ା ଛପର ଓ ବତାରେ ଛକି ପଡ଼ିଥିବା ଘରଟିଏ । ତା' ଚାରି ପଟେ ବାଉଁଶରେ ରଂଗଦିଆ ଯାଇ ଛାତିଏ ଉଚ୍ଚର ପାଚେରୀ ତିଆରି ହୋଇଛି । ଭିତରେ ଫାଇବରର ଚେୟାର ଟେବୁଲ । ମନେହେଲା ଚା' ପିଇବା ପାଇଁ ପରିବେଶ ମନ୍ଦ ନୁହେଁ ।

ବୟସ୍କ ମାଲିକଟି ମୋତେ ଦେଖିବା ମାତ୍ରକେ ପାଛୋଟି ନେବାକୁ ଧାଇଁ ଆସିଲା । ଯଦିଓ ସେ ମୋତେ ଜାଣେ ନାହିଁ କିମ୍ବା ପୂର୍ବରୁ ଆମ ମଧ୍ୟରେ କୌଣସି ସାମାନ୍ୟତମ ପରିଚୟ ନାହିଁ ।

'ମୋର ସୌଭାଗ୍ୟ ଯେ ଆପଣଙ୍କ ପରି ମହାନ ବ୍ୟକ୍ତିଙ୍କର ପାଦ ମୋ ଦୋକାନରେ ପଡ଼ିଲା ।' ଉତ୍‌ଫୁଲ୍ଲିତ କୃତଜ୍ଞତା ଏକା ସଙ୍ଗରେ କଣ୍ଠରୁ ଝରି ପଡ଼ିଲା ।

ମୁଁ ପ୍ରତ୍ୟୁତ୍ତର ନଦେଇ ସ୍ମିତ ହସିଲି । କାରଣ ତା'ର ପ୍ରଶଂସା ସୂଚକ ଶବ୍ଦମାନଙ୍କ ପାଇଁ ମୋ ପାଖରେ କୌଣସି ଫେରସ୍ତ ଉତ୍ତର ନଥିଲା ।

ଷ୍ଟଲରେ କାମ କରୁଥିବା ବୟମାନେ ସଙ୍କୁଚିତ ହୋଇ କାମ କରିବାର ବାହାନାରେ ମୋତେ ଦେଖିବାକୁ ଚେଷ୍ଟା କରୁଥିଲେ । ମାଲିକଟି ଧାଇଁ ଯାଇ ଟାୱେଲଟିଏ ଆଣି ଚେୟାରରେ ପକାଇଦେଲେ - କାଳେ ମୋ ପୋଷାକ ନଷ୍ଟ ହୋଇଯିବକି ଚେୟାରରେ ବସିବା ମାତ୍ରକେ ।

ମାଲିକ ନିଜେ ଚା ତିଆରି କଲା । ଫୁଟନ୍ତା ଚା'ର ବାସ୍ନା ପବନରେ ଭାସି ଆସି ମୋ ସ୍ନାୟୁକୁ ସତେଜ କରିବାକୁ ଯେମିତି ଚେଷ୍ଟା କରୁଥିଲା । ଚାରିଆଡ଼େ ଆଖିବୁଲେଇ ଆଣିଲି । ଦେଖିଲି ଭିତରେ ମୋ ଡାହାଣ ପଟ କୋଣରେ ମୋତେ କିଛି ମାତ୍ରାରେ ପଛ କରି ଲୋକଟିଏ ବସିଛି । ଚାରୋଟି ଚା' କପ୍ ଖାଲି ପଡ଼ିଛି ତା' ସମ୍ମାରେ ।

କୋଣ ଟେବୁଲ ଓ ଚାରୋଟି ଖାଲି ଚା' କପ୍... ଚହଲିଗଲା ମୋ ଚେତନା । ସ୍ମୃତିମାନେ କଡ଼ ଲେଉଟିବାକୁ ଆରମ୍ଭ କଲେ ଭୟଙ୍କର ବିଷାକ୍ତ ସରୀସୃପମାନଙ୍କ ପରି ।

ଆଖିରେ ନାଚି ଉଠିଲା ମାର୍ଜିତ ବେଶ ପୋଷାକରେ ନିଜକୁ ହୀରୋ ମନେ କରୁଥିବା ଆମ ୟୁନିଭରସିଟିର ସତ୍ୟେନ୍ ହଜାରିକା କଥା । ସେ ପ୍ରତ୍ୟେକ ଦିନ ଲିଜର୍ ପିରିୟଡ଼ରେ ସେଣ୍ଟ୍ରାଲ କ୍ୟାଣ୍ଟିନ୍ ଆସେ ଓ କୋଣରେ ବସି କପ୍ ପରେ କପ୍ ଚାରିପାଞ୍ଚ କପ୍ ଚା' ପିଏ ।

ଏଭଳି କିଛି ଥର ତାକୁ ଦେଖିଥିଲି, ମାତ୍ର ଗୁରୁତ୍ୱ ଦେବାର କୌଣସି ପ୍ରସଙ୍ଗ ଥିବା ପରି ମୋର ମନେ ହୋଇନଥିଲା ।

ସେଦିନ କ୍ଲାସମେଟ ଶିଖା କ୍ଷଣକ ପାଇଁ ଲମ୍ବା ନିଃଶ୍ୱାସ ଛାଡ଼ି କହିଲା - ''ଜାଣିଚୁ ଆମ ୟୁନିଭରସିଟି ହୀରୋ ତୋ ନାଁ କ'ଣ ଦେଇଛି ?''

''ୟୁନିଭରସିଟି  ହୀରୋ କିଏ ? ଆଉ ସେ କାହିଁକି ମୋ ନାଁ ଦେବ ?'' ବିସ୍ମିତ ଗଳାରେ ଓଲଟା ପ୍ରଶ୍ନ କଲି ।

''ତାକୁ ଚିହ୍ନିନୁ ! ଆରେ ସତ୍ୟେନ ହଜାରିକାକୁ ଚିହ୍ନିନୁ ତ ଏଠି କି ପାଠ ପଢୁଛୁ !'' ମୋ ବିସ୍ମୟ ଅପେକ୍ଷା ତା ବିସ୍ମୟର ମାତ୍ରା ଅଧିକ ଥିଲା ମୋ ଅଜ୍ଞତା ପାଇଁ ।

'କେଉଁ ସତ୍ୟେନ୍ ହଜାରିକା ?' ମୋ କଣ୍ଠର ଦୃଢ଼ ଅଜ୍ଞତା ଶିଖାକୁ କ୍ଷଣକ ପାଇଁ ଆଶ୍ଚର୍ଯ୍ୟ ଚକିତ କରିଦେଲା ।

''ଧେତ୍ ସେଣ୍ଟ୍ରାଲ କ୍ୟାଣ୍ଟିନ୍‌ରେ ଯିଏ ଚା ପରେ ଚା' ଯିଏ ପିଏ କୋଣରେ ବସି କରି । କେତେଥର ଦେଖିଲେ ମନେପଡ଼ିବ !' ମୋ ଉପରେ ଆକ୍ରମଣ କଲାପରି ପ୍ରଶ୍ନ କଲା ।

'ଓଃ ସେଇ ତା' ହେଲେ ୟୁନିଭରସିଟିରେ ହୀରୋ । ଆଚ୍ଛା ! କ'ଣ ହେଲା ତାପରେ ? 'ଆଶ୍ୱସ୍ତ ହେବା ପରି କହିଲି ।

'ତୋ ନାଁ ଦେଇଛି ଅନୈଶତ ରାଣୀ ।' ହସିଲା ଶିଖା । ''ଅଦ୍ଭୁତ ନାଁ ! ଆଉ ତାକୁ କିଛି ମିଳିଲା ନାହିଁ । ବଦ୍ଧ ପାଗଳଟେ କି ? ନା କବିତା ଲେଖେ ... '' ମୁଁ ପରିହାସ କଲି ।

'ଜାଣିଛୁ ତୁ ଅନେଶତ ରାଣୀର ଅର୍ଥ କଣ ? ତୁ ହେଲୁ ତା'ର ଅନେଶ୍ୱତ ନମ୍ବର ପ୍ରେମିକା ।'' ଶିଖାର କଣ୍ଠରେ ସାମାନ୍ୟ ମୁରବି ପଣିଆ ଥିଲା ।

ମୋ ମୁହଁ ଶୁଖିଗଲା ଠିକ୍ ଝଡ଼ତୋଫାନରେ ଆମ୍ବ ବଉଳ ମାଟିରେ ଝରି ଶୁଖିଗଲା ଭଳି । ନୀରବରେ ଶିଖା ସହ ଚାଲିଲି । ଏ ପ୍ରସଙ୍ଗରେ ଆମେ ସପ୍ତାହେ ପର୍ଯ୍ୟନ୍ତ ଆଦୌ କଥା ହୋଇ ନଥିଲୁ ।

ଅନେଶ୍ୱତ ରାଣୀ ନାଁ କାହିଁକି ସତ୍ୟେନ୍ ହଜାରିକା ଦେଲା । ଏଥିପାଇଁ କିଛି ରାତି ବିବ୍ରତ ଓ ଅନ୍ୟମନସ୍କ ହୋଇପଡ଼ିଥିଲି । ଅନେଶ୍ୱତ ନମ୍ବର ପ୍ରେମିକା ! ଫୁ... ଯାହା ସହ ପଦେ କଥା ହୋଇନାହିଁ, ଯାହାପ୍ରତି ଆଦୌ ଗୁରୁତ୍ୱ ଦେଇନାହିଁ, ଯାହାକୁ ଭଲ କରି ଚିହ୍ନେନା ତା'ର ମୁଁ ପ୍ରେମିକା ! ପାଗଳ ବୋଧେ । ନଚେତ୍ ଏପରି ଖିଆଲ କାହା ମୁଣ୍ଡରେ ପଶିବ ଯେ ?

ମୁଁ ଆଉ କ୍ୟାଣ୍ଟିନ୍ ଯାଉ ନଥିଲି । ଇଚ୍ଛା ନଥିଲା । ଏଭଳି ଅଭଦ୍ର ତଥା ଉଦ୍ଭଟ ମାନସିକତା ଥିବାଲୋକ ସହ ସାମ୍ନାସାମ୍ନି ହେଉ ବୋଲି । ସେଦିନ ଶିଖା ସହ ଫେରୁଛି । ହଠାତ୍ ବାଁ ପଟ ୟୁକାଲିପଟାସ ବଣ ଭିତରେ ଯାଇ ଥିବା ସରୁ ପାଦ ଚଲା ରାସ୍ତାରୁ ବାହାରି ପଡ଼ିଲା ସେ ।

ହସିଦେଇ ପଚାରିଲା- ''କ'ଣ ଆଉ କ୍ୟାଣ୍ଟିନ୍ ଆସୁନ ଅନେଶତ ରାଣୀ'' ? ତା' ହସ ଯେମିତି ମୁଠା ମୁଠା ନୁଆଁ ଝୁଲା ପରି ମୋ ସାରା ଦେହରେ ଛିଟିକି ପଡ଼ିଲା । ''ଆଚ୍ଛା ମୁଁ କ'ଣ ସ୍ମାର୍ଟ, ସୁନ୍ଦର ନୁହେଁ ! ତୁମକୁ ପ୍ରପୋଜ କଲେ ମନା କରିବ କି ?'' କହୁ

କହୁ ଉଚ୍ଛଳ ହସି ଉଠିଲା ସେ ।

ଅନୁଭବ କଲି ମୋ ମୁହଁ ପୋଡ଼ିଯାଉଛି ତା' ହସର ଅଗ୍ନିଶିଖାରେ । ସେଇ ରାସ୍ତାରେ ଲଥ କରି ବସିପଡ଼ିଲି । ସଚେତନ ହୋଇ ଶିଖା ସହ କେମିତି ଫେରିଲି ସେ କଥା ଜାଣେନା ।'

'ନିଜ ସ୍ମୃତି ରୋମନ୍ଥନରେ ବିଭୋର ଥିବା ବେଳେ ଟେବୁଲଟିକୁ ଆଉଥରେ ପୋଛିଦେଇ ମାଲିକଟି ଚା ରଖିଲା । ଓଃ - ମୁଁ ଚା କଥା ଭୁଲିଯାଇଥିଲି । ପିଇବା ମାତ୍ରକେ ଅନୁଭବ କଲି ଡ୍ରାଇଭର କଥାରେ ସତ୍ୟତା ଥିଲା । କପ ରଖି ଦେଇ ଯିବାକୁ ଉଠିଲି । ଚେୟାର ଘୁଞ୍ଚାଇବାର ଶବ୍ଦରେ ଲୋକଟି ବୁଲିପଡ଼ି ମତେ ଚାହିଁଲା ।

ମୋ ଦୃଷ୍ଟି ଲୋକଟିର ମୁହଁରେ କେନ୍ଦ୍ରୀଭୂତ ହେବା ମାତ୍ରକେ ମୁଁ ସ୍ଥିର ହୋଇଗଲି । ମନେ ହେଲା ସମଗ୍ର ବାୟୁମଣ୍ଡଳ ସ୍ଥିର । ଆକାଶ ଆହୁରି ଶୂନ୍ୟ । ପାଦତଳର ମାଟି ଠାରୁ ମୁଁ ବହୁ ଉଚ୍ଚରେ ଝୁଲୁଛି । ସମଗ୍ର ପୃଥିବୀ ଏବେ ନିସ୍ତବ୍ଧ । ନିଜକୁ ସମ୍ଭାଳି ନେବାର ସେ ମୁହୂର୍ତ୍ତଟି ମରଣାନ୍ତକ ଥିବା ପରି ଅନୁଭବ କଲି ।

ବୁଲିପଡ଼ି ମୋତେ ଚାହୁଁଥିବା ଲୋକଟି ହିଁ ସତ୍ୟେନ ହଜାରିକା ଥିଲା ।

କ୍ଷଣକ ମଧ୍ୟରେ ମୋ ଅତୀତ ଓ ଅସ୍ତିତ୍ୱ ମୋତେ ରୋକି ନେଲା । ଦୃଢ଼ ପାଦରେ ତା' ଟେବୁଲ ପାଖରେ ପହଞ୍ଚିଗଲି । ପ୍ରଶ୍ନ କଲି - "ମୋତେ ଚିହ୍ନିପାରୁଚ ?" ସେ ଆବାକାବା ହୋଇ ଅସମ୍ଭବ ହେଲା, ଆଖିରୁ ଝରୁଥାଏ ବିସ୍ମୟ ।

"ମୁଁ ତୁମ ଅନେଶତ ରାଣୀ... ମନେପଡ଼ିଲା ?" ମୋ କଣ୍ଠରେ ତାଚ୍ଛଲ୍ୟ ଫୁଟି ଉଠିଲା ।

'ଓଃ ହଁ ହଁ... ଲାଗୁଥିଲା ଚିହ୍ନା ଚିହ୍ନା ପରି । ବସ, ଚା' ପିଇବ ।' ସେ ଅନୁରୋଧ କଲା ।

ମୁଁ ବସିଲି । ଚା' ପିଇବାକୁ ନୁହେଁ ବରଂ ଅତୀତରେ ହିସାବ କିତାବ ଆଜିର ବର୍ତ୍ତମାନ ପୃଷ୍ଠାରେ କରିବା ପାଇଁ ।

ତା ମୁହଁକୁ ସାମ୍ନା ସାମ୍ନି ଦେଖିଲି । ଅନେକ ଦିନ ହେଲା ଦାଢ଼ି କଟା ହୋଇନାହିଁ । ଆଖି ଦୁଇଟି ବିବର୍ଣ୍ଣ ଦିଶୁଛି, ମଥାର କେଶ ଅର୍ଦ୍ଧାଧିକ ପାଚିଯାଇଛି । ସମଗ୍ର ଶରୀର ପାଣ୍ଡୁର ଅବସନ୍ନ । ଦେହରେ ଅତି ସାଧାରଣ ପ୍ୟାଣ୍ଟସାର୍ଟ ।

"ଅନେକ ଦିନ ପରେ ଦେଖା ହେଲା ନୁହେଁ କି ? କେଉଁଠି ଥିଲ ଏତେଦିନ ?" ନୀରବତା ଭାଂଗିବାକୁ ସେ ଗତାନୁଗତିକ ପ୍ରଶ୍ନ କଲା ।

"କାହିଁ ଭାବିଥିଲ ଜୀବନରେ କେବେ ବି ସାକ୍ଷାତ ହେବ ନାହିଁ ବୋଲି ! ଯେଉଁଠିଥାଏ ନାହିଁ, କି ତୁମ ଜୀବନ ପରିଧିରେ କେବେ ବି ନଥିଲି କିମ୍ବା ନାହିଁ ।" ବ୍ୟଙ୍ଗ ଫୁଟି ଉଠିଲା ମୋ କଣ୍ଠରେ ।

"ଓଃ ପୁରୁଣା କଥାକୁ ମନେ ରଖିଛ ।" ସେଇଟା ପ୍ରଶ୍ନକି ସ୍ୱଗତୋକ୍ତି ହେଲା ଅବୁଝା ଲାଗିଲା ମତେ ।

'ପୁରୁଣା କେଉଁଟା ? ସମୟ ଅତିକ୍ରାନ୍ତ ହେଲେ ଭାବୁଛ କି ଛାତି ତଳର କ୍ଷତ ମାନେ ଚିହ୍ନ ରଖନ୍ତି ନାହିଁ । ଅତୀତ ମଣିଷର ବଡ଼ ପରିଚୟ । ଆଉ ତୁମେ ମୋ ଅତୀତକୁ ଯେଉଁ ମୋଡ଼ ଦେଇଥିଲ ତାକୁ ଭୁଲି ନାହିଁ । ତୁମେ କ'ଣ ଭୁଲିଛ କି ! ପାଲଟା ପ୍ରଶ୍ନ କଲି ।

ପ୍ରତିଟି ଶବ୍ଦ ଯେମିତି ତୀର ପରି ମୋ କଣ୍ଠରୁ ଭୟଙ୍କର ବେଗରେ ବାହାରି ଯାଉଥିଲା ।

ସେ କିଛି କହିଲାନି । ତା' ପାଖରେ କି ଉତ୍ତର ଥିଲା ଜବାବ ସୱାଲ କରିବା ପାଇଁ ଯେ ?

ସେଦିନମାନଙ୍କରେ ସତ୍ୟେନ ହଜାରିକା ମୋତେ ମୋଟେ ଭୟଙ୍କର ଅକ୍ଟୋପାସ୍ ପରି ମନେ ହେଉଥିଲା । ବାଟରେ ଘାଟରେ 'ଅନେଶତ ରାଣୀ' କହି ମଜା କରୁଥିଲା ଓ ସାଂଗମାନେ ସେଇ ନା'ରେ ମଧ୍ୟ ସମ୍ବୋଧନ କରୁଥିଲେ ।

ଇତି ମଧ୍ୟରେ ଦୁଇବର୍ଷ ବିତି ଯାଇଥିଲା । ଫାଇନାଲ ପରେ ଆମେ ହଷ୍ଟେଲ ଛାଡ଼ି ଘରକୁ ଯିବା ପାଇଁ ପ୍ରସ୍ତୁତ ହେଲାବେଳେ ବସ୍ ଷ୍ଟପରେ ଧୂମକେତୁ ପରି ଆତ୍ମପ୍ରକାଶ କଲା । ପାଖକୁ ଆସି ପ୍ରଶ୍ନ କଲା - ''କ'ଣ ମତେ ଦେଖା ନକରି ଏମିତି ଚାଲିଯିବି ଅନେଶତ ରାଣୀ ? ଆଜି ଚାଲିଯାଉଛି । ଦେଖିବ ମୁଁ ଦିନେ ବାହାଘର ପ୍ରସ୍ତାବ ନେଇ ତୁମ ପାଖରେ ପହଞ୍ଚିବି ।''

ମନେ ହେଉଥିଲା ଦୁଇ ଚାପୁଡ଼ା କଷି ଦେବାକୁ । ମାତ୍ର ନିଜ ଅସହାୟତାରେ ଆଖିରେ ଲୁହ ଆସିଲା । ଭାଗ୍ୟ ଭଲ ବସ୍ ଆସିଲା ଓ ବ୍ୟାଗପତ୍ର ଧରି ଉଠିଗଲି । ଥରେ ମାତ୍ର ପଛକୁ ଚାହିଁବା ପରି ସତ୍ ସାହସ ମୋର ନଥିଲା ।

ଘରେ ପହଞ୍ଚିବା ପରେ ଶାନ୍ତିରେ ନିଃଶ୍ୱାସ ନେଲି ଓ ମନେହେଲା ଘର ସବୁଠୁ ନିରାପଦ ଓ ଶାନ୍ତିସ୍ଥଳ । ଅନ୍ତତଃ ସେଠି ସତ୍ୟେନ ହଜାରିକା ପରି ଉଦ୍ଭଟ ଜୀବଟେ ଆଖପାଖରେ ନାହିଁ ।

ଅତୀତକୁ ଭୁଲିଯିବା ବେଳେ ପୁଣିଥରେ ସତ୍ୟେନ ହଜାରିକା ସହ ସାମ୍ନାସାମ୍ନି ହେବା ପରି ଦୁର୍ଭାଗ୍ୟ ପହଞ୍ଚିଗଲା ।

ସେଦିନ ବିବାହ ଲଗ୍ନ ଅତିକ୍ରାନ୍ତ କରିବା ପୂର୍ବରୁ ମାତ୍ର କୋଡ଼ିଏ ହଜାର ଟଙ୍କା ପାଇଁ ବେଦୀରୁ ବର ଫେରିଗଲା ଓ ମଙ୍ଗୁଳା କନ୍ୟା ଭାବରେ ଲୁହ ବ୍ୟତୀତ ମୋ ପାଖରେ ଆଉ କିଛି ଅବଶିଷ୍ଟାଂଶ ନଥିଲା । କିଏ ନିନ୍ଦିଲା ମୋ ଦୁର୍ଭାଗ୍ୟକୁ ତ କିଏ ବରପକ୍ଷକୁ ଅଭିସମ୍ପାତ ବର୍ଷଣ କଲା । ଆତ୍ମୀୟମାନେ ପ୍ରସ୍ତାବ ଦେଲେ ମୋ ପରିଚିତ ଓ ପସନ୍ଦର କୌଣସି ପୁଅ ସହିତ ବିବାହ ସମ୍ପନ୍ନ ହେଲେ ଏ ଲଜ୍ଜାଜନକ ପରିସ୍ଥିତିରୁ ଉଦ୍ଧାର ମିଳିବ । ମା' ଚେତନା ହରାଇ ଭୂମିଚ୍ୟୁତା ଲତା ପରି ଲୋଟିଯାଇଥିଲା ବର ଫେରିଯିବା ସମୟରୁ ଓ ବାପା କାଠ ପରି ଶୂନ୍ୟ ଦୃଷ୍ଟିରେ ବସି ରହିଥିଲେ ସେମିତି ।

ମୋ ପାଖରେ ଆଉ କିଛି ଚାରା ନଥିଲା । ସମସ୍ତଙ୍କ ମଙ୍ଗଳ ଓ ଘରର ମାନ ମର୍ଯ୍ୟାଦା ପାଇଁ ସେଦିନ ଦ୍ୱାରସ୍ଥ ହେଲି ସତ୍ୟେନ ହଜାରିକାର ଦୀର୍ଘ ଚାରିଘଣ୍ଟାର ବସ୍ ଯାତ୍ରାପରେ ।

କବାଟରେ ନକ୍ କରିବା ମାତ୍ରକେ ସେ ଦ୍ୱାର ଖୋଲିଲା । କ୍ଷଣକ ପାଇଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଉଠିଲା ମୋ ଆକସ୍ମିକ ଉପସ୍ଥିତିରେ ।

'ଓଃ... ସୌଭାଗ୍ୟ ଯେ ମୋ ଅନେଶତ ରାଣୀ ଏବେ ମୋ ସାମ୍ନାରେ । କୁହ, ଏ ଦାସ ତୁମ ପାଇଁ କ'ଣ କରିପାରେ ! କହିବ ତ ପ୍ରାଣ ଦେଇଦେବି ।' ତା' ଥଟ୍ଟାକୁ ଅନୁଭବ କରି ଦୁଃଖୀ ହେବାର ମାନସିକତା ଟିକିଏ ମୋ ପାଖରେ ଆଉ ନଥିଲା ।

ବରଂ ସିଧାସଳଖ ପ୍ରଶ୍ନକଲି - ''ପଢ଼ିଲା ବେଳେ ବିବାହ ପାଇଁ ଅନେକଥର

ପ୍ରପୋଜ କରିଥିଲା ।''

ସେ ମୋ ପାଟିରୁ କଥା ଛଡ଼େଇ ନେଇ କହିଲା - 'ଆଉ ତୁମେ ମୋ ପ୍ରସ୍ତାବକୁ ଗ୍ରହଣ କରି ନଥିଲ ।''

''ଆଜି ମୁଁ ରାଜି ସତ୍ୟେନ୍ ।'' ମୋ ଦୃଷ୍ଟି ନିମ୍ନାଭିମୁଖୀ ହୋଇସାରିଥିଲା ଉଚ୍ଚାରଣର ତାଳରେ ।

'ସତ କହୁଛ ଅନେଶତ ରାଣୀ !' ଅବିଶ୍ୱାସର ହସ ହସିଲା ଉଚ୍ଚ କଣ୍ଠରେ ।

ସେ ପ୍ରବଳ ହସରେ ଭାଙ୍ଗିପଡ଼ିଲା ଘର ଭିତରେ ସଞ୍ଚିତ ନୀରବତା, ଛିନ୍ନ ଛିନ୍ନ ହେଲା ଶାନ୍ତ ପରିବେଶ । ଆକାଶ, ପାତାଳ ଓ ପୃଥ୍ୱୀ ବିଦାରିତ ହେବା ପରି ମୋର ମନେ ହେଲା । ଏ ହସ ଆନନ୍ଦରେ ନୁହେଁ, ବରଂ ପ୍ରଚଣ୍ଡ ଉପହାସର, ପ୍ରତିଶୋଧ କ୍ରୁର ହସ ପରି ମୋ ସମଗ୍ର ଶରୀରକୁ ବିଦ୍ଧ କଲା ।

କିଛି ମୁହୂର୍ତ୍ତ ପରେ ସେ ଥମିଯାଇ ଉତ୍ତର ଦେଲା-'' ବିବାହ ! ସେ ଦିନ ତ ମୁଁ ସତରେ ପ୍ରପୋଜ କରି ନଥିଲି କିମ୍ବା ଆଜି ମଧ୍ୟ କରୁନାହିଁ । ତୁମ ନିଟକରେ କ'ଣ ଅଛି ମୋ ଉଜ୍ଜ୍ୱଳ ଭବିଷ୍ୟତର ଲକ୍ଷ୍ୟ ସିଦ୍ଧି ପାଇଁ ? ସାମାଜିକ ପ୍ରତିଷ୍ଠା, ସଂପଦ, ଆଭିଜାତ୍ୟ, ଅତ୍ୟାଧୁନିକତା- କ'ଣ ଅଛି ତୁମର ? ସେ ଦିନ ଏମିତି କେତେ ଝିଅଙ୍କୁ ମଜା କରି ପ୍ରପୋଜ କରିଥିଲି । ତୁମେ ବି ସେଥିରେ ଥିଲ । ଆଜି ସେ କଥାକୁ ସତ ଭାବି ମୋ ପାଖକୁ ଧାଇଁ ଆସିଛ । ସିଲି ଗାର୍ଲ !''

ମୁଁ ନିର୍ବାକ ହୋଇ ଚାହିଁ ରହିଲି ତା' ମୁହଁକୁ । ମଣିଷମାନେ କେତେ ପ୍ରକାର ମୁଖା ପିନ୍ଧିଥାନ୍ତି କି ଯାହାକୁ ପ୍ରତିମୁହୂର୍ତ୍ତରେ ବଦଳା ଯାଇପାରେ ପରିବେଶ, ପରିସ୍ଥିତି ସହ ଖାପଖୁଆଇବାକୁ ! ଏ ମାଟିର ମଣିଷ ରାକ୍ଷସୀ ମାୟା ପରି ଏତେ ଛଳ କରିପାରେ !! ନିଜକୁ ସମ୍ଭାଳି ନେବାକୁ କାନ୍ଥରେ ଭରା ଦେଇ ଠିଆ ହେଲି କ୍ଷଣକ ପାଇଁ । ଦୁଃଖ, ବେଦନା, ଅସହାୟତା, ଅନୁତାପର ସହସ୍ରବାହୁ ମୋତେ ଶ୍ୱାସରୁଦ୍ଧ କରିପକାଇଲା । ସାମ୍ନାର ଦୃଶ୍ୟ ମୋତେ ଝାପ୍‌ସା ଦିଶିଲା । ଅନୁଭବ କଲି ଲୁହର ଢୁଆର ମୋ ଆଖିକୁ ସମୁଦ୍ରରେ ପରିଣତ କରିଦେବ । ମାତ୍ର ନିଜକୁ ଚାପି ନେଲି ଯେମିତି ନିଃସହାୟ ଲୁହ ବିନ୍ଦୁଏ ମୋ ଆଖିରୁ ଝରି ନପଡୁ । ସତ୍ୟେନ ହଜାରିକାକୁ ଥରଟିଏ ପାଇଁ ଚାହିଁଲି । ସାରା ମୁହଁରେ ଆତ୍ମଗର୍ବ ଚମକି ଉଠିଥିଲା । ଓଠ କୋଣରେ ଲାଖି ରହିଥିଲା ଟେନାଏ ଉପହାସ ।

ମୁହଁ ଫେରାଇ ରାସ୍ତାରେ ପାଦଦେଲି । ଖରାଧୁଆ ରାସ୍ତାରେ ଚାଲିବାବେଳେ ପ୍ରତିଜ୍ଞା କଲି ନିଜକୁ ଗଢ଼ିବି ଓ ନିଜର ଅସ୍ତିତ୍ୱକୁ ଜାହିର କରିବି । ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବି । ନିଜର ପରିଶ୍ରମ ବଳରେ ସାଉଁଟି ଆଣିବି ଧନସଂପଦ, ସାମାଜିକ ପ୍ରତିଷ୍ଠା ଓ ଆଭିଜାତ୍ୟ ।

ଗୋଟିଏ ସ୍ୱପ୍ନ ପରି ଦୀର୍ଘ ଦଶ ବର୍ଷ ବିତିଯାଇଛି । ନିଜର କଠୋର ପରିଶ୍ରମ ନିଷ୍ଠା, ଉଦ୍ୟମରେ ଗଢ଼ି ଉଠିଛି ପାଞ୍ଚୋଟି ବିଶାଳକାୟ ଇଣ୍ଡଷ୍ଟ୍ରି । କୋଡ଼ିଏ ହଜାର କର୍ମଚାରୀଙ୍କର ପରିଶ୍ରମ ଓ ସହଯୋଗ ଆଣିଦେଇଛି ସଫଳତା ।

ସେଦିନ ବିବାହ ବେଦୀରୁ ବର ଫେରି ଯାଇନଥିଲେ କିମ୍ବା ସତ୍ୟେନ୍ ହଜାରିକା ମୋ ପ୍ରସ୍ତାବକୁ ସ୍ୱୀକାର କରିନେଇଥିଲେ ମୁଁ ଆଜି ସଫଳତାର ଶୀର୍ଷରେ ପହଞ୍ଚିପାରିନଥାନ୍ତି । ବରଂ ଗୋଟିଏ କ୍ରୀତଦାସୀରେ ପରିଣତ ହୋଇଥାନ୍ତି । ପଇସାଟିଏ ଖର୍ଚ୍ଚ କରିବାକୁ ସ୍ୱାମୀର

ଅନୁମତି ଲୋଡୁଥାନ୍ତି । ବ୍ୟକ୍ତିଗତ ମତ, ଇଚ୍ଛା ଆକାଂକ୍ଷା କବର ନେଇଥାନ୍ତା ସ୍ୱାମୀର ଅହଙ୍କାର ତଳେ ।

'ଚା ନିଅ, ଥଣ୍ଡା ହୋଇଯିବ ସତ୍ୟେନ୍ ଅନୁରୋଧ କଲା ।

ମୁଁ ତା' କଣ୍ଠସ୍ୱରରେ ବିସ୍ମୃତିର ଅତଳଗହ୍ୱରରୁ ବର୍ତ୍ତମାନକୁ ଫେରିଯିବା ପରି ଅନୁଭବ କଲି ।

'ଧନ୍ୟବାଦ, ମୁଁ ଚା' ପିଇସାରିଛି । ବାରମ୍ବାର ପିଇବାର ସଉକ ମୋର ନାହିଁ ।' ଈଷତ୍ ଉଷ୍ମ କଣ୍ଠରେ ଉତ୍ତର ଦେଲି ।

ଚା' ପିଉପିଉ ସେ ପ୍ରଶ୍ନ କଲା - 'ଆଉ ଏବେ କ'ଣ କରୁଛ !' ଗଭୀର ଦୃଷ୍ଟିରେ ଥରେ ତାକୁ ଚାହିଁଲି । ତା'ର ସ୍ୱାଭାବିକ ପ୍ରଶ୍ନ ମୋତେ ଅଦ୍ଭୁତ ମନେହେଲା । ଶାଣିତ କଣ୍ଠରେ କହିଲି - 'ଭାବୁଛ କି ତୁମ ଦ୍ୱାରା ପ୍ରତ୍ୟାଖାତ ହୋଇ ସ୍ମୃତିର କବର ନିକଟରେ ଲୁହର ଦୀପାଳି ଜାଳୁଛି ? ସେଦିନ ପଚାରିଥିଲା ନା ମୋ ପାଖରେ କ'ଣ ଅଛି । ଆଜି, ଧନସମ୍ପଦ, ସାମାଜିକ ପ୍ରତିଷ୍ଠା ଓ ଆଭିଜାତ୍ୟର ପର୍ବତ ଉପରେ ବସିଛି ।'

ବୟଟି ବିଲ୍ ନେଇ ଆସୁଥିବାର ଦେଖି ନୀରବି ଗଲି । ସେ ବିଲ୍ ରଖିଦେଲା ମୋ ସାମ୍ନାରେ ଓ ଫେରିଗଲା ।

ମୁଁ ଭ୍ୟାନିଟି ବ୍ୟାଗ ଖୋଲିଲି ସତ୍ୟେନ୍ ହଜାରିକାର ସାମ୍ନାରେ । ମୋଟା ମୋଟା ଟଙ୍କା ବଣ୍ଡଲ କେତୋଟି ସ୍ପଷ୍ଟ ଦିଶିଲା ବ୍ୟାଗ୍ ଭିତରୁ ।

ସେ ଇତସ୍ତତଃ ହେଲା କିଛି କହିବ ବୋଲି । କିଛି କହିବା ପୂର୍ବରୁ ମୁଁ କହିଲି - ''ବିଲ୍ ମୁଁ ଭରିବି । ଜୀବନରେ ତୁମକୁ ଥରଟିଏ ଚା' ପିଆଇବାର ସୌଭାଗ୍ୟ ମୋର ହେଉ ।''

''ଉପହାସ କରୁଛ'' ସେ ବାକ୍ୟ ପୂରା କରିପାରିଲା ନାହିଁ । ଅବଶିଷ୍ଟ ଅନୁଚ୍ଚାରିତ ଶବ୍ଦ ଗଳାରେ ଛନ୍ଦି ହୋଇଗଲା ।

'ମୋ ଭଳି ସାମାନ୍ୟ ନାରୀଟିଏ ତୁମ ଭଳି ସମ୍ରାଟଙ୍କୁ ଉପହାସ କରିବାର ଧୃଷ୍ଟତା କରିବ !' ମୋ ଗଳାରୁ ବ୍ୟଙ୍ଗ ଶବ୍ଦ କେତୋଟି ଛିଟିକି ପଡ଼ିଲା ।

ଡ୍ରାଇଭର ନିକଟକୁ ଆସୁଥିବାର ଦେଖି ସଚେତନ ହେଲି ଯେ ମୋର ଫେରିବାର ଅଛି ଏବଂ ମୋ ମନୋଭାବର ତୀକ୍ଷ୍ଣତା, ଉଷ୍ମତାକୁ ସେ ଯେପରି ଅନୁଭବ ନ କରୁ । ସତ୍ୟେନ୍ ହଜାରିକୁ ଦେଖି ମୁଁ ସଂପୂର୍ଣ୍ଣ ବିସ୍ମୃତ ହୋଇଯାଇଥିଲି ମୋ ସ୍ଥିତି ଓ ସାମାଜିକ ପ୍ରତିଷ୍ଠା ପ୍ରତି । ମୁଁ ଉଠିଲି ଯିବାକୁ । ସତ୍ୟେନ୍ ମଧ୍ୟ ଠିଆ ହେଲା । ହଠାତ୍ ମୋ ପାଟିରୁ ବାହାରିଲା- 'କେଉଁଠିକୁ ଯିବ ?'

'ନ୍ୟୁ କ୍ୟାପିଟାଲ୍ ହସ୍ପିଟାଲକୁ ।' ଉତ୍ତର ଦେଲା ।

'ମୁଁ ସେଇ ରାସ୍ତାରେ ଯିବି । ଚାହିଁ ତ ମୋ ସାଙ୍ଗରେ ଆସିପାର ।' ନିରାସକ୍ତ ଭାବେ କହିଲି । ଯେମିତି ସେ ମୋ ସହିତ ଆସିବା କିମ୍ବା ନ ଆସିବାରେ ମୁଁ ପରୱା କରେ ନାହିଁ ।

ଭାବୁଥିଲି ମୋ ନିରାସକ୍ତତାକୁ ନିବୃତ୍ତ କରିବ ମୋ ସହଯାତ୍ରୀ ହେବାକୁ । ମାତ୍ର ସେ ନୀରବରେ ଗାଡ଼ିରେ ବସିଲା ।

ଗାଡ଼ି ଚାଲୁ ଥିବା ବେଳେ ମୁଁ ନିଜ ଉପରେ ବିରକ୍ତ ହେଲି ଯେ ଏଭଳି ଲୋକଙ୍କୁ

କାହିଁକି ଲିଫ୍ଟଟି ଦେଲି, ଯିଏ କି ମୋ ଅତୀତରେ ଏକ କ୍ଷତାକ୍ତ ଦାଗ ଆଙ୍କି ଦେଇଛି, ମୋତେ ଲଜ୍ଜିତ ଓ ଉପହାସିତ କରିଛି ପ୍ରତି ମୁହୂର୍ତ୍ତରେ ।

ହସ୍ପିଟାଲ ସାମ୍ନାରେ ଗାଡ଼ି ରହିଲା । ସେ ତଳକୁ ଓହ୍ଲାଇଲା । ମୁଁ ପ୍ରଶ୍ନ କଲି କାହାକୁ ଦେଖା କରିବ ଏଠି ?'

ସେ ମ୍ଳାନ ହସ ହସିଲା, ଠିକ୍ ଗୋଧୂଳିର ସ୍ତିମିତ ଆଲୋକ ରେଖାପରି ସେ ହସ । କରୁଣ ଦିଶିଲା ଅତୀତରେ ନିଜକୁ ସମ୍ରାଟ ମନେ କରୁଥିବା ଗର୍ବିତ ମୁହଁଟି । 'କାହାକୁ ଆଉ ! ନିଜ ସହ ନିଜକୁ ଦେଖାକରିବାର ଆଜୀବନ ପାଳି ମୋର ।'

ରୁମାଲ ବାହାର କରି ସେ ମୁହଁ ପୋଛିଲା । ଗଳା ପରିଷ୍କାର କରି କହିଲା- 'ମାସେ ହେବ ମୁଁ ଏଠି ଆଡ୍‌ମିଟ୍ ହୋଇଛି । କାଲି ମୋର ଅପରେସନ । ଜଣେନା ଆସନ୍ତା ସକାଳର ସୂର୍ଯ୍ୟଙ୍କୁ ମୁଁ ଦେଖିବି କି ନାହିଁ ।'

ସେ ମତେ ପଛ କରି ଚାଲିଗଲା । ଅବସନ୍ନ ପଦପାତରେ ଜୀବନ ପ୍ରଦୀପର ନଷ୍ଟ ସମୟକୁ ବାରିପାରୁଥିଲି ।

ଡ୍ରାଇଭର ଗାଡ଼ି ଷ୍ଟାର୍ଟ କଲା ।

'ଗାଡ଼ି ଆଗରେ ପାର୍କ କର । ମୁଁ ଆସୁଛି ।' ଓହ୍ଲାଇଯାଇ ସିଧା ପହଞ୍ଚିଲି ରିସେପସନ୍ କାଉଣ୍ଟରରେ ।

'ସିଷ୍ଟର, ସତ୍ୟେନ ହଜାରିକା...' ପ୍ରଶ୍ନ କଲି ଡ୍ୟୁଟି କରୁଥିବା ସିଷ୍ଟରଙ୍କୁ ।

'ଥ୍ୟାଙ୍କ ଗଡ୍, ଏତେଦିନକେ ସତ୍ୟେନ୍ ହଜାରିକାକୁ କିଏ ଜଣେ ଖୋଜିଲା । ଆପଣ ତାଙ୍କର କିଏ ?' ସେ ଜେରା କଲା ପରି ପ୍ରଶ୍ନ କଲେ ।

'ରିଲେଟିଭ'-ଅଚାନକ ଉତ୍ତରଟିଏ କଣ୍ଠରୁ ଫୁଟି ଉଠିଲା । ନିଜ ଉତ୍ତରରେ ନିଜେ ବିସ୍ମିତ ହେଲି ।

ଆପଣମାନେ କେତେ ଦାୟିତ୍ୱହୀନ । ଲୋକଟିଏ ଜୀବନ ମୃତ୍ୟୁର ସନ୍ଧିକ୍ଷଣରେ । ଅଥଚ ଆପଣମାନଙ୍କର ଦେଖାଦର୍ଶନ ନାହିଁ । କି ରିଲେଟିଭ ହୋଇଛନ୍ତି ! କାଲି ସକାଳେ ସୁଦ୍ଧା ଅପରେସନ୍ ନ ହେଲେ ବଂଚିବାର ଆଶାକ୍ଷୀଣ । କେସ୍ ଭାରି ସିରିୟସ୍ । ଆପଣ ଏବେ ଟଙ୍କା ଡିପୋଜିଟ୍ କରନ୍ତୁ ।' ସେ କାଗଜ ପତ୍ର ଖୋଲିଲେ ମୋ ସାମ୍ନାରେ ।

'କେତେ ଟଙ୍କା !' ସ୍ୱତଃ ମୋ ହାତ ଭ୍ୟାନିଟି ବ୍ୟାଗ୍ ଖୋଲିବାକୁ ଚାଲିଗଲା ।

'ଏବେ ଲକ୍ଷେ ଟଙ୍କା ଡିପୋଜିଟ୍ କରନ୍ତୁ ।' କହି ଡିପୋଜିଟ୍ ଫର୍ମ ଭରିବାକୁ ଲାଗିଲେ ।

ସାମ୍ନାରେ ଟଙ୍କା ବଣ୍ଡଲ ରଖିଦେଲି । ସିଷ୍ଟର ହିସାବ କରୁ କରୁ ସ୍ୱଗତୋକ୍ତି କଲେ - 'ଓଃ ଆମେ ତ ଭାବୁଥିଲୁ ଲୋକଟା ଯନ୍ତ୍ରଣାର ବିଷ ପିଇ ପିଇ ବିନା ଅପରେସନ୍‌ରେ ମରିଯିବ ବୋଲି । ନିଅନ୍ତୁ ଏ ରିସିପ୍ଟ ।'

'ଥାଉ ସତ୍ୟେନ୍‌କୁ ବରଂ ଦେଇଦେବ ।' କହି ଫେରିଲି ଗାଡ଼ିପାଖକୁ ।

ସଂଧ୍ୟାର କାକକୃଷ୍ଣ କବରୀ ସେତେବେଳେକୁ ଫିଟିପଡ଼ିଥିଲା ମାଟିରେ । ଗାଡ଼ିର ଗତି କେତେ ଥିଲା ମୋତେ ଜଣା ନାହିଁ । ହେଲେ ମୋ ମନର ଗତି ! ତାକୁ କଳନା କରିବାର ସାମର୍ଥ୍ୟ ସ୍ୱୟଂ ମୋର ନ ଥିଲା ।

ସତ୍ୟେନ୍ ହଜାରିକାର କାଲି ସକାଳେ ଅପରେସନ୍ ହେବ । ମସ୍ତିଷ୍କ ଭିତରେ

ଟ୍ୟୁମରମାନେ ଅକ୍ଟୋପାସ୍ କରି ତାକୁ ଜାବୁଡ଼ି ଧରି ମୃତ୍ୟୁର ସମୁଦ୍ର ମଧ୍ୟକୁ ନେବାକୁ ଚେଷ୍ଟା କରୁଛନ୍ତି ।

ଏଇ ଲୋକ ଯି କି ରାଜାର ଆଡ଼ମ୍ବର୍ଦା କରୁଥିଲା । ପ୍ରତ୍ୟେକ ଝିଅକୁ ନିଜ ପ୍ରେମିକା ଭାବେ ସଂଖ୍ୟାରେ ଚିହ୍ନାଇ ଦେଉଥିଲା - ସେଇ ଲୋକ କେଡ଼େ ଅସହାୟ ଏବେ ! ନାଁ ଆତ୍ମୀୟସ୍ୱଜନ ନା ସେ ପ୍ରେମିକାଙ୍କ ମଧ୍ୟରୁ କେହି ଜଣେ ନିକଟରେ ଅଛି ! ନାଁ ଅଛି ଧନର ପ୍ରାଚୁର୍ଯ୍ୟ !

ଆଜି ଅପରାହ୍ଣରେ ସତ୍ୟେନ୍ ହଜାରିକାକୁ ଦେଖି ମୋ ଭିତରେ ମଥା ଟେକିଲା ମହାମାନୀ ଦୁର୍ଯ୍ୟୋଧନ ଓ ଲଙ୍କାଧିପତି ରାବଣର ଆକାଶସ୍ପର୍ଶୀ ଅହଙ୍କାର । ପ୍ରତିଶୋଧର ଅଗ୍ନି ମୋ ଦେହ, ମନ, ହୃଦୟକୁ ପ୍ରଜ୍ୱଳିତ ଖାଣ୍ଡବ ବନରେ ପରିଣତ କରିଦେଇଥିଲା । ପ୍ରଚୁର ଘୃଣା ସତ୍ତ୍ୱେ ତା' ସାମ୍ନାକୁ ଯାଇଥିଲି ଓ ନିକଟରେ ବସି ତା' ମ୍ଳାନ ଚେହେରାକୁ ନିଜ ପ୍ରାଚୁର୍ଯ୍ୟ ଓ ଆଭିଜାତ୍ୟର ଚମକରେ ଆହୁରି ନ୍ୟୁନ ଓ ସାନ କରିବାକୁ ଚେଷ୍ଟା କରିଥିଲି । ମୋ ଚରମ ଦୁର୍ଦ୍ଦିନରେ ଯେଉଁ ଦାରିଦ୍ର ପାଇଁ ସେ ଧନୀ ହେବାର ସ୍ୱପ୍ନ ଦେଖି ମୋତେ ଉପହାସ କରିଥିଲା, ଆଜି ନିଜର ଧନର ପ୍ରାଚୁର୍ଯ୍ୟର ସାମାନ୍ୟ ଅଂଶକୁ ଖୋଲି ଦେଇଥିଲି ବ୍ୟାଗ୍ ଭିତରୁ ତା' ସାମ୍ନାରେ । ଲକ୍ଷ୍ୟ କରିଥିଲି ତା' ଆଖିରେ ଝଲମଲ କରିଥିଲା ମୋହ, ଜୀବନ ପ୍ରତି ଦୁର୍ନିବାର ମୋହ ।

ସେଦିନ ସେ ବୁଝି ନଥିଲା ବର ଫେରିଯିବା ପରେ ବରଣାକନ୍ୟାଟିର ଅସହାୟତା, ଯନ୍ତ୍ରଣା ଓ ଶୂନ୍ୟପଣକୁ । ବରଂ ଉପହାସ କରିଥିଲା ମୋ ଲୁହକୁ, ଅନୁରୋଧକୁ, ସ୍ଥିତିକୁ । ଆଜି ତାକୁ ବିଧି ନିର୍ଦ୍ଦିଷ୍ଟ ଉପଯୁକ୍ତ ଶାସ୍ତି ମିଳିଛି ।

ନିଜ ଚିନ୍ତାରେ ଚମକି ଉଠିଲି । ସତ୍ୟେନ୍ ହଜାରିକାର ଏଭଳି ଅବସ୍ଥାରେ ଯଦି ମୁଁ ଖୁସି, ପୂର୍ବ ପ୍ରତିଶୋଧ ନେବାରେ ମୋ ପ୍ରାଣ ଯଦି ଶାନ୍ତି ପାଉଛି ତେବେ ମୁଁ ଅଜାଡରେ ଲକ୍ଷେ ଟଙ୍କା କାହିଁକି ତା' ପାଇଁ ହସ୍ପିଟାଲରେ ଦେଇଆସିଲି ।

ଏ ପ୍ରଶ୍ନର ଉତ୍ତର ମୋତେ ଅଜଣା । ନିଜ ସହ ନିଜେ ଯୁକ୍ତି କରିବା ସଂପୂର୍ଣ୍ଣ ନିରର୍ଥକ । ସତ୍ୟେନ୍ ହଜାରିକା ସହ ମୋ ସଂପର୍କ ପ୍ରେମର, ଘୃଣାର, କି ପ୍ରତିଶୋଧର, କି ମାନବିକତାର ସେ କଥା କୌଣସି କାଳରେ ନିର୍ଣ୍ଣୟ କରିପାରିବି ନାହିଁ ।

ଏଭଳି ନିରର୍ଥକ ପ୍ରଶ୍ନୋତ୍ତରରେ ନିଜେ କ୍ଷତ ବିକ୍ଷତ ହେଲା ପରି ମନେକଲି । ଘର ସାମ୍ନାରେ ପହଞ୍ଚିସାରିଥିଲି । ପୋର୍ଟିକୋରେ ଗାଡ଼ି ଠିଆ ହେଲା । ମୁଁ ଓହ୍ଲାଇ ଯାଉ ଯାଉ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲି- 'କାଲି ସକାଳୁ ନ୍ୟୁ କ୍ୟାପିଟାଲ ହସ୍ପିଟାଲକୁ ଯାଇ ବୁଝି ଆସିବ ଅପରେସନ୍ ସକ୍‌ସେସ୍ ହୋଇଛି କି ନାହିଁ ?'

ଡ୍ରାଇଭର ମଥା ହଲାଇ ବୋଧେ ସମ୍ମତି ଦେଲା । ମାତ୍ର ପରବର୍ତ୍ତୀ କୌଣସି ଉତ୍ତରକୁ ଅପେକ୍ଷା ନକରି ମୁଁ ଘର ଭିତରକୁ ପାଦ ଦେଲି । ପଛରେ ରହିଗଲା ରାତ୍ରିର ଅଂଧକାର, ମୋ ଅତୀତର କିଛି ରକ୍ତାକ୍ତ ପୃଷ୍ଠାର ଛିନ୍ନାଂଶ ଏବଂ ସର୍ବୋପରି ସତ୍ୟେନ୍ ହଜାରିକା ।

# ସୂର୍ଯ୍ୟୋଦୟର ଲଗ୍ନ

ସିମି ପାଇଁ ଏ ସହର ମୋଟାମୋଟି ଭାବେ ନୂଆ ନ ହେଲେ ବି ଆଜି ତାକୁ ନୂଆ ଅନୁଭବଟିଏ ଆଚ୍ଛାଦିତ କରୁଥିଲା । ଟ୍ରେନ୍ ପୋଲ ଉପରେ ଚାଲିବା ଆରମ୍ଭ କଲା ।

ଏ ନଦୀଟି ଦୁଇଟି ସହରକୁ ବିଭକ୍ତ କରିଥିଲା ଓ ତହିଁ ଉପରେ ନିର୍ମିତ ସେତୁଟି ପୁନର୍ବାର ଉଭୟ ସହରକୁ ସଂଯୋଗ କରିବାର ଗୁରୁଦାୟିତ୍ୱଟି ନିର୍ବାହ କରୁଥିଲା । ସେ ସ୍ମିତ ହସିଲା । ପ୍ରକୃତି ଓ ମଣିଷ, ଉଭୟେ ଭାରି ରହସ୍ୟମୟ । ଭଙ୍ଗାଯୋଡ଼ାରେ ଉଭୟ ସିଦ୍ଧହସ୍ତ ।

ଟ୍ରେନ୍ ଝୁକ୍‌ଝୁକ୍ ହୋଇ ସେତୁଟିକୁ ଅତିକ୍ରମ କଲା । ଝରକା ଫାଙ୍କରୁ ଦିଶୁଛି ସହରରେ ଥିବା ବଡ଼ ମନ୍ଦିରଟିର ଚୂଡ଼ା । ସେ ଇତସ୍ତତଃ କେଶରାଜିକୁ ଆଙ୍ଗୁଳିରେ ସଜେଇନେଲା । ପାଞ୍ଚମିନିଟ୍ ପରେ ଷ୍ଟେସନରେ ପହଞ୍ଚିଯିବ ।

ସିମି ପ୍ଲାଟଫର୍ମରୁ ବାହାରିଆସି ସିଧା ଅଟୋରେ ବସିଲା, ଯେଉଁ ଅଟୋଟି ପାଞ୍ଚନମ୍ବରର ପାର୍କ ଦେଇଯାଉଥିଲା । ଗତବର୍ଷ ସାଙ୍ଗମାନଙ୍କ ସହିତ ପିକ୍‌ନିକ୍ କରିବାକୁ ସେ ଏଇ ପାର୍କକୁ ଆସିଥିଲା । ଅଟୋରେ ଗଲାବେଳେ ଦେଖିଲା, ରାସ୍ତାପାର୍ଶ୍ୱରେ ସବୁଜ ବୃକ୍ଷମାନଙ୍କୁ । ବୃକ୍ଷମାନେ ଯେମିତି ଚଳଚଞ୍ଚଳ, ଆଉ ସେ ହିଁ କେବଳ ସ୍ଥିର ପରି ମନେକଲା ।

ଅଟୋ ରହିଲା ପାର୍କ ସାମ୍ନାରେ । ପଇସା ଦେଇ ସେ ଓହ୍ଲାଇଗଲା ଓ କ୍ଷଣକ ପାଇଁ ସମସ୍ତଙ୍କୁ ଚାହିଁ ଭିତରକୁ ପାଦ ପକାଇଲା ।

ପାର୍କ ଭିତରେ କୋଳାହଳ । କାର୍ଯ୍ୟବ୍ୟସ୍ତ ମଣିଷଙ୍କ ପାଇଁ ରବିବାର ଯେମିତି ମହୋତ୍ସବ ପାଲିଟିଯାଇଛି । ସବୁଠି ତରୁଣ ତରୁଣୀଙ୍କ ଭିଡ଼ ଅପେକ୍ଷାକୃତ କମ୍ କୋଳାହଳ ଥିବା ଏକ ସିମେଣ୍ଟ ବେଞ୍ଚ ଉପରେ ସେ ବସିଲା ।

ସମ୍ବିତ୍‌କୁ ଭେଟିବାକୁ ତାକୁ ଘରଲୋକେ ବାଧ କରିଥିଲେ । ଯେହେତୁ ଦୁହିଁଙ୍କ ସହରର ଦୂରତା ମାତ୍ର ତିନିଘଣ୍ଟାର, ସେହିହେତୁ ନିଜେ ସିମି ସମ୍ବିତ୍‌କୁ ଭେଟୁ ବୋଲି ଘରେ ପ୍ରସ୍ତାବ ଦେଇଥିଲେ ଓ ଏ ସମ୍ପର୍କରେ ସମ୍ବିତ୍‌ର ମତାମତ ଲୋଡ଼ିଥିଲେ । ସମ୍ବିତ୍ ଆନନ୍ଦରେ ସ୍ୱୀକୃତି ଦେଇଥିଲେ ।

ସିମି ଏକ ଆନୁଷ୍ଠାନିକ ସମ୍ମିଳନୀରେ ମାତ୍ର ପାଞ୍ଚମିନିଟ୍ ପାଇଁ ବନ୍ଧୁଙ୍କ ଗହଣରେ ସମ୍ବିତକୁ ଭେଟିଥିଲା । ତାହା ପୁଣି ଔପଚାରିକ ମାତ୍ର । ଆଉ ଫେରିବାମାତ୍ରେ ଭୁଲିଯାଇଥିଲା ସମ୍ବିତ୍‌କୁ, ସମ୍ବିତ୍‌ଙ୍କ ମୁହଁକୁ ।

ଆଜି ବି ଠିକ୍‌ରେ ସ୍ମରଣ କରିପାରୁନାହିଁ ସମ୍ବିତ୍‌ଙ୍କ ମୁହଁକୁ, ତେବେ ଭେଟିଲେ ନିଶ୍ଚୟ ଚିହ୍ନିବ । ସିମିର ଦୂରସମ୍ପର୍କୀୟ ଭାଇ ନିଶୀଥର ସାଙ୍ଗ ବୋଲି କିଛିଦିନ ପୂର୍ବରୁ ସେ

ଶୁଣିଥିଲା । ଆଉ ଫୋନ୍‌ରେ ଥରଟିଏ କଥା ହୋଇଥିଲା ସମ୍ବିତ୍‌ଙ୍କ ସହ ।

ସେପର୍ଯ୍ୟନ୍ତ ଜାଣି ନଥିଲା ସମ୍ବିତ୍‌ଙ୍କର ମନକଥା ଅଥବା ସ୍ୱପ୍ନର ବିଶାଳଦ୍ରୁମ କଥା, ଯାହାର ଚେର ପାଲିଟି ଯାଇଛି ନିଜେ ସିମି । ନିଶୀଥ ଅଚାନକ ଫୋନ୍ କରିଥିଲା ସିମିକୁ, ସମ୍ବିତ୍‌ଙ୍କ ଘରୁ ଓ ସମ୍ବିତ୍‌ଙ୍କ ସହ କଥା ହେବାପାଇଁ ଅନୁରୋଧ କରିଥିଲା । ଭଦ୍ରାମି ଦୃଷ୍ଟିରୁ ସେ କଥା ହୋଇଥିଲା ।

ଫୋନ୍‌ରେ ସମ୍ବିତ୍‌କୁ ସିମି ପ୍ରଶ୍ନ କରିଥିଲା, 'କ'ଣ ଏବେ କରୁଛନ୍ତି ?'

'ଗୋଟେ ସ୍ୱପ୍ନ ଦେଖୁଛି, ଆଉ ସାକାର କରିବାର ଯୋଜନା କରୁଛି,' ସମ୍ବିତ୍‌ର ସ୍ୱର ସ୍ୱପ୍ନମୟ ମନେ ହେଉଥିଲା ।

'ଗୁଡ୍‌ଲକ୍'- ହସନ୍ତ ସ୍ୱରରେ ସିମି କହିଥିଲା ।

ସମ୍ବିତ୍ ନିକଟରୁ ଫେରନ୍ତା ବାଟରେ ନିଶୀଥ ସିମିର ଘରକୁ ଆସି ସମ୍ବିତ୍ ସମ୍ପର୍କରେ ଜଣାଇଥିଲା ଘରେ ସମସ୍ତେ ପ୍ରସ୍ତାବଟିକୁ ସାଦରେ ଗ୍ରହଣ କରିନେଇଥିଲେ ।

ହେଲେ ସିମି ସହଜରେ ଘଟଣାଟିକୁ ଗ୍ରହଣ କରି ପାରୁ ନଥିଲା । ସମ୍ବିତ୍‌କୁ ସେ କେତେ ବା ଜାଣେ ! ନାଁ ବ୍ୟତୀତ କ'ଣ ଅଧିକ ଜାଣିଛି ସେ ?

ମା' ତାକୁ ବୁଝାଇଲେ - 'ଆମବେଳେ ଆମେ କ'ଣ ଜାଣିଥିଲୁ ନିଜ ବର ସମ୍ପର୍କରେ ? ଘରସଂସାର ବାନ୍ଧିଲେ ସିନା ମଣିଷଟିକୁ ଜାଣିବ । ବାହାଘର ପରେ ତୁ ସମ୍ବିତ୍‌କୁ ଠିକ୍ ଚିହ୍ନିପାରିବୁ ।'

'ଆଉ ଯଦି ଚିହ୍ନି ନପାରେ, ମୋ ମନପସନ୍ଦର ନ ହୋଇ ଥାଏ, ତେବେ ?' ପାଲଟା ପ୍ରଶ୍ନ କରିଥିଲା ସିମି ।

'ଆଡ୍‌ଜଷ୍ଟ କରିନେବୁ,' ମା' ସହଜ ଗଳାରେ ଉତ୍ତରଦେଲେ ।

'ହ୍ୱାଟ୍...' ବିସ୍ମୟରେ ସିମି ଫାଟି ପଡ଼ିଲା ! 'ଆଡ୍‌ଜଷ୍ଟ ନୁହେଁ ଡିଭୋର୍ସ ।'

'ହେ ଭଗବାନ୍... ଏ ମୂର୍ଖ ଝିଅଟାକୁ କେମିତି ବୁଝାଇବି ।' ମା' ମଥାରେ ହାତ ପିଟିଲେ ।

ଘରେ ଏକଥା ଶୁଣି ସମସ୍ତେ ସିମିକୁ ବୁଝାଇବାକୁ ଚେଷ୍ଟାକଲେ । ଏତେ ଭଲ ପାତ୍ରଟିଏକୁ ଛାଡ଼ିବାକୁ କାହାର ଇଚ୍ଛା ନଥିଲା । ନିଶୀଥ କହୁଥିଲା- ସମ୍ବିତ ଖୁବ୍ ଭଲ, ଭାରି ଶାନ୍ତଶିଷ୍ଟ, ଭଲ ଚାକିରୀ କରିଛି, ଖୁବ୍ ସୁନ୍ଦର ଘରଟିଏ ନିଜ ପାଇଁ ତିଆରି କରିଛି ।

ତେବେ ସିମିର ମନକୁ ଏସବୁ ପାଉ ନଥିଲା । ସେ ନିଜେ ବି ଜାଣେନା କାରଣ କ'ଣ ହୋଇପାରେ ! ତା' ମନରେ ଗୋଟିଏ ମାତ୍ର କଥା ଗଣ୍ଠି ପଡ଼ିଥିଲା । ନ ଦେଖିଥିବା, ନ ଜାଣିଥିବା ଲୋକଟିକୁ କେମିତି ନିଜର ବୋଲି ମନେକରିବ ହାତଗଣ୍ଠି ପଡ଼ିବା ପରେ ! ହାତଗଣ୍ଠିଠାରୁ ମନର ଗଣ୍ଠି କେତେ ଶକ୍ତ, ତା'ର କଳ୍ପନା ମା' କଣ କରିପାରିବ ।

ବଡ଼ଭାଇ ଏ ସବୁର ଉପାୟ ନିର୍ଦ୍ଧାରଣ କରିଥିଲେ ଯେ ସିମି ଏକା ଯାଇ ସମ୍ବିତ୍‌କୁ ଭେଟୁ । ଦୁହିଁଙ୍କ ସାକ୍ଷାତ ସମୟରେ ଘରଲୋକଙ୍କ ଉପସ୍ଥିତି ଯେମିତି ବାଧା ସୃଷ୍ଟି ନକରେ ।

ସିମିର ଆଉ କିଛି ଚାରା ନଥିଲା । ସମସ୍ତଙ୍କ ବାଧବାଧକତାରେ ଘରୁ ବାହାରିଲା ।

ବାଟସାରା ଚିନ୍ତାକଲା, କେଉଁ ଏକ କାଳ୍ପନିକ ପ୍ରେମିକର ପ୍ରେମ କାହାଣୀ ଶୁଣାଇ ସମିତ୍‌ର ମନ ଭାଙ୍ଗି ଦେବ ଓ ନିଜେ ବିବାହରୁ ଓହରି ଯିବ । ହେଲେ କାହା କଥା କହିବ ? ସେମିତି ତ ତା'ର କେହି ପ୍ରେମିକ ନଥିଲେ ।

ସିମିର ସାମ୍ନାରେ ଏକ ଛାଇ ପଡ଼ିବାରୁ ତା'ର ଧ୍ୟାନମଗ୍ନ ହେଲା । ମଥାଟେକି ଚାହିଁବା ଆଗରୁ ମଧୁର କଣ୍ଠରୁ ଶୁଣାଗଲା, 'ଗୁଡ୍‌ମର୍ଣ୍ଣିଂ ସିମି ।'

ଆଖିପତା ଟେକିଲା ସେ ଓ ଆଖି ସାମ୍ନାର ସୁନ୍ଦର ଚେହେରାଟିକୁ ଚିହ୍ନିବାକୁ ଚେଷ୍ଟା କଲା ।

'ଚିହ୍ନି ପାରୁନ ? ମୁଁ ସମିତ୍ !' ସ୍ମିତହସ ଲାଖି ରହିଥିଲା ସମିତ୍‌ର ଓଠରେ ।

'ନମସ୍କାର । ମୁଁ ଅନ୍ୟମନସ୍କ ଥିଲି' ସିମି ଠିଆ ହେଉହେଉ କହିଲା ।

'ବସ ସିମି । ମୁଁ ତୁମ ପାଖରେ ବସିପାରିବି କି ?' ସମିତ୍ ଅପେକ୍ଷା କଲେ ସିମିର ଉତ୍ତରକୁ ।

ସିମେଣ୍ଟ ବେଞ୍ଚର ଅପରପାର୍ଶ୍ୱରେ ରଖିଥିବା ନିଜ ବ୍ୟାଗ୍‌କୁ ଉଠାଇଆଣି ସ୍ମିତ ହସିଲା ସିମି । ସମିତ୍ ବେଞ୍ଚକୁ ଆଉଜି ବସିଲେ । ସିମି କ୍ଷଣକ ପାଇଁ ଚାହିଁଲା । ଗୌରବର୍ଣ୍ଣ, ସ୍ୱାସ୍ଥ୍ୟବାନ, ପ୍ରଫୁଲ୍ଲିତ ସମିତ୍ ଆଉ ତାକୁ ଅପରିଚିତ ମନେହେଲେ ନାହିଁ ।

'କ'ଣ ଭାବୁଛ ?' ସମିତ୍ ପ୍ରଶ୍ନ କଲେ ।

'କିଛି ନାହିଁ । ଟ୍ରେନ୍ ଠିକ୍ ବାରଟାରେ ଅଛି ।' ସେ ତଳକୁ ମୁହଁପୋତି ଉତ୍ତର ଦେଲା ।

'ଏତେ ଶୀଘ୍ର ଫେରିଯିବ ?' ମଉଳା ଜହ୍ନ ପରି କରୁଣ ଦିଶିଲା ସମିତ୍‌ଙ୍କର ମୁହଁ ।

ଆଶ୍ଚର୍ଯ୍ୟ ହେଲା ସିମି । ତା' ଫେରିଯିବାରେ ସମିତ୍ କାହିଁକି ଦୁଃଖୀ ! କି ସମ୍ପର୍କ ଅଛି ସେମାନଙ୍କ ଭିତରେ ଯେ ତା' ଫେରିଯିବାରେ ସମିତ୍ ବ୍ୟସ୍ତ, ଅଧୀର ହେବେ !

ସେ ସମିତ୍‌ଙ୍କ ପ୍ରଶ୍ନର କୌଣସି ଉତ୍ତର ଦେଲାନାହିଁ । ନୀରବରେ ବସି ରହିଲା ।

'କିଛି କହିବିନି', ସମିତ୍ ଆଗ୍ରହରେ ପ୍ରଶ୍ନ କଲେ ।

'କେଉଁ କଥା !' ଜାଣିଥିବା ସତ୍ତ୍ୱେ ସେ ନ ଜାଣିବାପରି ପାଲଟା ପ୍ରଶ୍ନ କଲା ।

'ଏଇ ଯେମିତି ମୋ' କଥା । ତୁମ ପସନ୍ଦ ନାପସନ୍ଦର କଥା, ଆଉ ଆମ ଭବିଷ୍ୟତ କଥା ।' ସମିତ୍‌ର ଉତ୍ସାହ ବଢ଼ିଗଲା ।

'ମୁଁ ଆପଣଙ୍କ ସମ୍ପର୍କରେ ଶୁଣିଛି । ମୋତେ ଭଲ ଜିନିଷ ଭଲ ଲାଗେ ଓ ମନ୍ଦ କଥାରେ ମୋର ନାପସନ୍ଦ । ଆଉ ଭବିଷ୍ୟତ କଥା ମୋତେ ଅଜଣା' ସେ ପାର୍କର ଗୋଟେ ୟୁକାଲିପଟାସ ଗଛକୁ ଚାହିଁ ଉତ୍ତର ଦେଲା ।

'ସମସ୍ତଙ୍କର ଭବିଷ୍ୟତ ପ୍ରତି ଗୋଟେ ଅଜଣା' ଆକର୍ଷଣ ଥାଏ, କେତେକେତେ ଯୋଜନା ଥାଏ ।' ସମିତ୍ ମୋହାସକ୍ତ ହେବା ପରି କହିଲେ ।

'ଆଚ୍ଛା ଆପଣଙ୍କର କ'ଣ ସ୍ୱପ୍ନ ଓ ଯୋଜନା, କହିଲେ ?' ସେ ସରଳଭାବେ ପ୍ରଶ୍ନ କଲା ।

'ସତ କହିଲେ ତୁମକୁ ନେଇ ମୋ' ସ୍ୱପ୍ନ ଓ ଯୋଜନା । ଏତେବର୍ଷର ଜୀବନ

ଭିତରେ ଏଭଳି ଦୁର୍ବାର ଆକର୍ଷଣ କାହା ପ୍ରତି ଅନୁଭବ କରି ନଥିଲି । ଜାଣେନା, ମୋ' ଭାଗ୍ୟରେ କ'ଣ ଅଛି ! ହେଲେ, ତୁମେ ହିଁ ମୋ' ଜୀବନର ପ୍ରଥମ ଓ ଶେଷନାରୀ, ସିମି ।' ସମ୍ବିତ୍‌ଙ୍କର ଦୃଷ୍ଟି ନଇଁ ଯାଇଥିଲା ନରମ ଘାସଗାଲିଚା ଉପରେ ।

ସିମି ନିରୁତ୍ତର ରହି ଭାବିଲା, ଇମ୍ପ୍ରେସ୍ କରିବାର ଭଲ ଉପାୟ ଇଏ । ଆଉ ସେ କ'ଣ ଏତେ ବୋକୀ ଯେ ଏକଥାକୁ ସହଜରେ ବିଶ୍ୱାସ କରିଯିବ ! ମନେମନେ ହସିଲା ସେ ।

ଦୁହିଁଙ୍କ ଚାରିପଟେ ନୀରବତା କ୍ଷଣକ ପାଇଁ ଛାଇଗଲା ।

'ମୁଁ ମୋ' କଥା କହି ଚାଲିଛି । ତୁମେ କିଛି କୁହ ।' ସମ୍ବିତ୍‌ଙ୍କର କଥାରେ ସିମି ପ୍ରକୃତିସ୍ଥ ହେଲା ।

'କେଉଁ କଥା ?' ସିମି ପ୍ରଶ୍ନକଲା ।

'ତୁମେ ଏ ବାହାଘରରେ ରାଜି କି ନୁହଁ ?' ଉତ୍କଣ୍ଠିତ ସମ୍ବିତ୍‌ଙ୍କର ହାତ ଥରିବାର ସିମି ଲକ୍ଷ୍ୟ କଲା ।

ସେ ଭାବିଲା, ସିଧାସଳଖ ମନା କରିଦେବା ଅପେକ୍ଷା ଏମିତି ପ୍ରସ୍ତାବ ରଖିବ ଯେ ସମ୍ବିତ୍ ନିଜେ ବିବାହଂ ପାଇଁ ମନା କରିଦେବେ ।

'ରାଜି-ଅରାଜି ବଡ଼ କଥା ନୁହେଁ । ମୁଁ ଯଦି କୁହେଁ ଯେ ମୁଁ ସନ୍ତାନ ଚାହେନାହିଁ ଓ ଆମେ ବନ୍ଧୁପରି ଜୀବନ କାଟିବା, ଯେପର୍ଯ୍ୟନ୍ତ ମୁଁ ପୂର୍ଣ୍ଣପ୍ରାଣରେ ବିବାହକୁ ଗ୍ରହଣ ନ କରିଛି, ଆପଣ କ'ଣ ଏ ବିବାହକୁ ସ୍ୱୀକୃତି ଦେବେ ?' ସିମି ମନେମନେ ଖୁସି ହେଲା, ଯାହା ହେଉ ନିଜକୁ ମୁକୁଳାଇ ନେବା ପାଇଁ ଗୋଟେ ସୁନ୍ଦର ରାସ୍ତା ବାଛି ନେଇଛି ।

ସେ କଣେଇ ଚାହିଁଲା ସମ୍ବିତ୍‌କୁ । କୌଣସି ପୁରୁଷ ଏପରି ଅଜବ ପ୍ରସ୍ତାବରେ ବିବାହ ପାଇଁ ରାଜି ହେବ ନାହିଁ ନିଶ୍ଚୟ । ସମ୍ବିତ୍ ସିମେଣ୍ଟ ବେଞ୍ଚରୁ ଉଠିପଡ଼ିଲେ । ମୁହଁ ଈଷତ୍ ଗମ୍ଭୀର ଦିଶୁଥାଏ । ସିମି ମନେମନେ ଉଲ୍ଲସିତ ହୋଇଉଠିଲା । ଓଃ-ଯାହାହେଉ, ସମ୍ବିତ୍ ଏବେ ରୋକ୍‌ଠୋକ୍ ଅସ୍ୱୀକାର କରିଦେବେ ଏ ପ୍ରସ୍ତାବକୁ ଓ କହିବେ - 'ମୁଁ ଆଦୌ ରାଜି ନୁହେଁ ତୁମ ସର୍ତ୍ତରେ । ଏଭଳି ସ୍ୱପ୍ନ ମୁଁ ଦେଖି ନଥିଲି । ବିନା ସନ୍ତାନ ଓ ଦାମ୍ପତ୍ୟର ଜୀବନ ଅପେକ୍ଷା ନିରସ ଜୀବନ ମୋର କାମ୍ୟ ନୁହେଁ । ବିବାହ ପରେ ମୁଁ ଯୋଗୀ ହୋଇରହିପାରିବି ନାହିଁ ।'

ସିମି ଉଠିଲା ଓ ବ୍ୟାଗ୍ କାନ୍ଧରେ ପକାଇଲା । ଘଣ୍ଟା ଦେଖିଲା, ସାଢ଼େ ଏଗାର । ଠିକ୍ ସମୟରେ ନ ଗଲେ ଟ୍ରେନ୍ ଚାଲିଯିବ ଓ ପରବର୍ତ୍ତୀ ଟ୍ରେନ୍ ସଂଧ୍ୟା ଛ'ଟାରେ ।

ସେ କହିଲା- 'ମୋତେ ଏଥରକୁ ଯିବାକୁ ହେବ । ଟ୍ରେନ୍ ଠିକ୍ ବାରଟାରେ ଆସିବ ।'

'ମୋ ଉତ୍ତର ନ ଶୁଣି ଚାଲିଯିବ ସିମି !' ସିମି ଚାହିଁଲା ସମ୍ବିତ୍‌ଙ୍କ ମୁହଁକୁ ।

'ତୁମର ସବୁ ସର୍ତ୍ତରେ ମୁଁ ରାଜି । ତୁମ ପରି ମୁଁ ବି ଠିକ୍ ଏଇକଥା ଅନେକ ଦିନରୁ ଚିନ୍ତା କରୁଥିଲି । ବିବାହ ଗୋଟେ ବନ୍ଧନ ନୁହେଁ, ବରଂ ପାରସ୍ପରିକ ବୁଝାମଣା । ପରସ୍ପରକୁ

ନ ଜାଣିବା ଓ ଗ୍ରହଣ ନକରିବା ପର୍ଯ୍ୟନ୍ତ ବନ୍ଧୁଭାବେ ଚଳିବାରେ ମୋର ଆଦୌ ଆପତ୍ତି ନାହିଁ । କୌଣସି ଦିନ ମୋ' ମତକୁ ତୁମ ଉପରେ ଲଦିଦେଇ, ତୁମକୁ ଅସୁଖୀ କରି ମୁଁ ଖୁସି ହୋଇପାରିବି ନାହିଁ । ଆଉ ରହିଲା ସନ୍ତାନ କଥା, ତୁମେ ନିର୍ଣ୍ଣୟ କରିବ । ତୁମ ନିଷ୍ପତ୍ତି ହିଁ ମୋର ଶିରୋଧାର୍ଯ୍ୟ ।'

ସମ୍ବିତ୍‌ର ଉତ୍ତରରେ ସିମି ସ୍ତବ୍ଧ, ବିସ୍ମିତ ହୋଇପଡ଼ିଲା, ସତେ ଯେମିତି କେଉଁ ଏକ ବାଦଲଦୋଳିରୁ ଖସିପଡ଼ିଲା ପାହାଡ଼ର କଣ୍ଟକିତ ଶିଖରରେ ।

ପରମୁହୂର୍ତ୍ତରେ ନିଜକୁ ସମ୍ଭାଳି ନେଇ ଭାବିଲା, ଇମ୍ପ୍ରେସ୍ କରିବାର ଆଉ ଏକ ବାହାନା ଇଏ । ସୁନ୍ଦରୀପତ୍ନୀ ନିକଟରେ ଗୋଟାଏ ଛାତତଳେ କିଏ ଯୋଗୀ ହୋଇରହିଛି ନା ରହିବ ! ଠିକ୍ ଅଛି, ଘରେ ପ୍ରଥମେ ପହଞ୍ଚିଯାଏ, ତା'ପରେ ଅନ୍ୟ ଏକ ପ୍ରସଙ୍ଗ ଉଠାଇ ମନା କରିଦେବି, ନହେଲେ କହିଦେବି, ସମ୍ବିତ୍‌କୁ ପସନ୍ଦ କରିପାରିଲା ନାହିଁ ।

କଥାରେ ପୂର୍ଣ୍ଣଚ୍ଛେଦ ପକାଇବାକୁ ଚେଷ୍ଟାକରି ସେ କହିଲା- 'ଯିବା ଏବେ ।'

'ଠିକ୍ ଅଛି । ହେଲେ ଘରକୁ କିଛି ସମୟ ପାଇଁ ଯାଇ ନଥାନ୍ତ ?' ସଂକୋଚରେ ସମ୍ବିତ୍ ପ୍ରଶ୍ନ କଲେ ।

ଏବେ ଆପଣଙ୍କ ଘରକୁ ଯିବା କ'ଣ ଉଚିତ୍ ! ଲୋକେ ପରିଚୟ ପାଇଁ ପ୍ରଶ୍ନ କଲେ କି ଉତ୍ତର ଦେବେ ?' ନ ଯିବା  ସପକ୍ଷରେ ଯୁକ୍ତି ବାଢ଼ିଲା ସିମି ।

'ତୁମ ଇଚ୍ଛା' । ସମ୍ବିତ୍‌ଙ୍କର ତଥାପି ଆଶା ଥିଲା ସିମିକୁ କିଛି ସମୟ ପାଇଁ ଘରକୁ ବୁଲାଇ ନେବାକୁ ।

ସମ୍ବିତ୍‌ଙ୍କ ଘରେ ବା କିଏ ଅଛି ? ବାପା ପିଲାଦିନରୁ ଚାଲିଯାଇଥିଲେ । ମା' ତାକୁ ମଣିଷ କଲେ । ସେ ଚାକିରି କରିବାର ବର୍ଷକ ପରେ ମା' ବି ଆରପୁରକୁ ଚାଲିଗଲେ । ଏକମାତ୍ର ବଡ଼ଭଉଣୀ ତା' ସଂସାର ସହ ଆମେରିକାରେ । ଘରର ଦେଖାଶୁଣା କରିବାକୁ ପନ୍ଦର ଷୋହଳ ବର୍ଷର କିଶୋର ଅଛି । ରୋଷେଇଠାରୁ ବଗିଚା କାମ, ସବୁ କିଶୋର ହିଁ କରେ । ସମ୍ବିତ୍‌କୁ ଭଲ ଲାଗେ ନାହିଁ ସାଙ୍ଗମାନଙ୍କ ସହ ଗୁଲିଖଟି କରିବାକୁ । ବରଂ ଅଫିସ୍‌ରୁ ଫେରି ବଗିଚାରେ ବସି ଚା' ପିଉପିଉ ଫୁଲ ଓ ଚଢ଼େଇମାନଙ୍କୁ ଦେଖିବାକୁ ପସନ୍ଦ କରନ୍ତି । ରୁମ୍‌କୁ ଫେରି ଗିଟାର୍ ବଜାନ୍ତି । ସମୟ ବାହାର କରି ଭଣଜାଭାଣିଜୀଙ୍କ ସହ ଚାଟିଂ କରନ୍ତି । ରାତିରେ ଶୋଇବା ପୂର୍ବରୁ କିଛି ସମୟ ପାଇଁ ପୃଥିବୀର ଶ୍ରେଷ୍ଠ ସାହିତ୍ୟିକଙ୍କର ରଚନାବଳୀ ପଢ଼ନ୍ତି ।

ସମ୍ବିତ୍‌ଙ୍କର ଧ୍ୟାନ ଭଙ୍ଗ କରି ସିମି ଆଉ ଥରେ ଜୋର୍ ଦେଲା ନିଜ ଯିବା ସମ୍ପର୍କରେ । ସମ୍ବିତ୍ ନୀରବରେ ପାଦ ବଢ଼ାଇଲା ।

ଗେଟ୍ ବାହାରକୁ ଆସି ସମ୍ବିତ୍ କହିଲେ - 'ଚାଲ, ତୁମକୁ ଷ୍ଟେସନରେ ଛାଡ଼ିଦେବି ।'

'ନା, ମୁଁ ନିଜେ ଯାଇପାରିବି । ଏ ସହର ତ ମୋ ପାଇଁ ନୂଆ ନୁହେଁ ।' ନିଜ ଉପରେ ଆସ୍ଥା ପ୍ରକଟ କଲା ସିମି ।

'ଜାଣେ, ତଥାପି ଏତିକି ବାଟ ତୁମ ସହିତ ଯାଏ ବୋଲି ତୁମେ କ'ଣ ଚାହୁଁନ ? ଯିବାପାଇଁ ଅନୁମତି ଦିଅ ।'

ସିମି ହସିଲା । ମନା କରିପାରିଲା ନାହିଁ । ସମ୍ବିତ୍ ନିଜ କାର୍‌ର ଡୋର୍ ଖୋଲି ଧରିଲେ । ସିମି ବସିଲା ।

କିଛିବାଟ ଯିବାପରେ ଦେଖାଗଲା, ରାସ୍ତାସାରା ଲୋକମାନେ ଭୟଭୀତ ଅବସ୍ଥାରେ ଦୌଡ଼ୁଛନ୍ତି । କେହି କାହାକୁ ଚାହୁଁନାହାନ୍ତି । କାର୍, ସ୍କୁଟର, ବାଇକ୍ ତୀରବେଗରେ ସହର ମଧ୍ୟକୁ ଛୁଟୁଛନ୍ତି ।

ସମ୍ବିତ୍ ରାସ୍ତାକଡ଼ରେ କାର୍ ରଖି ବାହାରକୁ ଆସିଲେ । ସାଇକେଲରେ ଯାଉଥିବା ଜଣେ ବୟସ୍କ ଭଦ୍ରଲୋକଙ୍କୁ ଅଟକାଇ ଘଟଣା ସମ୍ପର୍କରେ ପ୍ରଶ୍ନକଲେ ।

ଘଟଣାଟି ଅତ୍ୟନ୍ତ ଦୁଃଖଦାୟକ ଥିଲା । ଏଗାରଟା ବେଳର ଟ୍ରେନ୍ ନଦୀ ଉପରେ ଆସୁଥିବାବେଳେ ପତ୍ରତୋଳି ଫେରୁଥିବା ଚାରିଜଣ ମହିଳା ଓ ପିଲାଙ୍କୁ ଚାପି ଦେଇଥିବାରୁ ନିକଟସ୍ଥ ବସ୍ତିର ଲୋକମାନେ ପୋଡ଼ାଜଳା କରି ଟ୍ରେନ୍ ଲାଇନ୍‌କୁ ଭାଙ୍ଗିରୁଜି ଦେଇଛନ୍ତି । ହଜାର ହଜାର ଲୋକ ରାସ୍ତାର ଦୁଇପାର୍ଶ୍ୱକୁ ଅବରୋଧ କରିଛନ୍ତି ।

ସିମି ଦୁଃଖ ଓ ଭୟରେ କାନ୍ଦି ପକାଇଲା । ଦୁର୍ଘଟଣାର କରୁଣ ପରିଣତି ଓ ନ ଫେରିବାର ଭୟ । ହତାଶରେ ବ୍ୟାକୁଳ ହୋଇଉଠିଲା ।

'ମଉସା, ଆଜି ବସ୍ କି ଟ୍ରେନ୍ କିଛି ଯିବନି ?' ସମ୍ବିତ୍ ଭଦ୍ରଲୋକଙ୍କୁ ପ୍ରଶ୍ନ କଲେ ।

'ଗୋଟାଏ ବୋଲି ତ ବାଟ ବାବୁ । ଅବସ୍ଥା ଯେମିତି, ବସ୍ କଥା ଛାଡ଼, ସାଇକେଲିଆକୁ ବି ବାଟ ଛାଡ଼ୁନାହାନ୍ତି । ଆଜି କ'ଣ, କାଲି ବି ଆରପଟକୁ ଯିବାକଥା ଭୁଲିଯାଅ । ଘରକୁ ଶୀଘ୍ର ଫେରିଯାଅ । ସେଠିକୁ ଗଲେ, ଉତ୍ୟକ୍ତ ଲୋକେ ଧନୁତୀର ଧରି ବସିଛନ୍ତି, ଲାଛି ଦେବେ । ତରତରହୋଇ ଭଦ୍ରଲୋକ ସାଇକେଲ ଚଢ଼ି ଚାଲିଗଲେ ।

'ସିମି, ଆମେ ଏଠୁ ଫେରିଯିବା ।' ସମ୍ବିତ୍ ଗାଡ଼ି ବୁଲାଇଲେ । 'କେଉଁଠିକୁ ?' କଷ୍ଟରେ ସିମି ପଚାରିଲା ।'

'ଘରକୁ । ଆମ ଦୁହିଁଙ୍କ ଘରକୁ ।' ସମ୍ବିତ୍ ଗଡ଼ଜୟ କଲାପରି ଉତ୍ତର ଦେଲେ ।

ସିମିର ମୁହଁ ଗମ୍ଭୀର ହୋଇଗଲା । ସେ ଜାଣେନା, ଏହା ପରେ କି ପ୍ରକାର ଦୁର୍ଘଟଣା ଘଟିବ ତା ଭାଗ୍ୟରେ । ମନେ ମନେ ଭୀଷଣ ବିରକ୍ତ ହେଲା ନିଜ ଘରଲୋକଙ୍କ ଉପରେ, ବଡ଼ଭାଇଙ୍କ ଅପରିଣାମଦର୍ଶୀ ଉପାୟ ନିର୍ବାଚନରେ ।

ବଡ଼ଭାଇ ସେଦିନ ଭାଷଣ ଶୁଣାଇଥିଲେ - ଯୁଗ କେତେ ଆଗେଇଲାଣି । ଝିଅମାନେ ଚନ୍ଦ୍ରରେ ପାଦ ଦେଲେଣି, ଏଭେରେଷ୍ଟ ଶୃଙ୍ଗରେ ବିଜୟପତାକା ଉଡ଼ାଇଲେଣି, ଦେଶର ସର୍ବୋଚ୍ଚ ଶାସନକର୍ତ୍ତା ହେଉଛନ୍ତି, ଆଉ ତୁ ଏତେ ପାଠଶାଢ଼ ପଢ଼ି ମରହଟ୍ଟୀ ଚିନ୍ତାକୁ ଜାବୁଡ଼ି ଧରିଛୁ ! ସମ୍ବିତ୍ ବାଘଭାଲୁ ନୁହେଁ, ଯେ ତାକୁ ଭୟ କରୁଛୁ ! ଥରେ ଦେଖା ସାକ୍ଷାତ ହେଲେ ତୁ ମଣିଷ ଚିହ୍ନିବୁ । ଯା, ଭେଟିଆ ଥରେ ।'

'ହୁଁ- ଭେଟିବାକୁ ପଠାଇଲ ନା ଯମପୁରୀକୁ ପଠାଇଛ କେଜାଣି !' ବଡ଼ଭାଇଙ୍କ ଉଦ୍ଦେଶ୍ୟରେ ନୀରବ ଉଚ୍ଚାରଣ କଲା ସେ ।

ସମ୍ବିତ୍ ଗାଡ଼ି ବନ୍ଦ୍ କଲେ । ସିମି ଆଖିତୋଳି ସାମ୍ନାକୁ ଚାହିଁଲା । ଇସ୍ କଣେଇ

ପରି ସୁନ୍ଦର ଘରଟେ ! କିଏ ଏତେ ମନପ୍ରାଣ ଦେଇ ଏ ଚମତ୍କାର ଘରଟିକୁ ତୋଳିଛି କେଜାଣି ! ଘର ଭଳି ଏଥିରେ ରହୁଥିବା ଲୋକେ ବି ଖୁବ୍ ସୁନ୍ଦର, ଚମତ୍କାର ହୋଇଥିବେ । ଘରଟିକୁ ଦେଖୁଦେଖୁ ସିମି ମୁହଁର କଠିନରେଖା ସବୁ ଲିଭିଯାଇ ସ୍ମିତହାସ୍ୟଟିଏ ଆଙ୍କି ହୋଇଗଲା ।

ସେ ପ୍ରଶ୍ନକଲା , 'ଗାଡ଼ି କାହିଁକି ରଖିଲେ !'

ସମିତ୍ ଗାଡ଼ିରୁ ଓହ୍ଲାଇ ସିମି ପାଖକୁ ବୁଲିଗଲେ ଓ ଡୋର୍ ଖୋଲିଧରି କହିଲେ- 'ମୋ ଘର ତୁମକୁ ହାର୍ଦ୍ଦିକ ସ୍ୱାଗତ ଜଣାଉଛି ।'

ସିମି ବାହାରକୁ ଆସି ସ୍ୱଗତୋକ୍ତି କଲା - 'ଖୁବ୍ ଚମତ୍କାର ହୋଇଛି ।'

'ତୁମ ପାଦସ୍ପର୍ଶରେ ଆହୁରି ଜୀବନ୍ତ ହୋଇଉଠିବ ଏ ଇଟା ସିମେଣ୍ଟର ଘର । ଆସ, ଭିତରକୁ ଆସ, ସାମ୍ନାର ବଡ଼ ଗେଟକୁ ଖୋଲିଦେଇ ସିମିକୁ ଭିତରକୁ ପାଛୋଟିନେଲେ ।

ଭିତରୁ ଚଳଚଞ୍ଚଳ ପାଦରେ କିଶୋର ଧାଇଁଆସି ସିମିକୁ ପ୍ରଣାମ ଜଣାଇ ପାଛୋଟି ନେଲା । ସିମି ଘର ଭିତରେ ପାଦ ଦେବାମାତ୍ରେ ଆଶ୍ଚର୍ଯ୍ୟ ହୋଇଉଠିଲା ନିଖୁଣ ସାମଜସଜ୍ଜା- ପରିଷ୍କାରପରିଚ୍ଛନ୍ନ ଓ ଅତ୍ୟାଧୁନିକ ରୁଚିର ଛାପ ରହିଛି । କାନ୍ଥରେ ସୁନ୍ଦର ଅଏଲ ପେଣ୍ଟିଂ ।

'ବାବୁ, ମା'ଙ୍କ ପାଇଁ ଗେଷ୍ଟରୁମ୍ ଖୋଲିଦେଉଛି ?' କିଶୋର ଗେଷ୍ଟରୁମ୍‌ର ଚାବିଧରି ପଚାରିଲା ।

'ନା ଥାଉ । ସିମି, ମୋ' ସହିତ ଆସ ।' ସମିତ୍ ଆଗେ ଆଗେ ପାହାଚ ଚଢ଼ିଲେ ଦୁଇମହଲାକୁ ଯିବାପାଇଁ ।

ପ୍ରଶସ୍ତ କରିଡ଼ରରେ କାର୍ପେଟ୍ ବିଛା ହୋଇଛି । ଫୁଲକୁଣ୍ଡ ସଜା ହୋଇଛି । ଗୋଟେ ରୁମ୍‌ର କବାଟ ଖୋଲିଦେଲେ ସମିତ୍ 'ତୁମେ ଏଇଠି ରେଷ୍ଟ ନିଅ, ସିମି ।'

ସୁନ୍ଦର, ମାର୍ଜିତ ବେଡ୍‌ରୁମ୍ । ନିଶ୍ଚୟ ସମିତ୍‌ଙ୍କର । 'ତୁମେ ରେଷ୍ଟ ନିଅ । ଘରକୁ ଫୋନ୍ କରି ସବୁକଥା ଜଣାଇ ଦେଉଛି ।' ସମିତ୍ ଆଶ୍ୱସନା ଦେଲେ ।

'ମୁଁ ବାପାଙ୍କ ସହ କଥା ହେବି, ପ୍ଲିଜ୍ । ସିମି ଆତଙ୍କିତ ହୋଇ ଉଠୁଥିଲା, ବାପାଙ୍କ ପ୍ରତିକ୍ରିୟା ଆଶଙ୍କାରେ ।

କଥା ହେବାପରେ ସିମି ଆଶ୍ୱସ୍ତ ହେଲା ଘରେ ଯଦିଓ ସମସ୍ତେ ବ୍ୟସ୍ତ, ତଥାପି ସମିତ୍‌ଙ୍କ ପାଖରେ ଅଛି ଜାଣି, ସେମାନେ ଆଶ୍ୱସ୍ତ ।

ତଥାପି ତା' ମନ ବୁଝୁ ନଥିଲା କାରଣ ସମିତ୍‌ଙ୍କ ଘରେ ତା'ର ରହିବାଟା କେତେଦୂର ଉଚିତ୍ । ସମିତ୍ କି ପ୍ରକାରର ବ୍ୟବହାର ଦେଖାଇବେ, ସେ ଜାଣେନା । କ୍ଷଣ କ୍ଷଣକେ ମଣିଷର ମନ ତ ପୁଣି ବଦଳିଯାଏ ।

ସିମି ଚିନ୍ତା କରୁ କରୁ ଶୋଇପଡ଼ିଲା ।

ନିଦ ଭାଙ୍ଗିଲା ବେଳକୁ ରୁମ୍‌ସାରା ଅନ୍ଧକାର । ସେ ଜାଣେନା, କେଉଁଠି ସ୍ୱିଚ୍ । ଉଠିବସି ଧୀର ସ୍ୱରରେ କିଶୋରର ନାଁ ଧରି ଡାକିଲା । କବାଟ ଖୋଲି ସମିତ୍ ଭିତରକୁ ଆସିଲେ ଓ ସ୍ୱିଚ୍ ଅନ୍ କଲେ । ସିମି ଦେଖିଲା, ଘଣ୍ଟାରେ ଛ'ଟା ବାଜିଛି ।

'ଅନେକବେଳୁ ଚା' ଥଣ୍ଡା ହୋଇଗଲାଣି । ତୁମେ ଫ୍ରେସ୍ ହୁଅ, ଚା' ଗରମ

କରିଆଣେ ।' ତା' ଉତ୍ତରକୁ ଅପେକ୍ଷା ନକରି ସମ୍ବିତ୍ ତଳକୁ ଓହ୍ଲାଇଗଲେ ।

ସିମି ଫ୍ରେସ୍ ହୋଇ ରୁମାଲ୍‌ରେ ମୁହଁ ପୋଛିନେଲା । ହଠାତ୍ ମୁଣ୍ଡପାଖ କାନ୍ଥଉପରେ ଦୃଷ୍ଟି ପଡ଼ିବାରୁ ସେ ଚମକିଉଠିଲା । କାନ୍ଥସାରା ସୁସଜ୍ଜିତ ହୋଇ ରହିଛି ତା' ନିଜର ଫଟୋ । ବିସ୍ମିତ ହେଲା ସିମି । ତା'ର ଏତେ ଫଟୋ ଏଠି କେମିତି, ପୁଣି ସମ୍ବିତଙ୍କ ବେଡ୍‌ରୁମ୍‌ରେ !

'ସିମି, ଚା' ନିଅ ।' ସମ୍ବିତ୍‌ଙ୍କ ଡାକରେ ସେ ପୁଣି ଥରେ ଚମକି ପଡ଼ିଲା ।

ଟ୍ରେରେ ଥିଲା ସିମି ପସନ୍ଦର ଜଳଖିଆ ।

'ଓଃ-ଫଟୋ ଦେଖୁଛ ? ନିଶୀଥଠାରୁ ଗତଥର ମାଗି ଆଣିଥିଲି । ଫଟୋ ଏତେ ସୁନ୍ଦର ଲାଗିଲା ଯେ ଏଠି ସଜେଇ ଦେଇଛି । ତୁମକୁ ଯଦି ଭଲ ନ ଲାଗୁଛି, କହିବ ତ, ବାହାର କରିଦେବି ।' ସମ୍ବିତ୍‌ଙ୍କ କଣ୍ଠରେ ଦୋଷୀଦୋଷୀ ଭାବ ।

ସିମି ଏ ପ୍ରସଙ୍ଗକୁ ବଦଳାଇବାକୁ ଯାଇ ପ୍ରଶ୍ନ କଲା - 'ଆପଣ କାହିଁକି ଚା' ଆଣିଲେ ! କିଶୋର ଆଣିଥାନ୍ତା ।'

'କିଶୋର ଘର ସେଇ ବସ୍ତିରେ, ଯେଉଁଠି ଦଙ୍ଗା ହୋଇଛି । ଏ ଘଟଣାକଥା ଶୁଣିଲାମାତ୍ରେ ଖୁବ୍ କାନ୍ଦିଲା । ବୁଢ଼ୀମା'କୁ ଦେଖିବାକୁ ଜଙ୍ଗଲି ପାଦଚଲା ରାସ୍ତାରେ ଯାଇଛି । କହିଛି, କାଲି ସକାଳୁ ଫେରିଆସିବ ।' ସମ୍ବିତ୍ ସହଜ ଗଳାରେ ଉତ୍ତର ଦେଲେ ।

ସିମିର କପାଳ କୁଞ୍ଚିତ ହୋଇ ଆସିଲା । ସାମାନ୍ୟ ପରିଚିତ ଯୁବକଟିର ଘରେ ତା' ସହିତ ଏକୁଟିଆ ରାତ୍ରିଯାପନ... ଆଉ ଯଦି ଅଘଟଣ କିଛି ଘଟେ ! ସମ୍ବିତ୍‌ଙ୍କ ଆଦିମତା ଯଦି ତାକୁ କ୍ଷତ ବିକ୍ଷତ କରେ, ତେବେ ସେ କ'ଣ କରିପାରିବ ? ସିମିର ଶ୍ୱାସରୁଦ୍ଧ ହେବା ପରି ଅବସ୍ଥା ।

'ସାରାଦିନ ଆଜି ଉପବାସ ରହିଛ । କିଛି ଖାଇନିଅ । ତୁମକୁ ଅପେକ୍ଷା କରି ମୁଁ ବି ଖାଇପାରିଲିନି । ଅନେକ ଥର ଡାକିବାକୁ ଚେଷ୍ଟା କରିଛି, କିନ୍ତୁ ତୁମ ନିଦ ଭାଙ୍ଗିବାକୁ ଇଚ୍ଛା ହେଲାନାହିଁ । ପ୍ଲିଜ୍, କିଛି ଖାଅ ।' ସମ୍ବିତ୍ ସ୍ନେହଭରା ଅନୁରୋଧ କଲେ ।

ସିମି ନୀରବରେ ସମ୍ବିତ୍‌ଙ୍କ ସହ ଖାଇଲା । ଖାଇବା ପରେ ସମ୍ବିତ୍ କହିଲେ, ''କିଏ ଜାଣେ, ଏ ପରିସ୍ଥିତି କି ପ୍ରକାରର ରୂପ ନେବ ! ତୁମ ପାଖରେ ଚେଞ୍ଜ୍ କରିବାକୁ କିଛି ନାହିଁ । କିଛି ଦରକାରୀ ଜିନିଷ ତୁମ ପାଇଁ ନେଇଆସେ । ମୁଁ ବାହାରୁ ଲକ୍ କରିଦେଇ ଯାଉଛି, ବ୍ୟସ୍ତ ହେବନାହିଁ ।'

ସମ୍ବିତ୍ ତଳକୁ ଓହ୍ଲାଇଗଲେ ।

ସିମି ଦୁଶ୍ଚିନ୍ତାରେ ଛନ୍ଦି ହୋଇପଡ଼ିଲା ଓ ନିଜକୁ ଖୁବ୍ ଅସହାୟ ମନେକଲା ।

ସମୟ କେତେ ହେବ କେଜାଣି, ରୁମ୍ ଦରଜାରେ ଠକ୍‌ଠକ୍ ଶବ୍ଦରେ ସିମିର ନିଦ ଭାଙ୍ଗିଲା । ରୁମ୍ ବାହାରକୁ ଆସି ଦେଖିଲା ଓଦା ଦେହରେ ସମ୍ବିତ୍ ଠିଆ ହୋଇଛନ୍ତି । କପାଳ ଓ ଦୁଇହାତ ଖଣ୍ଡିଆ ହୋଇ ରକ୍ତ ଝରୁଛି ।

'ଆପଣଙ୍କର ଏ ଅବସ୍ଥା... ' ସିମିର ଗଳା ରୁନ୍ଧି ହୋଇଗଲା ସମ୍ବିତ୍‌ଙ୍କ ବିପର୍ଯ୍ୟୟ ରୂପ ଦେଖିକରି ।

'ସହର ଯେମିତି ଏ ଦଙ୍ଗାରେ ଧ୍ୱଂସ ପାଇଯିବ । ମାର୍କେଟରୁ ଫେରୁଛି ତ ଗଣ୍ଡଗୋଳ

ଆରମ୍ଭ ହେଲା । ଧସ୍ତାଧସ୍ତିରୁ ରକ୍ଷାପାଇବାକୁ ସରୁ କେନାଲକୂଳ ବାଟେ ଆସୁଥିଲାବେଳେ ଏ ଦୁର୍ଦ୍ଦଶା ।' ତା' ହାତକୁ ପ୍ୟାକେଟ୍ ବଢ଼ାଇ ଦେଉଦେଉ ସମିତ୍ ଉତ୍ତର ଦେଲେ ।

'କ'ଣ ଦରକାର ଥିଲା ଏ ସବୁର ? ରାତିଟିଏ ମୁଁ ଚଳାଇ ନେଇଥାନ୍ତି ।' ସିମି ବ୍ୟସ୍ତ ହୋଇଉଠିଲା ।

'ମୋତେ ଗୋଟେ କପ୍ ଚା' ଦେଇପାରିବ ସିମି ।' ସମିତ୍ ଅନୁରୋଧ କଲେ ।

'ଆପଣ ପ୍ରଥମେ ଚେଞ୍ଜ କରିଦିଅନ୍ତୁ ।' ସେ ତଳମହଲାକୁ ଓହ୍ଲାଇଗଲା ।

ସମିତ୍ ଚେଞ୍ଜ କରିନେବା ଭିତରେ ସେ ଚା' ଧରି ପହଞ୍ଚିଗଲା ଚା' ବଢ଼ାଇଦେଇ ପ୍ରଶ୍ନ କଲା, 'ଫାଷ୍ଟଏଡ୍ କେଉଁଠି ଅଛି ।'

ସମିତ୍ ଡ୍ରୟାରକୁ ଇଶାରା କଲେ । ସିମି ଫାଷ୍ଟଏଡ୍ ବକ୍ସ ଧରି ପାଖକୁ ଆସିଲା । କ୍ଷତସ୍ଥାନକୁ ସାଭଲନ୍‌ରେ ପୋଛି ଦେଇ ଆଣ୍ଟିସେପ୍ଟିକ୍ କ୍ରିମ୍ ଲଗାଇଲା ଓ ବ୍ୟାଣ୍ଡେଜ୍ କରିଦେଲା । ସେ ଅନୁଭବ କଲା ସମିତ୍‌ଙ୍କ ଦେହରେ ଉତ୍ତାପ ।

'ଡେରି ହେଲାଣି, ତୁମେ ଖାଇନିଅ । ମୋର ଖାଇବାକୁ ଇଚ୍ଛାନାହିଁ ।' ସମିତ୍ ଅନୁରୋଧ କଲେ ।

'ନା, ମୋତେ ବି ଇଚ୍ଛା ଲାଗୁନି । ସଂଧ୍ୟାରେ ବହୁତ ଖାଇଛି ।' ସିମି ଉତ୍ତର ଦେଲା ।

'ଠିକ୍ ଅଛି, ମୁଁ ତଳ ଗେଷ୍ଟରୁମ୍‌ରେ ଶୋଇଛି, କିଛି ଦରକାର ହେଲେ ଡାକିବ ।' ଦେହରେ ସାଲଟିଏ ଘୋଡେଇହେଇ ସମିତ ତଳକୁ ଓହ୍ଲାଇଗଲେ ।

ସିମିର ନିଦ ଭାଙ୍ଗିଲା  ବେଳକୁ ଚାରିଆଡ଼େ ସୁନେଲି ସୂର୍ଯ୍ୟାଲୋକ ଝଲମଲ କରୁଥିଲା । ପାଖ ମନ୍ଦିରରେ ସକାଳ ଘଣ୍ଟାଆଳତୀ ସ୍ପଷ୍ଟ ଶୁଭୁଥିଲା ।

ସେ ତରତର ହେଲା, ଫ୍ରେଶ୍ ହୋଇ ଘରକୁ ଫେରିବ । କାମସାରି ବାହାରକୁ ଆସିଲା ସିମି । କାହିଁ, ସମିତ୍ ତ ଦିଶୁନାହାନ୍ତି । ଭାବିଲା, ବୋଧେ ବାହାରକୁ ଯାଇଥିବେ । ତଳକୁ ଓହ୍ଲାଇ ଦେଖିଲା, ମୁଖ୍ୟ ଦରଜା ଭିତରୁ ବନ୍ଦ । ଶୁଣିଥିଲା, ସମିତ୍ ଭୋର୍‌ରୁ ଉଠନ୍ତି ଓ ବଗିଚାରେ ବୁଲିବୁଲି ଫୁଟନ୍ତା ଫୁଲ, ଚଢ଼େଇ ଓ ସୂର୍ଯ୍ୟୋଦୟ ଦେଖନ୍ତି ।

ତା'ର ମନେପଡ଼ିଲା, ଗତରାତିର କଥା । ଧୀରେଧୀରେ ଗେଷ୍ଟରୁମ୍ ପାଖକୁ ଯାଇ ପରଦା ଟେକିଲା ଓ ଦେଖିଲା ସମିତ୍ କଡ଼ମାଡ଼ି ଶୋଇଛନ୍ତି । ତାଙ୍କ ମୁହଁ ପାଉଁଶିଆ ଦିଶୁଛି । ଦେହ ବରାଡ଼ାପତ୍ର ପରି ଥରିଉଠୁଛି ।

ସିମି ସଙ୍କୋଚ ଛାଡ଼ି ତାଙ୍କ ପାଖକୁ ଗଲା । ସମିତ୍‌ଙ୍କ କପାଳରେ ହାତ ରଖିଲା । ଉତ୍ତାପରେ ତା' ହାତ ଜଳିଗଲାପରି ମନେହେଲା । ଅପରାଧବୋଧରେ ସେ ନିଜଭିତରେ ସାଙ୍କୁଡ଼ିଗଲା... ତା'ରି ପାଇଁ ହିଁ ତାଙ୍କର ଏ ଅବସ୍ଥା ।

ସେ ସମିତ୍‌ଙ୍କର କପାଳରେ ପାଣିପଟି ପକାଇ ବସିରହିଲା । ଜାଣେନା, ଡାକ୍ତରଙ୍କ ଠିକଣା କିମ୍ବା ମେଡ଼ିସିନ୍ ଷ୍ଟୋର କଥା । ଅଧଘଣ୍ଟାଏ ବିତିଗଲା ପରେ ବି ସମିତ୍ ଆଖି ଖୋଲିଲେ ନାହିଁ । ସିମି ବ୍ୟସ୍ତ ହୋଇ ଉପରକୁ ଆସିଲା । ସମିତ୍ ଗତ ରାତିରେ ତା' ପାଇଁ

ଆଣିଥିବା ଶାଢ଼ୀରୁ ଖଣ୍ଡେ ବଦଳାଇଦେଇ ପର୍ସ ଧରି ଗେଟ୍‌ରେ ତାଲା ପକାଇଲା ଓ ଚାଲିଚାଲି ମେନ୍‌ରୋଡ୍ ପର୍ଯ୍ୟନ୍ତ ଆସିଲା । କାଁ-ଭାଁ ଲୋକ ଦିଶୁଛନ୍ତି । ଖୁବ୍ କଷ୍ଟରେ କିଛି ଦୂରରେ ଥିବା ମେଡ଼ିସିନ ଷ୍ଟୋର୍‌ର ଠିକଣା ବୁଝି ମେଡ଼ିସିନ୍ ଧରି ଫେରିଲା ।

ସମ୍ବିତ୍ ତଥାପି ଶୋଇରହିଥିଲେ । ପାଣିପଟି ପାଇଁ ଜ୍ୱର କିଛି ମାତ୍ରାରେ କମିଯାଇଥିଲା । ସେ ପାଣିପଟି ବଦଳାଇଦେଇ ତାଙ୍କ ଝାଳୁଆମୁହଁକୁ ନିଜ ପଣତକାନିରେ ପୋଛିଦେଲା । ସମ୍ବିତ୍ ଆଖି ଖୋଲିଲେ । ଆଖି ଦିଓଟି ରକ୍ତ ପଦ୍ମପରି ଦିଶୁଥିଲା । ସିମିକୁ ନିକଟରେ ବସିଥିବା ଦେଖି ତାଙ୍କ ମୁହଁରେ ହସ ଚହଟିଗଲା ।

'ଉଠନ୍ତୁ, ଫ୍ରେଶ୍ ହୋଇ ମେଡ଼ିସିନ୍ ଖାଇନେବେ ।' ସମ୍ବିତ୍‌ଙ୍କ ବେକତଳେ ହାତରଖି ଉଠାଇଲା ସିମି । ତା' ମନରେ ପୂର୍ବଦିନର ଲଜ୍ଜା ସଙ୍କୋଚ କିଛି ନଥିଲା । ସମ୍ବିତ୍ ନିହାତି ଆତ୍ମୀୟ ପରି ମନେହେଉଥିଲେ ।

ସମ୍ବିତ୍‌ଙ୍କ କାମସାରି ମେଡ଼ିସିନ୍ ଖୁଆଇଲା ପରେ ସିମି କହିଲା, 'ଆଜି ଏଭଳି ଅସୁସ୍ଥତାରେ ଆପଣ ଅଫିସ୍ ଯିବା ଠିକ୍ ହେବନି ।'

ସମ୍ବିତ୍ ମୁଣ୍ଡ ହଲାଇ ହଁ ଭରିଲେ । ସିମି ଇତସ୍ତତଃ ହୋଇ କହିଲା- 'ମୁଁ ଆଜି ବାରଟା ଟ୍ରେନ୍‌ରେ ଫେରିଯିବି ।'

ସମ୍ବିତ୍‌ଙ୍କ ହସିଲା ମୁହଁ ଝାଉଁଳି ଗଲା । ଏତିକିବେଳେ କିଶୋର ଫେରିଲା... ।

'ବାବୁ, ମୋର ଡେରି ହୋଇଗଲା । ଚାରିଆଡ଼େ ପୋଡ଼ାଜଳା । ଗାଡ଼ି, ମଟର, ଟ୍ରେନ୍, ସବୁ ବନ୍ଦ । ପୁଲିସ୍‌ଗୁଳିରେ ଦି'ଟା ଲୋକ କାଲି ରାତିରେ ମରିଛନ୍ତି । କର୍ଫ୍ୟୁ ଜାରି ହୋଇଛି ।

କିଶୋର ଧଇଁସଇଁ ହୋଇଯାଉଥିଲା । ସିମି ଆଖିରୁ ଲୁହ ଦି'ଟୋପା ଖସିପଡ଼ିଲା । କାଲିରାତିରୁ ଫୋନ୍ ଆଉଟ୍ ଅଫ୍ ଅର୍ଡ଼ର । ଘରେ ସମସ୍ତେ ବ୍ୟସ୍ତ ହେଉଥିବେ, ଅଥଚ ଏଠି ପହଞ୍ଚିପାରୁନଥିବେ ।

'ତୁମେ କାନ୍ଦୁଛ ସିମି ! ଅବସ୍ଥା ଠିକ୍ ହୋଇଗଲେ ମୁଁ ନିଜେ ନେଇ ଛାଡ଼ିଦେଇ ଆସିବି' ଆଶ୍ୱାସନା ଦେଲେ ସମ୍ବିତ୍ ।

ସମ୍ବିତ୍‌ଙ୍କ ସେବା ଶୁଶ୍ରୁଷା କରିବାରେ, କିଶୋରର ଅନାବିଳ ସ୍ନେହ ଭିତରେ, କେମିତି ତିନିଦିନ କଟିଗଲା ସିମିକୁ ଜଣାପଡ଼ିଲା ନାହିଁ । ଚତୁର୍ଥଦିନ ସକାଳେ ଜନଜୀବନ ସାଧାରଣ ହେବାବେଳକୁ ବଡ଼ଭାଇ ସିମିକୁ ନେବାକୁ ଆସିଲେ । ସେ ସୁରକ୍ଷିତ ଥିବାରୁ ସମ୍ବିତ୍‌କୁ କୃତଜ୍ଞତା ଜଣାଇଲେ ।

ସିମି ଶାଢ଼ୀ ପିନ୍ଧି ରୁମ୍‌ରୁ ବାହାରିଲାବେଳେ ସମ୍ବିତ୍ ପ୍ରଶ୍ନ କଲେ, 'ଯଦି ଅନୁମତି ଦେବ, ତୁମ ସହିତ ଘରକୁ ଯାଇ ଛାଡ଼ିଦେଇ ଆସିବି ।'

ତାଙ୍କ ମୁହଁକୁ ଚାହିଁ ସିମି ହସିଲା ଓ ଦୃଷ୍ଟି ତଳକୁ କରି କହିଲା - 'ଆଜି ଛାଡ଼ିବାକୁ ଯିବା ଦରକାର ନାହିଁ, ବରଂ ମୋତେ ନେଇଆସିବାକୁ ଗୋଟେ ଶୁଭ ଲଗ୍ନରେ ଯିବେ ।'

# ଗୋଟିଏ ଚୋରର କାହାଣୀ

ନିଃସଙ୍ଗତା ଓ ନିର୍ଜନତା ମଧ୍ୟରୁ କାହାକୁ ବାଛିବେ ! ଆପଣଙ୍କ ଉତ୍ତର ଜାଣେନା । ମୋତେ ଯଦି ପ୍ରଶ୍ନ କରାଯାଏ, ତେବେ କହିବି - ଦୁହିଁଙ୍କୁ ଏକାସାଙ୍ଗରେ ପସନ୍ଦ କରିବି । କେବଳ ସେଥିପାଇଁ କିଛିଦିନ ପାଇଁ ଏଠିକୁ ଚାଲି ଆସିଲି ।

ଏକିଲନ୍ ନାମକ ଗାଁର ଶେଷପ୍ରାନ୍ତରେ ଓ ପାହାଡ଼ରର ପାଦଦେଶରେ ଏଇଟି ଏଠିକାର ଏକମାତ୍ର କଟେଜ । ଏଠାରୁ ଦୁଇ କିଲୋମିଟର ଦୂରରେ ବଡ଼ ନଦୀଟିଏ ଅଛି । ଏକିଲନ୍ ଗାଁର ସମସ୍ତେ ମତ୍ସ୍ୟଜୀବୀ । ମାଛ ମାରିବାକୁ ଯାଆନ୍ତି । ସମସ୍ତଙ୍କର ଡଙ୍ଗା ଅଛି । ସକାଳୁ ଅଧିକାଂଶ ସ୍ତ୍ରୀଲୋକ ଡଙ୍ଗା ପାଖକୁ ଯାଆନ୍ତି ଓ ଟୋକେଇ ଭର୍ତ୍ତି ମାଛ ନେଇ ଘରକୁ ଫେରନ୍ତି । ମଧ୍ୟରାତ୍ରି ପରେ ପୁରୁଷମାନେ ମାଛ ଧରିବାକୁ ବାହାରିଯାଆନ୍ତି । ପବନ ବେଳେବେଳେ ଗାଁପଟୁ ଭସେଇ ଆଣେ ମାଛ ଶୁଖୁଆର ଗନ୍ଧ ।

ମୁଁ ଏଠିକି ଦଶଦିନ ପାଇଁ ଆସିଛି । ପଚାରି ବୁଝିଲି ଗାଁରେ ହୋଟେଲ୍ ନାହିଁ । କିନ୍ତୁ ରୂପା ବୋଲି ବୟସ୍କା ମହିଳାଟିଏ ଏଠିକୁ କେହି ରହିବାକୁ ଆସିଲେ ରୋଷେଇ କରିଦିଏ । ତାକୁ ଡାକି ଦଶଦିନ ପାଇଁ ଖାଦ୍ୟପେୟ ବ୍ୟବସ୍ଥା ପାଇଁ ଟଙ୍କା ଧରାଇ ଦେଇ ନିଶ୍ଚିନ୍ତ ହୋଇଗଲି । ସେତେବେଳେ ଏଠି ଶୀତଋତୁ । ପୁଣି ପାର୍ବତ୍ୟାଞ୍ଚଳର ଶୀତଋତୁ । କଟେଜ୍‌ରେ ଗୋଟେ ସୁନ୍ଦର ଫାୟାରପ୍ଲେସ୍ ଥିଲା । ରୂପା ପ୍ରଶ୍ନକଲା - ''ବାବୁ, ଏ ଦିନେ ଭାରି ଶୀତ ହୁଏ । ତୁମର କାଠ ଦରକାର କି ନାହିଁ ?''

-''କ'ଣ ପାଇଁ ?'' ହଠାତ୍ ପାଟିରୁ ବାହାରି ପଡ଼ିଲା ।

-''ତୁମେ ଶୀତରେ କ'ଣ ଥରିବ ! ନିଆଁ ପୁଆଁଇବ କି ନାହିଁ ?''

-''ଓଃ -ଏଇକଥା । ନିଶ୍ଚୟ ଦରକାର ହେବ ।'' କହି ତାକୁ ଚାହିଁଲି ଓ ଅପେକ୍ଷା କଲି ପରବର୍ତ୍ତୀ ସଂଳାପକୁ ।

-''ହେଉ, ଗାଁରେ ଗୋଟେ କାଠକଟାଳି ଅଛି । ତାକୁ କିଛି ପଇସା ଦେଲେ ସେ କାଠ ଦେଇଯିବ ।'' ରୂପା ଉତ୍ତର ଦେଲା ।

-''ଟଙ୍କା କିଛି ନେବ କି ?'' ମୁଁ ପକେଟ୍‌ରେ ହାତ ଭର୍ତ୍ତି କଲି ।

-''ନାଇଁ ବାବୁ, ମୁଁ କାହିଁକି ନେବି ! ସେ ଆଣୁ ତ ଆଗ ।'' କହି ସେ ରୋଷେଇ ସରଞ୍ଜାମ ପାଇଁ ବାହାରି ଗଲା ।

ମୁଁ ରୁମ୍ ଭିତରକୁ ଗଲି । କେତେମାସ ହେବ ବୋଧହୁଏ ଅବ୍ୟବହୃତ ଥିଲା । ସାମାନ୍ୟ ଉଷୁମୁଳିଆ ବାସ୍ନା ବାହାରୁ ଥିଲା । କବାଟ ଝରକା ସବୁ ଖୋଲିଦେଲି । ବାହାରୁ ଥଣ୍ଡାପବନ ଭିତରକୁ ପଶି ଆସିଲା । ରୁମ୍ ବେଶ୍ ପରିଷ୍କାର ପରିଚ୍ଛନ୍ନ ଥିଲା । ଆଠ ଦଶ

ଜଣ ଚଳପ୍ରଚଳ ହେବା ପରି କଟେଜ୍‌ଟି । ଭଲ ଡାଇନିଙ୍ଗ୍ ହଲ୍, ପ୍ରଶସ୍ତ କିଚେନ୍ ରୁମ୍, ଫାୟାର ପ୍ଳେସ୍ ସହ ରୁମ୍ ଗୁଡ଼ିକ ବଡ଼ ବଡ଼ ଥିଲା । ଏ କଟେଜ୍‌ଟିର ଠିକଣା ମୋତେ ଜଣେ ବନ୍ଧୁ ଦେଇଥିଲେ ।

ସହରର କୋଳାହଳ, କାର୍ଯ୍ୟବ୍ୟସ୍ତତା, ସାଂସାରିକ ଜଞ୍ଜାଳ ଭିତରେ ଏଠିକାର ନିର୍ଜ୍ଜନତା ବେଶ୍ ଉପଭୋଗ୍ୟ ମନେ ହେଲା । ନିର୍ଜ୍ଜନତାର ଗୋଟେ ସୁନ୍ଦର ରଙ୍ଗ ଅଛି, ମଧୁର ସ୍ୱର ଥିବାରୁ ପ୍ରଥମଥର ପାଇଁ ଅନୁଭବ କଲି । ଲାଗିଲା ସତେ ଯେମିତି ମୁଁ ଚଢ଼େଇଟିଏ, ଯିଏ କାଳକାଳ ଧରି ଦେଖୁଥିଲା ବାହାର ଅଗଣାରୁ ଚେନାଏ ଆକାଶ । କିନ୍ତୁ ଉଡ଼ିବାର ସୁଯୋଗ ନଥିଲା ଛୋଟିଆ ପଞ୍ଜୁରୀଟି ଭିତରେ । ଉଡ଼ିବାକୁ ଚେଷ୍ଟା କରି କେବଳ ପିଟି ହେଉଥିଲା ଲୁହାତାରର ପଞ୍ଜୁରୀ ଭିତରେ । ବେଳେବେଳେ ରକ୍ତାକ୍ତ ହେଉଥିଲା । ଅସହାୟତାର ଅଭିମାନରେ ଛାଟିପିଟି ହେଉଥିଲା ଓ ନିଜକୁ କଷ୍ଟ ଦେଉଥିଲା ।

ସହରସାରା ଲୋକ ଆଉ ଲୋକ । ସତେ ଯେମିତି ସହରଟା ଗୋଟେ ବଡ଼ ନର୍ଦ୍ଦମା ଆଉ ମଣିଷମାନେ କୀଟ ପରି ତା' ଭିତରେ ଅଣନିଃଶ୍ୱାସୀ ହୋଇ ଧାଉଁଛନ୍ତି । ନିଜକୁ ପ୍ରତିଷ୍ଠା କରିବାକୁ ପ୍ରତିଯୋଗିତା କରୁଛନ୍ତି, ଅନ୍ୟକୁ ପାହାଚ କରି ତା' ଉପରେ ଚଢ଼ି ପଳାଉଛନ୍ତି । ଗାଡ଼ିମୋଟର, ଧୂଳିଧୂଆଁ, ହୋହାଲ୍ଲା, ପ୍ରଦୂଷଣ, ବିରକ୍ତିଠାରୁ ଏଠିକାର ନିଃସଙ୍ଗତାରେ ମାଧୁର୍ଯ୍ୟ ଓ ପ୍ରଶାନ୍ତି ଅଛି ବୋଲି ଅଳ୍ପକ୍ଷଣ ମଧରେ ଅନୁଭବ କଲି । ସହରର ଦୌଡ଼ ଭିତରେ ନିଜ ସମ୍ପର୍କରେ ଚିନ୍ତା କରିହୁଏନା । ଆତ୍ମସମୀକ୍ଷା ତ ଖୁବ୍ ଦୂରର କଥା । ପୁଣି ଅପହଞ୍ଚ ମାନବିକ ସମ୍ପର୍କ ପ୍ରତି ଅଙ୍ଗୀକାରବଦ୍ଧତା !

ମନେ ମନେ ବନ୍ଧୁଟିକୁ ଧନ୍ୟବାଦ ଦେଲି । ଆଖିରେ ପଡ଼ିଲା ଦଳେ ଚଢ଼େଇ କିଚିରିମିଚିରି ହୋଇ ଆକାଶରେ ଉଡ଼ିଯାଉଛନ୍ତି । କି ମତୁଆଲା ବେଗ ସେମାନଙ୍କର ! ପରସ୍ପର ଦେହରେ ଢାଣିଶୁଣି ଘଷି ହୋଇ ଧକ୍କା ଖାଇ ଉଡ଼ିଯାଉଛନ୍ତି ପବନ ଦୋଳିରେ । ହଠାତ୍ ଅନୁଭବ କଲି ବି ମୁକ୍ତ ଆକାଶର ଚଢ଼େଇ ହୋଇଯାଇଛି । ଯାହା ଦେହରେ ଏବେ ଅସୀମ ଶକ୍ତି ଉଡ଼ିବା ପାଇଁ, ଯାହା ମନରେ ଆକଣ୍ଠ ତୃଷ୍ଣା ଆକାଶର ନୀଳିମା ପିଇବା ପାଇଁ । ଦୁଇହାତ ଉପରକୁ ଟେକି ଅଳସ ଭାଙ୍ଗିଲି । ପଛକୁ ମୁହଁ ଫେରାଇ ଦେଖିଲି ପାହାଡ଼ର ଛାଇ କ୍ରମଶଃ ନଇଁ ଆସୁଛି ତଳକୁ ତଳକୁ ଓ ଗଭୀର ସବୁଜ ରଙ୍ଗଟିଏ ପାହାଡ଼ ଦେହରେ ଆଙ୍କି ହୋଇଯାଉଛି ।

ରୁମ୍‌ରେ ଥିଲା ଏକ କାଠ ଆଲମିରା । ମେହେଗାନି କାଠରେ ତିଆରି ସୂକ୍ଷ୍ମ କାରୁକାର୍ଯ୍ୟ ଫୁଟି ଉଠିଛି ତହଁରେ । ଆଲମିରା ଖୋଲି ପୋଷାକ ପତ୍ର ଆଦି ରଖିଦେଲି । ବିଛଣାରେ ସଫା ବେଡ୍‌ସିଟ୍‌ଟିଏ ପଡ଼ିଥିବା ସତ୍ତ୍ୱେ ସାଙ୍ଗରେ ନେଇଥିବା ବଡ଼ ବେଡ୍‌ସିଟ୍‌ଟି ପକାଇ ଦେଇ ଲମ୍ବିଗଲି । ଆଖିବନ୍ଦ କରି ଶୁଣିଲି ପାଖ ଗଛ ଡାଳରେ ବସି ବସି ରାଜବଣି ଗୀତ ଗାଉଥିଲା । ପବନର ଶିରିଶିରି ଶବ୍ଦ ଖୁବ୍ ନୂଆ ଲାଗିଲା । ନିର୍ଜ୍ଜନତା ଓ ନିଃସଙ୍ଗତା ହାତ ଧରାଧରି ହୋଇ ନାଚିନାଚି ଗୀତ ଗାଉଥିଲେ ମଧୁର ସ୍ୱରରେ, ଅଥଚ ଦୁର୍ବୋଧ ଭାଷାରେ । ଯାତ୍ରାପଥର କ୍ଳାନ୍ତି ମୋ ଆଖିରେ ଛାଇଦେଲା ବହଳ ନିଦ ।

କିଛି ସମୟ ପରେ ମୋ ନିଦ ଭାଙ୍ଗିଗଲା ପରିଚିତ ନାରୀକଣ୍ଠର ତୀକ୍ଷ୍ଣତାରେ । ଶୁଣିଲି- ''ହଇରେ ଚୋର, ତୋତେ ସେତେବେଳୁ କହିଲିଣି କାଠପାଇଁ । ଗୋଛାଏ କାଠ ପାଇଁ ଏତେ ଡେରି କଲୁ । ମାଗଣାରେ ଦେଉନଥିଲୁ । ହକ୍ ପଇସା ନେବୁ ନା ନାହିଁ ?''

ପ୍ରତ୍ୟୁତ୍ତର କିଛି ଶୁଣାଗଲା ନାହିଁ । ମୁଁ ଉଠି ଆସିଲି ବାହାରକୁ । ଦେଖିଲି ରୂପା ରାଗରେ ଲାଲ୍ ଦିଶୁଛି ଓ ପାଖରେ ଠିଆ ହୋଇଥିବା ଲୋକଟି ନୀରବରେ ତଳକୁ ମୁହଁ କରିଛି । ମୋତେ ଦେଖିବା ମାତ୍ରକେ ରୂପା କହିଲା- ''ଦେଖନ୍ତୁ ତ ବାବୁ, ମାଗଣାରେ ଦେବା ପରି ଏ ଚୋର କାଠ ଆଣିବାକୁ ଡେରି କଲା । ରାତିରେ ଆପଣ ଶୀତରେ ଥରିଥାନ୍ତେ କି ନାହିଁ ?''

-''ରାତି ହୋଇନାହିଁ । ବ୍ୟସ୍ତ ହୋଇ ଗାଳି ଦିଅନାହିଁ । ତୁମ ପଇସା କେତେ ?'' ରୂପାକୁ ଚୁପ୍ କରାଇବାକୁ ଯାଇ ଲୋକଟି ପ୍ରଶ୍ନ କଲି ।

-''ଆପଣଙ୍କ ଇଚ୍ଛା ଯାହା ଦେବେ ।'' ମୁଣ୍ଡ ନ ଉଠାଇ ସେ କହିଲା ।

-''ବାବୁ, ତାକୁ ପାଞ୍ଚଟଙ୍କା ଦିଅନ୍ତୁ ।'' ରୂପା ମଝିରେ ମଧ୍ୟସ୍ଥତା କଲା ।

ଇଏ ପାଞ୍ଚଟଙ୍କାର କାଠ ! ଇସ୍ - ସହରରେ ଏ କାଠର ଦାମ୍ ପଚାଶ ଟଙ୍କାରୁ ଅଧିକ ହେବ । କୋଡ଼ିଏ ଟଙ୍କାର ନୋଟ୍ ବାହାର କରି ତାକୁ ବଢ଼ାଇ ଦେଲି । ତା' ଦୃଷ୍ଟିରେ ଥିଲା ଅନିଚ୍ଛାଭାବ । ମୁଁ ପାଦେ ଆଗେଇଯାଇ ତା' ହାତରେ ଧରାଇ ଦେଇ କହିଲି - ''ନିଅ ଖୁସିରେ ଦେଉଛି ।''

-''ଚୋର, ବୁଝିଲୁ ତୋ ଭାଗ୍ୟ ଆଜି ଟେକ୍ ।'' ରୂପା ସ୍ୱରରେ ପୂର୍ବର ରାଗ ଅପେକ୍ଷା କେମିତି ଗୋଟେ ଆନ୍ତିରିକତା ଥିଲା ।

-''ଆଚ୍ଛା, ତୁମ ନାଁ କଣ ?'' ମୁଁ ଲୋକଟିକୁ ପ୍ରଶ୍ନ କଲି । କାରଣ ରୂପା ତାକୁ ବାରମ୍ବାର ଚୋର ବୋଲି କହୁଥିଲା ଯାହା ମୋତେ ଆଦୌ ଭଲ ଲାଗୁନଥିଲା । ସାଢ଼େ ପାଞ୍ଚଫୁଟ ଲମ୍ବ ଥିଲା ସେ । ପତଳା ଚେହେରା, କିନ୍ତୁ ସୁନ୍ଦର ଗଢ଼ଣ ଥିଲା । ଆକାଶ ପରି ଗଭୀର ଆଖି ଦିଓଟିରେ ମୋ ପ୍ରଶ୍ନ ଯେମିତି ମେଞ୍ଚାଏ କଳାବାଦଲ ହୋଇ ଭାସିଗଲା । କ୍ଷଣେ ଅଟକି ଯାଇ କହିଲା - ''ଚୋର ।'' ମୋ କଥାକୁ ଅପେକ୍ଷା ନକରି ସେ ବୁଲିପଡ଼ି ଚାଲିଗଲା ।

ସେଭଳି ଉତ୍ତରରେ ମୁଁ ବଜ୍ରାହତ ପରି ସ୍ତବ୍ଧ ହୋଇ ରହିଗଲି । ନିଜକୁ ସମ୍ଭାଳି ନେଇ ରୂପାକୁ ଚାହିଁଲି । ତା' ମୁହଁର ସରସତା ଉଭେଇ ଯାଇଥିଲା । କିଛି ନକହି ରୁମ୍ ଭିତରକୁ ଗଲି । ଲାଇଟ୍ ଅନ୍ କରି ବାଥରୁମ୍ ଯାଇ ଭଲକରି ମୁହଁ ଧୋଇନେଲି । ଶୀତ ଗୋଧୂଳିରେ ଆଞ୍ଜୁଳା ଆଞ୍ଜୁଳା ପାଣି ମଥାରେ ଢାଳିଲି । ଲୋକଟିର ଅତି ସଂକ୍ଷିପ୍ତ ଉତ୍ତର ଯେମିତି ମୋ ମସ୍ତିଷ୍କ ଭିତରେ ଜୁଆରିଆ ସମୁଦ୍ରଟିଏ ସୃଷ୍ଟି କଲା । ଆଗ୍ରହ, ବିସ୍ମୟ, ଅସହାୟତା, ଅବଶୋଷର ବିଶାଳ ଢେଉମାନ ମସ୍ତିଷ୍କ ପ୍ରାଚୀରରେ ପ୍ରଚଣ୍ଡ ଶବ୍ଦ କରି ପିଟି ହେଉଥିଲେ ।

ସାରା ସନ୍ଧ୍ୟା ମୋ ସମ୍ବେଦନଶୀଳ ମନ ଅସ୍ଥିରତାରେ ଛଟପଟ ହୋଇଉଠିଲା ।

ଏଠି ପାଦଦେବା ସମୟର ମନଲୋଭା ନିର୍ଜନତାର ହ୍ରଦରେ ସତେ ଯେମିତି ଭୟଙ୍କର ଝଡ଼ ଉଠିଛି । ଆଉ ନିଃସଙ୍ଗତାର ମଧୁର ସଙ୍ଗୀତକୁ କିଏ ଯେମିତି ବିକଟାଳ ଅଟ୍ଟହାସ୍ୟରେ ପରିଣତ କରିଦେଇଛି ।

କବାଟ ପାଖରେ ରୂପା ଆସି ଖାଇବା ପାଇଁ ଡାକିଲା । ମୁଁ ଉଠିଯାଇ ଡାଇନିଙ୍ଗ୍ ଟେବୁଲ୍‌ରେ ପହଞ୍ଚିଲି । ସେ ବାଢ଼ିଦେଲା । ପ୍ରଶ୍ନ କରିବି କି ନାହିଁ ଏଇ ଦ୍ୱନ୍ଦରେ ପଡ଼ିଲି । ତଥାପି ସନ୍ଦେହମୋଚନ ପାଇଁ ସଙ୍କୋଚ ଛାଡ଼ି ପ୍ରଶ୍ନ କଲି - ''ତୁମେ ତାକୁ ଚୋର କାହିଁକି ଡାକୁଥିଲ ? ଏପରିକି ସେ ମଧ ସେଇ ନାଁ କହିଲା । ଚୋର କେବେ ନାଁ ଭାବେ ଦିଆଯାଏ ନାହିଁ ।'' ମୋ ମତରେ ଦୃଢ଼ ହେବାକୁ ଚେଷ୍ଟା କଲି ।

ସେ ଦୀର୍ଘଶ୍ୱାସ ଛାଡ଼ି କାନ୍ଥକୁ ଆଉଜି ଠିଆ ହେଲା । ମୁଁ ଉତ୍ତର ପାଇବା ଆଶାରେ ତା' ମୁହଁକୁ ଚାହିଁଲି । ସେ କ୍ଷଣେ ଚିନ୍ତା କଲା । ନରମ ସ୍ୱରରେ କହିଲା - ''ହଁ, ବାବୁ ! କାହାରି ନାଁ ଚୋର ଦିଆଯାଏ ନାହିଁ । ତଥାପି ଗାଁରେ ତାକୁ ଚୋର ନାଁରେ ଡକାଯାଏ ।''

-''ହେଲେ କାହିଁକି ?'' ମୁଁ ଅସ୍ଥିର ହୋଇଉଠିଲି ରହସ୍ୟଭେଦ ପାଇଁ ।

-''କହୁଛି ବାବୁ ! ସେ ଛୁଆ ଚୋରି କରିଥିଲା ବୋଲି ଗାଁ ଲୋକେ ତା' ଅସଲ ନାଁ ଭୁଲି ଚୋର ବୋଲି କୋଉ କାଳୁ ଡାକୁଛନ୍ତି ।'' ସେ ଉପରକୁ ଚାହିଁ କହିଲା ।

-''ଛୁଆ ଚୋରି କଲା ।'' ରହସ୍ୟ ଆହୁରି ଘନୀଭୂତ ହେବାପରି ମନେ ହେଲା ''ହେଲେ ତା' ଅସଲ ନାଁ କ'ଣ ।'' ମୁଁ ବ୍ୟଗ୍ର ହୋଇ ଉଠିଲି ।

-''ମନୋହର ।'' ଗାଢ଼ କୁଜ୍‌ଝଟିକା ଭେଦ କରି ଦୂର ଲୋକଟିକୁ ଚିହ୍ନିବାକୁ ଚେଷ୍ଟା କଲା ପରି ରୂପା ଅଟକି ଉତ୍ତର ଦେଲା ଅନଭ୍ୟସ୍ତ ଭାବରେ ।

-''ସୁନ୍ଦର ନାଁଟିଏ । ଠିକ୍ ତା' ଚେହେରାକୁ ଖାପ ଖାଇବା ପରି ତା' ନାଁ ।'' ସ୍ମିତ ହସଟିଏ ଚହଟି ଉଠିଲା ମୋ ଉଦାସିଆ ମୁହଁରେ ।

-''ଜାଣ ବାବୁ, ତା' ସ୍ତ୍ରୀର ପାଦ ଭାରି ଥିଲା । ଇଏ ତାକୁ ଡାକ୍ତରଖାନା ନେବା ରାସ୍ତାରେ ପଡ଼ିଯିବାରୁ ପିଲାଟି ମଲା ଜନ୍ମ ହେଲା । ସ୍ତ୍ରୀକୁ ବୋଧ ଦେବାକୁ ସେ ଛୁଆଟିଏ ଚୋରି କଲା ବୋଲି ଶୁଣାଗଲା । ସେହିଦିନୁ ଗାଁରେ ତାକୁ ଚୋର ଡାକନ୍ତି ।'' ଏତକ କହି ସେ ଆଉଥରେ ଦୀର୍ଘଶ୍ୱାସ ଛାଡ଼ିଲା ଓ କହିଲା - ''ଖାଇଦିଅ ନିଅ ବାବୁ ।''

ଅଧିକ ପ୍ରଶ୍ନ ନକରି ଖାଇନେଲି । ରୂପା ଚାଲିଗଲା । ଯିବା ପୂର୍ବରୁ କହିଗଲା ଯେ ପହରାଦାର୍ ବୁଢ଼ା ବିଳମ୍ବରାତ୍ରିରେ ଜଗିବାକୁ ଆସିବ । ମୁଁ ଖାଇନେଇ ଶୋଇବାକୁ ଗଲି । ରୂପା ସଞ୍ଜରୁ ଫାୟାର୍ ପ୍ଲେସରେ ନିଆଁ ଜାଳିଦେଇ ଉଷୁମ କରିଥିଲା ।

ଝରକା ଖୋଲିଦେଲି । ରୁମ୍‌ର ଲାଇଟ୍ ଅଫ୍ କରି ଚେୟାରଟିଏ ପକାଇ ଝରକା ପାଖରେ ବସିଲି । ବାହାରେ ଦଶମୀର ଚନ୍ଦ୍ରାଲୋକ ମୁଠା ମୁଠା ମଲ୍ଲୀଫୁଲ ପରି ଝରିପଡୁଛି । ରାତ୍ରିଚର ପକ୍ଷୀଙ୍କର ସ୍ୱର ମଝିରେ ମଝିରେ ଶୁଣାଯାଉଛି । ରୂପା କହୁଥିଲା ପାହାଡ଼ିଆ ହରିଣମାନେ ପାଖ କ୍ଷେତକୁ ଚରି ଆସି ଫସଲ ନଷ୍ଟ କରନ୍ତି । ତେଣୁ ମଞ୍ଚା ବାନ୍ଧି ଲୋକେ

ଫସଲ ଜଗନ୍ତି । ଆଖିରେ ପଡ଼ିଲା ବଡ଼ ବଡ଼ ମଞ୍ଚା ସ୍ପଷ୍ଟ ଚନ୍ଦ୍ର ଆଲୁଅରେ । ଭାବିଲି ଏଭଳି ସୁନ୍ଦର ପରିବେଶର ପଲେ ହରିଣଙ୍କୁ ଦେଖନ୍ତି କି ? ତେବେ ହରିଣ ଦେଖା ପାଇଁ ସାରାରାତି ଅନିଦ୍ରା ହେବାକୁ ପଡ଼ିବ ବୋଧେ। ନା- ହରିଣ ଦେଖା ଥାଉ । ଅନେକ ମାସ ଧରି ଅସମ୍ପୂର୍ଣ୍ଣ ଥିବା ଉପନ୍ୟାସଟିକୁ ଏଇଠି ସାରି ଦେବାକୁ ମନସ୍ଥ କରି ଘରୁ ବାହାରିଛି । ଝରକା ବନ୍ଦ କରି ବିଛଣାରେ ଆସି ବସିଲି ।

ରୁଚି ସବୁବେଳେ ଏଥିପାଇଁ ବିରକ୍ତ ହେଉଥିଲା - ''ସ୍ତ୍ରୀଲୋକଙ୍କ ଭଳି ଘରଦ୍ୱାର ନିଶାରେ ନିଜ କ୍ୟାରିୟର ନଷ୍ଟ କରିଦେବାର ଇଚ୍ଛା ଅଛି ନା କ'ଣ ? ଏ ଜଞ୍ଜାଳ ଭିତରୁ କୁଆଡ଼େ ଏକୁଟିଆ ଚାଲିଯାଇ ନଭେଲ୍‌ଟାକୁ ସମ୍ପୂର୍ଣ୍ଣ କରନ୍ତ ନାହିଁ ? ମୁଁ କ'ଣ ଆଠ ଦଶଟାଦିନ ଘର ଚଳାଇ ପାରିବି ନାହିଁ ?''

ଜାଣେ ରୁଚି ପାରିବ । ଘର ସମ୍ଭାଳି ପାରିବ, ମାର୍କେଟିଂ କରିପାରିବ, ଅଶୀ ବର୍ଷର ଶ୍ୱଶୁର ଅର୍ଥାତ୍ ମୋ ବାପାଙ୍କ ପାଇଁ ମେଡ଼ିସିନ୍ ଆଣିପାରିବ, ତାଙ୍କ ଯତ୍ନ ନେଇପାରିବ, ମୁନାକୁ ସ୍କୁଲ୍ ପଠାଇପାରିବ ଓ ବିଳମ୍ବିତ ପ୍ରହର ଯାଏ ନିଜ ଥେସିସ୍ ଲେଖିପାରିବ । ଆଶ୍ଚର୍ଯ୍ୟ ହୁଏ ରୁଚିର ସମୟଜ୍ଞାନ ଓ କାର୍ଯ୍ୟ ଦକ୍ଷତା ଦେଖିଲେ । ଭାବପ୍ରବଣ ଅପେକ୍ଷା ସେ ବେଶ୍ ବାସ୍ତବବାଦୀ । ରୁଚି କଥା ମନେ ପଡ଼ିବାରୁ ଛାତିତଳ ସ୍ନେହରେ ଓଦା ହୋଇଗଲା । ମୋତେ ସିନା ପଠାଇଦେଲା, ତା' ମନତଳ ଏବେ କେତେ ଶୂନ୍ୟ ହୋଇଯାଇଥିବ ସେକଥା ଜାଣେ । ସାରାରାତି ମୋତେ ଖୋଜୁଥିବ ନିଦ୍ରିତ ଅବସ୍ଥାରେ । ରୁଚିର ଫୁଟନ୍ତା ଫୁଲ ପରି କୋମଳ ମୁହଁଟିକୁ ମନେପକାଇ ଶୋଇବାକୁ ଚେଷ୍ଟାକଲି ।

ରୂପା ମୋତେ ଠିକ୍ ସମୟରେ ଖାଇବାକୁ ଦେଉଥିଲା । ଫ୍ଲାସ୍କରେ ଚା' ରଖି ଦେଉଥିଲା । ଗାଧୋଇବାକୁ ଗରମ ପାଣି କରିଦେଉଥିଲା । ଆତ୍ମୀୟଟିଏ ପରି ଯତ୍ନଶୀଳ ଥିଲା । ଲେଖିବା ପାଇଁ ଫାୟାରପ୍ଲେସ୍ ନିକଟରେ ଚେୟାର ଟେବୁଲ୍ ପକାଇ ଦେଇଥିଲା ରୂପା । ମୁଁ କିଛି କହିବା ପୂର୍ବରୁ ସେ ମୋ ମନ ଜାଣି କାମ କରିଦେଉଥିଲା ।

ତୃତୀୟ ଦିନ ସଂଧ୍ୟାରେ କାଠ ସରି ଆସୁଥିବାବେଳେ ମନୋହର କାଠ ଗୋଛାଏ ଧରି ଆପେ ଆସି ପହଞ୍ଚିଲା । ଦେହରେ ଥିଲା ଧୋତି ଓ ଚଦର ଖଣ୍ଡେ । ଧୀର ପାଦରେ ଫାୟାରପ୍ଲେସ୍‌ରେ କାଠ ସଜାଇ ଦେଲା ତା' କାମ ସରିବା ପରେ ତାକୁ ପାଖକୁ ଡାକିଲି ।

-''ମନୋହର, ଏଠିକୁ ଆସ ।'' ମୋ ଡାକରେ ସେ କିଛି ମୁହୂର୍ତ୍ତ ପାଇଁ ବିସ୍ମୟ ଓ ବିହ୍ୱଳ ଦୃଷ୍ଟିରେ ଚାହିଁ ରହିଲା । ତା' ମୁହଁସାରା ଫୁଟି ଉଠିଲା ଅବିଶ୍ୱାସ ଭାବ । ଓଠ ଦିଓଟି ଥରି ଉଠିଲା କିଛି କହିବା ପାଇଁ । ମାତ୍ର ନୀରବ ଥିଲା କଣ୍ଠସ୍ୱର ।

-''ଖୁବ୍ ଶୀତ ପଡ଼ିଛି ନା ଆଜି ?'' ହସି ଦେଇ ପ୍ରଶ୍ନ କଲି । ସେ ନୀରବରେ ହଁ ଭରିଲା ମୁଣ୍ଡ ହଲାଇ ଦେଇ ।

-''ବସ ଏଠି ।'' କହି ହାତ ଦେଖାଇଲି ଚେୟାର୍‌ରେ ବସିବା ପାଇଁ । ସେ ସଙ୍କୁଚିତ ହୋଇ ଉଠିଲା କ୍ଷଣକ ପାଇଁ ଓ ତଳ ଚଟାଣରେ ବସିଲା । ମୁଁ ତା କପ୍‌ଟି ଧରି

ତାକୁ ବଢ଼ାଇଦେଲି ଓ ତା' ପାଖରେ ଚଟାଣରେ ବସିଲି । ଯଦିଓ ଚଟାଣ ଥଣ୍ଡା ଲାଗୁଥିଲା । ଦୁଇହାତ ବଢ଼ାଇ ନିଆଁ ପୁଇଁଲି । ମନୋହର ଖୁବ୍ ସଙ୍କୋଚ ଭାବେ ଟିକେ ଟିକେ କରି ଚା' ପିଇଲା ।

-"ମନୋହର, ତୁମେ କ'ଣ ମୋଭଳି ଅପରିଚିତଙ୍କ ସହ କଥା ହୁଅ ନାହିଁ ?" ତା' ମନକଥା ପଢ଼ିବାକୁ ଚେଷ୍ଟା କରି ପଚାରିଲି ।

ଚା' କପ୍‌ଟିକୁ ତଳେ ରଖିଲା । ଧୀର ସ୍ୱରରେ କହିଲା - "ନାଇଁ ବାବୁ, ଆପଣ କାହିଁକି ଅଚିହ୍ନା ହେବେ ? ଲାଗୁଛି କେଉଁ ଯୁଗର ଚିହ୍ନା, ପରିଚିତ ବନ୍ଧୁଟିଏ ପରି । ଏପରି ବ୍ୟବହାର ଅନ୍ୟ କାହାଠାରୁ ଜୀବନରେ ପାଇନାହିଁ ।"

-"ଗୋଟେ କଥା ପଚାରିବି ?" କହୁ କହୁ ଅଟକି ଗଲି ।

ସେ ମୋତେ ଚାହିଁଲା ପ୍ରଥମଥର ପାଇଁ ସ୍ପଷ୍ଟ ଭାବେ । ତା' ଦୃଷ୍ଟିରେ ଥିଲା ଅନୁମତିଭାବ । କ୍ଷଣକ ମଧରେ ନିଜକୁ ସହଜ କରିନେଲି । ପଚାରିଲି - "ତୁମ କଥା ରୂପାକୁ ପଚାରୁଥିଲି । ଯଦି କିଛି ମନେ ନକର ତେବେ ତୁମ ଅତୀତ ଜୀବନ କଥା କୁହନ୍ତ ନାହିଁ !"

ପଚାରି ସିନା ଦେଲି ହେଲେ ଗଭୀର ଅପରାଧବୋଧରେ ବିବ୍ରତ ହୋଇ ଉଠିଲି । ମୋ ପ୍ରଶ୍ନରେ ମନୋହର କିଭଳି ପ୍ରତିକ୍ରିୟା ଦେଖାଇବ କେଜାଣି ! ଶାନ୍ତ ମନେ ହେଉଥିବା ଲୋକଟି ହୁଏତ କ୍ଷୁର୍ଣ୍ଣ ହୋଇଉଠିବ ଭୟାନକ ଝଡ଼ଟିଏ କରି । ପାଲଟା ପ୍ରଶ୍ନ କରିବ - ତୁମେ କିଏ ହୋ ମୋ ଅତୀତ କଥାକୁ ଘାଣ୍ଟି ମୋତେ ଉତ୍ତ୍ୟକ୍ତ କରିବାକୁ ?

ନା, ସେ କିଛି କହିଲାନି କି ରାଗିଲା ନାହିଁ ମଧ । ମୁହଁଟି ତା'ର ଆହୁରି ଶାନ୍ତ, ଆହୁରି କରୁଣ ଦିଶିଲା । ନିଆଁକୁ ଚାହିଁ ସେ ଯେମିତି କ'ଣ ଗୋଟେ ଖୋଜୁଥିଲା । ସମ୍ଭବତଃ ଦାମ୍ପତ୍ୟ ଜୀବନର ସୁଖଦ ମୁହୂର୍ତ୍ତମାନଙ୍କୁ, ଅବିସ୍ମରଣୀୟ ସମୟକୁ ।

ଧୀର କଣ୍ଠରେ କହିଲା- "ମୋତେ କୋଡ଼ିଏ ବର୍ଷ ତଳେ ବେଳେ ମୋଠାରୁ ବର୍ଷେ ସାନ ଗୌରୀକୁ ବାହା ହୋଇଥିଲି । ସେତେବେଳେ ସେ ଭାରି ସୁନ୍ଦରୀ ଥିଲା । ଗାଁ ଗୋଟାକଯାକରେ ତା' ଭଳି କାମିକା, ସୁନ୍ଦରୀ ବୋହୂ କେହି ନଥିଲେ । ଅନ୍ୟମାନଙ୍କ ଭଳି ସେତେବେଳେ ମୁଁ ବି ମାଛ ଧରିବାକୁ ଯାଉଥିଲି । ସେ କାମଦାମ ସାରି ଦେଇ ନଈକୂଳକୁ ଯାଇ ଡଙ୍ଗାକୁ ଅପେକ୍ଷା କରିଥାଏ । ଡଙ୍ଗା କୂଳରେ ଲାଗିଲେ ହସି ହସି ମାଛ ଟୋକେଇରେ ଭର୍ତ୍ତି କରି ମୁଣ୍ଡାଏ । ମୁଁ ଜାଲ ଧରି ତା' ସହିତ ଘରକୁ ଫେରେ । ପାଣି ଭିତରେ ମାଛ ଧରିବା କଷ୍ଟ ଲାଗେ । ସେଥିପାଇଁ ସେ ତେଲ ଗରମ କରି ମୋ ଗୋଡ଼ ହାତରେ ଘଷିଦିଏ । ଗାଧୋଇ ଆସିବା ବେଳକୁ ସେ ଭାତ ବାଢ଼ି ଅନେଇ ବସିଥାଏ । ଅନ୍ୟ ସ୍ତ୍ରୀଲୋକଙ୍କ ପରି କଳିହୁଡ଼ି ନଥିଲା କିମ୍ବା ଗହଣାପାଇଁ, ଯାନିଯାତ ଦେଖିବା ପାଇଁ ଜିଦ୍ କି କଳି କରୁନଥିଲା । ଭବିଷ୍ୟତ ପାଇଁ ଟଙ୍କା ସଞ୍ଚିବାକୁ କହୁଥିଲା । ରାତି ଅଧରେ ନଈକୁ ଚାଲି ଚାଲି ଯିବାକୁ ପଡୁଥିଲା ବୋଲି ତା' ଭାଇକୁ କହି ସହରରୁ ଗୋଟାଏ ସେକେଣ୍ଡ ହ୍ୟାଣ୍ଡ ସାଇକେଲ୍ କିଣି ଦେଇଥିଲା ।

ବାହାଘରର ଦି'ବର୍ଷ କେମିତି କଟିଗଲା ଜଣାପଡ଼ିଲା ନାହିଁ । ତିନିବର୍ଷ ବେଳକୁ ସେ ମା' ହେବା କଥା ଜାଣି ଖୁସିରେ ମୋ ଗୋଡ଼ ତଳେ ଲାଗିଲା ନାହିଁ । ନଦୀରୁ ମାଛ ଆଣିବାକୁ ଯିବା ପାଇଁ ତାକୁ ମନା କଲି । ଦିନେ ରାତିରେ ତା'ର ଗର୍ଭବେଦନା ଆରମ୍ଭ ହେଲା । ଆମ ଗାଁଠାରୁ ତିରିଶ କିଲୋମିଟର ଦୂରରେ ଡାକ୍ତରଖାନା । ସାଇକେଲ୍‌ରେ ବସାଇ ଡାକ୍ତରଖାନା ବାହାରିଲି । ଆଉ ଅଙ୍କବାଟ ଥାଏ, ଅନ୍ଧାର ରାତିରେ ଗୋଟାଏ ଖାଲରେ ପଡ଼ିଗଲି । ଗୌରୀ ମୁହଁମାଡ଼ି ତଳେ କଚାଡ଼ି ହୋଇପଡ଼ିଲା । କଷ୍ଟେମଷ୍ଟେ ତାକୁ ଉଠାଇ ଡାକ୍ତରଖାନାରେ ପହଞ୍ଚିବା ବେଳକୁ ମଝିରାତି । ଡାକ୍ତରଖାନାରେ କେହି ନଥାନ୍ତି । କମ୍ପାଉଣ୍ଡର ନିଦରେ ଶୋଇଥାଏ । ବାରଣ୍ଡାରେ ହିଁ ଗୌରୀ ପିଲା ଜନ୍ମ ଦେଲା । କମ୍ପାଉଣ୍ଡର ନିଦରୁ ଉଠି ଆସି ପିଲା ଦେଖି କହିଲା, ସେ ମା' ପେଟରୁ ମରିଯାଇଛି ।''

ମନୋହରର ଆଖିରୁ ଝୁଆର ପରି ମାଡ଼ି ଆସିଲା ଲୁହ । ଥରି ଉଠିଲା ଓଠ, ନାକପୁଡ଼ା ଓ ସାରା ଶରୀର ଗଭୀର ଦୁଃଖ ଓ ବେଦନାରେ । ଦଶମାସର ସ୍ୱପ୍ନର କାଚକଣ୍ଢେଇଟି ମାତ୍ର କ୍ଷଣକ ମଧ୍ୟରେ ହାତରୁ ପଡ଼ି ଚୁନାଚୁନା ହୋଇ ଭାଙ୍ଗିଯିବାର ଅସହାୟତା ଓ ଯନ୍ତ୍ରଣା ତା' ମୁହଁରେ ଲେଖି ହୋଇଯାଇଥିଲା ।

-''ଆଉ ତା' ପରେ ?'' ପଚାରିଲି ଉତ୍ସୁକ ଭାବରେ ।

-''ଚେତା ଫେରିବା ପରେ ଗୌରୀ ବିକଳ ହୋଇ ପିଲାଟିକୁ ଖୋଜିଲା । ତା' ଦୁଃଖରେ ମୁଁ ପଥର ହୋଇଗଲି । ତାକୁ ସତ କହିବି କି ମିଛି କହିବି ସନ୍ଦୁଳି ହୋଇଗଲି । ମିଛରେ କହିଲି ଯେ ପୁଅକୁ ଡାକ୍ତର ଆର ଘରେ ରଖିଛନ୍ତି । ସକାଳ ହେଲେ ଆଣିବା । ଗୌରୀ ମୋ କଥାରେ ବିକଳ ହୋଇ ଚାହିଁ ରହିଲା କେତେବେଳେ ସକାଳ ହେବ ଓ ସେ ଛୁଆକୁ ଧରିବ ।

ମୁଁ ମଲା ପିଲାଟିକୁ ନେଇ ରାତିରାତି ଶ୍ମଶାନରେ ପୋତି ଦେଲି । ଦେଖିଲି ନାହିଁ ସେ ପୁଅ କି ଝିଅ ଥିଲା । ମଲା ପିଲାଟାକୁ ଦେଖି କ'ଣ ପାଇଥାନ୍ତି ବାବୁ ! ହେଲେ ଛୁଆଟାର ମୁହଁ ଅବିକଳ ଗୌରୀ ପରି ଥିଲା । କମ୍ପାଉଣ୍ଡର୍ ଖଣ୍ଡେ ଧଳାକନାରେ ତାକୁ ବେଢ଼ଯାଏ ବାନ୍ଧି ଦେଇଥିଲା । ଫେରିବାବେଳକୁ ଦେଖିଲି ମେଡ଼ିକାଲ ଗେଟ୍ ପାଖରେ ସ୍ତ୍ରୀ ଲୋକଟିଏ ଛୁଆ ଜନ୍ମଦେଇ ବେହୋସ୍ ହୋଇ ପଡ଼ିଛି । ଗୌରୀ ପାଇଁ ମୋ ବୁଦ୍ଧି ବିବେକ ହଜିଗଲା । କାନ୍ଦୁଥିବା ଛୁଆଟିକୁ ରକ୍ତଲାଳ ସହିତେ କୋଳକୁ ଉଠାଇ ଆଣି ଧୋତିରେ ଗୁଡ଼ାଇ ଦେଲି ଓ ଚୁପ୍‌ଚାପ୍ ଗୌରୀ କୋଳରେ ଦେଇ ରାତି ପାହିବା ପୂର୍ବରୁ ଆମେ ଚାଲିଆସିଲୁ । ପରେ ଶୁଣିଲି ଗେଟ୍ ପାଖରେ ଜନ୍ମ ଦେଇଥିବା ସ୍ତ୍ରୀଲୋକଟି ମରିଯାଇଥିଲା । ହେଲେ ମୁଁ ପିଲାଚୋର ବୋଲି ଗାଁ ସଭାରେ ଜୋରିମାନା ଦେଲି । ଆଉ ସେଦିନଠାରୁ ମୋତେ ସମସ୍ତେ ଚୋର ବୋଲି ଡାକନ୍ତି ।''

ମନୋହର ଚୁପ୍ ରହିଲା । ମୋ ଛାତି ଥରାଇ ଦୀର୍ଘଶ୍ୱାସଟିଏ ବାହାରି ଆସିଲା । ତା' କାନ୍ଧରେ ହାତ ରଖିଲି । ପଚାରିଲି - ''ଗୌରୀ ଜାଣେ ଏକଥା ?''

-''ହଁ ଶୁଣିଛି । ସେ ମାତ୍ର ଆଦୌ ବିଶ୍ୱାସ କରେ ନାହିଁ ଏକଥା । ସେ ମୋତେ

କେବେ ପଚାରିନାହିଁ କି ମୁଁ ମଧ ତାକୁ ସତକଥା କହିନାହିଁ । ସେଦିନୁ ମାଛଧରା ଛାଡ଼ିଦେଲି । ଜଙ୍ଗଲକୁ ଯାଇ ଶୁଖିଲା କାଠ ଆଣି ବିକ୍ରି କରି ଚଳେ । ରାତି କେତେ ହେଲାଣି ବାବୁ ! ଗୌରୀ ଅପେକ୍ଷା କରିଥିବ ଖାଇବା ପାଇଁ ।'' ମନୋହର ଉଠିପଡ଼ିଲା ଓ ଚା' କପ୍‌ଟିକୁ ଧୋଇ ଟେବୁଲ୍ ଉପରେ ରଖିଦେଲା ।

ମୁଁ ବି ଉଠିଲି । ପକେଟରୁ ପଚାଶ ଟଙ୍କା ବାହାର କରି ତା' ହାତରେ ଧରାଇ ଦେଲି । ସେ ଅମଙ୍ଗ ହେଲା ନେବାକୁ ।

-''ଆମ ସହରରେ ଏତିକି କାଠ ପଚାଶ ଟଙ୍କାରୁ ଅଧିକ । ତୁମ ପାଉଣା ରଖିବାରେ କାହିଁକି ଲାଜ କରୁଛ । ନିଅ ଟଙ୍କା ।'' କହିଲି ।

ଟଙ୍କା ଧରି ଦୁଇହାତ ଯୋଡ଼ି ମୋତେ କୃତଜ୍ଞତା ଜଣାଇ ସେ ବାହାରିଗଲା । ମନୋହର ପାଇଁ ଛାତିତଳେ ଦୁଃଖଟିଏ ନଈ ହୋଇ ବହିଗଲା । ଆହା କେଡ଼େ ସରଳ ମଣିଷଟିଏ ! ସରଳ ମଣିଷମାନେ ତ ସମାଜର ଜଟିଳ ଜାଲରେ ଛନ୍ଦି ହୋଇ କାଳ କାଳ ପାଇଁ ଦୁଃଖ ଭୋଗନ୍ତି ।

ପୂର୍ଣ୍ଣିମା ସକାଳୁ ରୂପା ସହିତ ବୟୋବୃଦ୍ଧ ବ୍ୟକ୍ତିଟିଏ ଆସି ପହଞ୍ଚିଲେ । ରୂପା ଚିହ୍ନାଇଦେଲା ସେ ଗାଁ ମୁଖିଆ । ତାଙ୍କୁ ବସାଇ ରୂପାକୁ ଚା' ଆଣିବାକୁ କହିଲି । ପଚାରିଲି - ''କୁହନ୍ତୁ କେମିତି ଆସିଲେ ?''

- ''ଆଜି ପୂର୍ଣ୍ଣିମା । ଆମ ଗ୍ରାମଦେବୀଙ୍କ ନିକଟରେ ସବୁ ପୂର୍ଣ୍ଣିମାରେ ଭୋଜିଭାତ ଓ ପୂଜା ହୁଏ । ତୁମେ ଆମ ଗାଁର ନୂଆ କୁଣିଆ । ଆମେ ମାଛୁଆ ଲୋକମାନେ ତୁମ ସହର ପରି ଆଦର ସତ୍କାର କ'ଣ କରିପାରିବୁ ! ତଥାପି ନିଉତା ଦେବାକୁ ଆସିଛି । ସଂଧ୍ୟାରେ ନେବାକୁ ଆସିବୁ । ଆ଼ମ ମନ ଭାଙ୍ଗିବ ନାହିଁ ବାବୁ !'' ଚା' ପିଇ ମୁଖିଆ ଉଠିଲେ ।

ଶହେ ଟଙ୍କା ତାଙ୍କୁ ଧରାଇ ଦେଇ କହିଲି - ''ଗ୍ରାମଦେବତୀଙ୍କ ନିକଟରେ ଭୋଗ ଲଗାଇବାର ବ୍ୟବସ୍ଥା କରିବେ ଏ ଟଙ୍କାରେ ।''

ଆନନ୍ଦ ଓ ବିସ୍ମୟରେ ମୋତେ ଚାହିଁ ବିଦାୟ ନେଲେ । ମୁଁ ବି ଚାହୁଁନଥିଲି ଏମିତି ଖାଲି ହାତରେ ଦେବୀ ଦର୍ଶନ ତଥା ଭୋଜି ଖାଇବାକୁ ଯାଏ ବୋଲି ।

ସଂଧ୍ୟା ହେବାକୁ ଆହୁରି ବାକିଥାଏ । ମୁଖିଆ ତାଙ୍କର ଚାରି-ପାଞ୍ଚ ଜଣ ଅନୁଚରଙ୍କ ସହ ମୋତେ ପାଛୋଟି ନେବାକୁ ପହଞ୍ଚିଲେ । ମୁଁ ସେମାନଙ୍କ ସହ ଆସିଲି । ଗ୍ରାମର ମଧ୍ୟସ୍ଥଳରେ ଗ୍ରାମଦେବତୀଙ୍କ ଆସ୍ଥାନ । ବେଶ୍ ପରିଷ୍କାର ପରିଚ୍ଛନ୍ନ ବଡ଼ ଖୋଲା ସ୍ଥାନଟିରେ ଛୋଟ ମନ୍ଦିର । ମାଟି ଗୋବରରେ ଲିପାପୋଛା ହୋଇଛି । ପଥର ମୂର୍ତ୍ତି ଦେହରେ ବହଳିଆ ସିନ୍ଦୂର ଓ ହଳଦି ଯୋଗୁଁ ଠାକୁରାଣୀଙ୍କ ଗଠନ ସ୍ପଷ୍ଟ ଜଣା ପଡୁନଥାଏ । ପାଖରେ ପଣେ ଖଣ୍ଡେ ସାନବଡ଼ ମାନସିକ ମାଟି ହାତୀ ଘୋଡ଼ା ଠିଆ ହୋଇଥାନ୍ତି । ଦୀପ, ଧୂପ, ଝୁଣା, ଫୁଲ, ପଣା ଓ ଭୋଗରାଗ ବାସ୍ନାରେ ମନ୍ଦିର ମହକି ଉଠୁଥାଏ । । ମନ୍ଦିରଠାରୁ ପଚିଶ ତିରିଶ ହାତ ଦୂରରେ ଖନ୍ଦା ଲାଗିଥାଏ । ସ୍ତ୍ରୀଲୋକମାନେ ପରିବା ଓ ମାଛ

କାଟୁଥାନ୍ତି । ପୁରୁଷଲୋକମାନେ ରୋଷେଇ ଓ ପାଣି ବୋହିବାରେ ଲାଗିପଡ଼ିଥାନ୍ତି । ପିଲାମାନେ ଖେଳକୁଦରେ ମାତିଥାନ୍ତି ।

ଆମେ ଦୁଇଟି ଖଟିଆରେ ବସିଲୁ । ଏହି ସମୟରେ ମନୋହର କାଠ ଆଣି ପହଞ୍ଚାଇଲା । ମୁଖିଆ କହିଲେ - ''ଯେତେ କାଠ ଦରକାର ହେବ ସବୁ ଆଣି ପହଞ୍ଚାଇବୁରେ ଚୋର !''

ମନୋହର ମୁଣ୍ଡ ଟୁଙ୍ଗାରି ନିଜକୁ ବଞ୍ଚାଇବା ପରି ଦ୍ରୁତ ପାଦରେ ସେଠାରୁ ଚାଲିଗଲା । ମାତ୍ର ତା' କାରୁଣ୍ୟ ଓ ଅସହାୟତା ମୋ ଆଖିରୁ ଛପି ପାରିଲା ନାହିଁ ।

ମୋତେ ଦେଖି ଲୋକମାନେ ଚାରିପଟେ ବସିଗଲେ । ଗାଁର ପ୍ରାୟ ସମସ୍ତ ନାରୀପୁରଷ ସେଠି ପହଞ୍ଚିସାରିଥିଲେ । ଧୀର ଭାବେ ମୁଖିଆଙ୍କୁ ପ୍ରଶ୍ନ କଲି ''ଏ ଲୋକଟି କିଏ ।''

ନିର୍ବିକାର ଭାବେ ସେ ଉତ୍ତର ଦେଲେ- ''ଚୋର । କାଠ କାଟେ ।''

-''ଅଦ୍ଭୁତ ନାଁ ? '' ଜାଣିବା ସତ୍ତ୍ୱେ ବି ଆଶ୍ଚର୍ଯ୍ୟଭଙ୍ଗି ପ୍ରକଟ କଲି ।

-''ପିଲାଚୋରି କରିଛି । ତେଣୁ ସେଇଦିନୁ ତାକୁ ଗାଁ ଲୋକେ ଚୋର ଡାକନ୍ତି । ପିଲାଚୋରି ମହାପାପ ବାବୁ ।'' ମୁଖିଆ ଗୁରୁତ୍ୱ ଦେଇ କହିଲେ ।

-''ଚୋରି ପଛରେ ତ କିଛି କାରଣ ଥିବ ନା ?' ପଚାରିଲି ।

-''ହଁ, ତା' ସ୍ତ୍ରୀ ମଲାପିଲା ଜନ୍ମ ଦେଲା । ଏକଥା ସ୍ତ୍ରୀ ଜାଣିଥିଲେ ପାଗିଳୀ ହୋଇଯାଇଥାନ୍ତା କି ନଇରେ ବୁଡ଼ି ମରିଥାନ୍ତା । ତେଣୁ ତାକୁ ବଞ୍ଚାଇବାକୁ ଯାଇ ଅନ୍ୟର ପିଲାଟେ ନେଇ ଆସିଲା । ଅବଶ୍ୟ ସେ ପିଲାର ମା' ଜନ୍ମ ଦେଇ ମରିଯାଇଥିଲା ।'' ଅନୁଭବ କଲି ମୁଖିଆଙ୍କ ଛାତି ତଳେ ବି ସମବେଦନା ଅଛି ।

-''ଆଚ୍ଛା, ମନୋହର ଯଦି ସେ ପିଲାଟିକୁ ଆଣି ନଥନ୍ତା, ତେବେ ତାକୁ କିଏ ପାଳିଥାନ୍ତା ଯେ ? ହୁଏତ ଅନ୍ଧାର ରାତିରେ ବିଲୁଆ କୁକୁର ତାକୁ ଖାଇଦେଇଥାନ୍ତେ କିମ୍ବା ପାଣିଟୋପେ ନ ପାଇ ଛୁଆଟି ମରିଯାଇଥାନ୍ତା ନିଶ୍ଚୟ । ଏଭଳି ଅବସ୍ଥାରେ ତାକୁ ଆଣି ମନୋହର ଛୁଆଟିର ଏବଂ ତା' ସ୍ତ୍ରୀର ଉଭୟଙ୍କ ଜୀବନ ବଞ୍ଚାଇ ଦେଇଛି, ନୁହେଁ କି ? ମୁଖିଆଙ୍କ ମନୋଭାବ ଜାଣିବାକୁ କହିଲି । ଗାଁଲୋକ ମୁଣ୍ଡ ହଲାଇ ସମର୍ଥନ କରିବାକୁ ଆରମ୍ଭ କଲେ ।

-''ହଁ, ସତକଥା ତ ବାବୁ ।' ମୁଖିଆ ଚିନ୍ତା କରି କହିଲେ ।

-''ଦୁଇଟି ପ୍ରାଣ ଯିଏ ବଞ୍ଚାଇଲା ତାକୁ ଅପମାନିତ କରିବା ଅଥବା ଦଣ୍ଡ ଦେଇ 'ଚୋର' କହିବା ନ୍ୟାୟ ହେବକି, ମୁଖିଆ ?'' ତାଙ୍କ ମତ ଜାଣିବାକୁ ପ୍ରଶ୍ନ କଲି । ।

-''ପ୍ରାଣ ବଞ୍ଚାଇବା ଲୋକ ପ୍ରତି ଅନ୍ୟାୟ ନିଶ୍ଚୟ ।'' ମୁଖିଆ ଗମ୍ଭୀର ଭାବେ ଚିନ୍ତା କରି ଉତ୍ତର ଦେଲେ । ଲୋକମାନେ ପୁନର୍ବାର ମୁଣ୍ଡ ହଲାଇ ମୁଖିଆଙ୍କୁ ସମର୍ଥନ କଲେ ।

-''ମୁଖିଆ, ମନୋହର ଛୁଆଟିକୁ ନେଇ ଆସିଲା ବୋଲି ତାକୁ ଚୋର କହୁଛନ୍ତି ।

ଥରେ ଚିନ୍ତା କରିଛନ୍ତି ଯିଏ ଆମମାନଙ୍କ ଜୀବନରୁ ଅକାଳରେ ବାପା ମା', ପୁଅଝିଅ, ଯୁଆନ ସ୍ତ୍ରୀଠାରୁ ସ୍ୱାମୀକୁ ଚିରଦିନ ପାଇଁ ଛଡ଼େଇ ନିଅନ୍ତି ନିର୍ଦ୍ଦୟ ଭାବରେ ଓ ଆମକୁ ଦୁଃଖ, ଲୁହରେ ଭସାଇ ଦିଅନ୍ତି, ତାକୁ କ'ଣ କହିବା ? ଚୋର କହିବା ନା ?'' ମୋ ସ୍ୱର କ୍ରମଶଃ ଓଜନିଆ ହୋଇଉଠିଲା ।

-''ହଁ, ତାକୁ ଚୋର କହିବା ।'' ମୁଖିଆଙ୍କ ସହ ଅନ୍ୟମାନେ କହି ଉଠିଲେ ।

-''ତେବେ ବଡ଼ ଚୋର ହେଉଛନ୍ତି ନିଜେ ଭଗବାନ । ଯିଏ ବିଚାର କରନ୍ତି ନାହିଁ ଅଥଚ ଦଶମାସ ଗର୍ଭକଷ୍ଟ ସହି ମା'ଟିଏ ବଡ଼ କରିଥିବା ଜୁଆନ୍ ପୁଅଟିକୁ ଉଠାଇ ନିଅନ୍ତି. । ସଂସାର ଆରମ୍ଭ କରୁଥିବା ବିଚାରୀ ବୋହୂଟି ବିଧବା ହୋଇଯାଏ । ବୁଢ଼ା ବାପଟିର ଆଶ୍ରାବାଡ଼ି ହଜିଯାଏ । ଅବୋଧ ସନ୍ତାନଟି ଅନାଥ ହୋଇଯାଏ । ଭଉଣୀଟି ଆଉ ଭାଇ ବୋଲି ଡାକିପାରେ ନାହିଁ । ଭଗବାନଙ୍କଠାରୁ ମନୋହର କ'ଣ ବେଶି ବଡ଼ ଚୋରି କରିଛି, ବେଶି କ୍ଷତି କରିଛି ? ସେ ତ କାହା କୋଳ ଖାଲି କରି ନାହିଁ, କାହା ମଥାର ସିନ୍ଦୂର ଲିଭାଇ ନାହିଁ, ବୁଢ଼ାବାପକୁ ଆଶ୍ରାଶୂନ୍ୟ କରି ନାହିଁ, କାହାକୁ ଅନାଥ ମଧ କରିନାହିଁ । ସେ କ'ଣ ଭଗବାନଙ୍କଠାରୁ ବଡ଼ ଚୋର ହୋଇପାରେ ? ଯଦି ନୁହେଁ ତାକୁ କାହିଁକି ଚୋର କୁହାଯିବ ?'' ଦୃଢ଼ ଭାବେ କହିଲି ।

ଦେଖିଲି ସମସ୍ତଙ୍କ ମୁହଁ ଗମ୍ଭୀର ଓ ତଳକୁ ହୋଇଯାଇଛି । ସମସ୍ତଙ୍କ ଆଖି ପାଣିଚିଆ ଓ ଓଠ ବନ୍ଦ । ମୁଖିଆ ଦୀର୍ଘଶ୍ୱାସ ଛାଡ଼ି ଉଠିପଡ଼ି ସମସ୍ତଙ୍କୁ ଚାହିଁ କହିଲେ - ''ଏ ଗାଁର ମୁଖିଆ ହିସାବରେ ମୋର ଆଦେଶ - କେହି ମନୋହରକୁ ଚୋର ବୋଲି ଡାକିବ ନାହିଁ । ଖିଲାପ୍ କଲେ ଜୋରିମାନା ଓ କଡ଼ା ଦଣ୍ଡ ମିଳିବ ।''

ମୋ ପାଖକୁ ଆସି ମୋ ହାତ ଧରି କହିଲେ - ''ବାବୁ, ଆମକୁ କେତେ ପାପରୁ ଉଦ୍ଧାର କଲ । ଏଭଳି ନିରୀହ ଲୋକକୁ ଆମେ ଦଣ୍ଡ ଦେଇ ପାପ କରିଛୁ । ଏ ମହାପାପ ପାଇଁ ମନୋହର ଆମକୁ କ୍ଷମା କରିଦେଉ ।''

ସମସ୍ତେ ମୁଣ୍ଡ ହଲାଇ ମୁଖିଆଙ୍କ କଥାକୁ ସମର୍ଥନ କଲେ । ଲୋକଭିଡ଼ ଭିତରୁ ହଠାତ୍ ମନୋହର ଆସି ମୋ ପାଦ ଦିଓଟିକୁ ଜାବୁଡ଼ି ଧରିଲା । ତାକୁ ଉଠାଇ ଦୁଇହାତରେ ଜାବୁଡ଼ି ଧରିଲି ଓ ପରକ୍ଷଣରେ ଅନୁଭବ କଲି ତା' ଆଖିର ଲୁହ ମୋ କାନ୍ଧକୁ ସ୍ପର୍ଶ କରୁଛି ।

# ଅନେକ ଅଂଧକାର ପରେ

ଦେବନାଥ ଟ୍ରେନ୍‌ରେ ବସିବା ପରେ ସ୍ୱସ୍ତିର ଏକ ନିଃଶ୍ୱାସ ନେଲେ । ବାହାରକୁ ଚାହିଁବା ମାତ୍ରକେ ଝାପ୍‌ସା ଦିଶିଲା । ଚଷମା ବାହାର କରି ରୁମାଲରେ ପୋଛି ନେଲେ । ଆଖିରେ ଚଷମା ଲଗାଇ ପୁଣି ଥରେ ବାହାରକୁ ଚାହିଁଲେ । ଲୁହର ବାମ୍ପରେ ସବୁ ଧୂଆଁଳିଆ ଲାଗିଲା । ସେ ଆଖି ବନ୍ଦ କଲେ । କ୍ଷଣକ ପରେ ଟ୍ରେନ୍ ଚାଲିବାକୁ ଆରମ୍ଭ କଲା । ଝୁକ୍ ଝୁକ୍ ଶବ୍ଦରେ ଟ୍ରେନ୍ ଦୋହଲି ଦୋହଲି ଚାଲିଲା । ଦେବନାଥ ଦୂର ଅତୀତକୁ ଫେରିଗଲେ । ସତେ ଯେମିତି ଟ୍ରେନ୍‌ର ବିପରୀତ ଦିଗରେ ସେ ଦ୍ରୁତ ଗତିରେ ଦୌଡ଼ିବାକୁ ଆରମ୍ଭ କରିଛନ୍ତି ।

ଦେବନାଥ ଥିଲେ ଜମିଦାର ଘରର ଅଲିଅଳ ସନ୍ତାନ । ତାଙ୍କ ବଂଶ ପ୍ରତିଷ୍ଠିତ ସ୍କୁଲ୍‌ରେ ସେ ପଢୁଥିଲେ । ସମସ୍ତେ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ । ଶିକ୍ଷକମାନେ ତାଙ୍କ ପ୍ରତି ଅଧିକ ଯତ୍ନଶୀଳ ଥିଲେ । କଲେଜ ବେଳକୁ ଜମିଦାରୀ ଚାଲିଗଲା, ହେଲେ ବଂଶ ପରମ୍ପରା, ପାରମ୍ପରିକ ମନୋବୃତ୍ତି ଅକ୍ଷୁଣ୍ଣ ଥିଲା । ଦେବନାଥଙ୍କର କିଛି ସାଂଗସାଥୀ ଥିଲେ । ମଉଜ ମଜ୍‌ଲିସ୍‌ରେ ଅବସର ସମୟ କଟେ । ସେ କ୍ଲାସ୍‌ରେ ପ୍ରଥମ ହେଉଥିଲେ । ପ୍ରଥମ ହେବା ଯେମିତି ବଂଶ ପ୍ରତିଷ୍ଠାର ଅଭିମାନ ଥିଲା । ଶିକ୍ଷକମାନେ ତାଙ୍କ ଭୁଲ୍‌କୁ ଠିକ୍ ବୋଲି ଧରିନେଉଥିଲେ, ଅଥବା ଚାକିରିକୁ ସୁରକ୍ଷିତ କରିବା ପାଇଁ ବାଧ ଥିଲେ ।

ତାଙ୍କ କ୍ଲାସରେ ଆଉ ଜଣେ ଛାତ୍ର ଥିଲା । ତା' ନାଁ ସୌମ୍ୟକାନ୍ତ । ବଡ଼ ବିଶେଷ ବୁଦ୍ଧି, ମେଧାବୀ ଛାତ୍ର ଥିଲା । ମାତ୍ର କେବେ ବି ପ୍ରଥମ ହୋଇପାରୁ ନଥିଲା । ତାକୁ ଦ୍ୱିତୀୟ ସ୍ଥାନରେ ରହିବାକୁ ପଡୁଥିଲା । ତା' ବାପା ସେହି ସ୍କୁଲ୍‌ରେ ପିଅନ୍ ଥିଲେ । ଦେବନାଥ ଓ ଅନ୍ୟମାନେ ସୌମ୍ୟକାନ୍ତ ଭବିଷ୍ୟତରେ ସ୍କୁଲ୍ ପିଅନ ହେବ ବୋଲି ତାଚ୍ଛଲ୍ୟ କରୁଥିଲେ । ଅପମାନିତ ହୋଇ ସେ ନୀରବରେ ଲୁହ ଛଳଛଳ ଆଖିରେ ସେଠୁ ଦୌଡ଼ି ପଳାଉଥିଲା ।

ଏମିତି ବିତିଗଲା ସ୍କୁଲ୍ ଜୀବନ । ସୌମ୍ୟକାନ୍ତ ପ୍ରଥମ ଦଶଜଣ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କଲାବେଳେ ଦେବନାଥ ଠିକ୍ ଶତକଡ଼ା ଷାଠିଏ ଭାଗ ରଖି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଏହା ପରଠାରୁ ଉଭୟଙ୍କର ଆଉ ସାକ୍ଷାତ ହୋଇ ନାହିଁ । କିଛି ଦିନ ତଳେ ଶୁଣିଥିଲେ ସୌମ୍ୟକାନ୍ତ ଏକ ଆଦର୍ଶ ବିଦ୍ୟାଳୟ ସ୍ଥାପନ କରିଛନ୍ତି । ସମ୍ବାଦପତ୍ରରେ ବାର୍ଷିକ ବିବରଣୀ ତଥା ମୁଖ୍ୟମନ୍ତ୍ରୀଙ୍କର ଅଭିଭାଷଣ ଓ ପୁରସ୍କାର ପ୍ରଦାନ ସଂପର୍କରେ ପ୍ରକାଶିତ ବିବରଣୀ ପାଠ କରିଥିଲେ ।

ଆଉ ସେ... ଗ୍ରାଜୁଏସନ୍ ପରେ ନିଜ ସ୍କୁଲ୍‌ରେ ଶିକ୍ଷକତା କଲେ । ତାଙ୍କ ବାପାଙ୍କର ଯୁକ୍ତି ଥିଲା- ''ଜମିଦାର ବଂଶରେ କେହି ଗୋଲାମଗିରି କରିନାହାନ୍ତି । ତୁ ମଧ ଏଭଳି

ଆସ୍ପର୍ଦ୍ଧା ଦେଖାଇବୁ, ମୁଁ କଳ୍ପନା କରି ନଥିଲି । ଯଦି ଚାକିରୀ କରିବାକୁ ଚାହୁଁ ତେବେ ନିଜ ସ୍କୁଲ୍‌ରେ ଚାକିରୀ କର ।''

ଦେବନାଥ ନୀରବରେ ବାପାଙ୍କ ନିଷ୍ପତ୍ତିକୁ ମାନି ନେଇଥିଲେ । ଗାଁରେ ରହିଲେ, ଗାଁ ସ୍କୁଲ୍‌ରେ ଚାକିରୀ ଓ ପାଞ୍ଚ ମାଇଲ୍ ଦୂରସ୍ଥ ଏକ ଜମିଦାର ଘରର କନ୍ୟାକୁ ବିବାହ କଲେ । ତାଙ୍କ ପୁଅକୁ ଦୁଇବର୍ଷ ହେବାବେଳେ ପିତାଙ୍କ ଦେହାନ୍ତ ଆଉ ପୁଅ ଗ୍ରାଜୁଏସନ୍‌ରେ ନାଁ ଲେଖାଇବା ବେଳେ ପତ୍ନୀ ବି ଆର ପୁରକୁ ଚାଲିଗଲେ । ସେ ଗାଁରେ ଏକାକୀ ରହିଲେ ଓ ସହରରେ ପୁଅ ହେମକାନ୍ତ ରହିଲା ।

ଅନ୍ୟ କିଛି ଉପାର୍ଜ୍ଜନ ପନ୍ଥା ନଥିବାରୁ ଏତେ ବଡ଼ ଜମିଦାରୀର ରକ୍ଷଣାବେକ୍ଷଣ ଅସମ୍ଭବ ଥିଲା । ଅନ୍ୟପକ୍ଷରେ ରଏତମାନେ ଜମିବାଡ଼ି ମାଡ଼ି ବସିଲେ । ଦେବନାଥ ଭାବନ୍ତି - 'ହଁ, କିଏ ଏ ଗୁଡ଼ାକ ଅର୍ଜ୍ଜନ କରିଥିଲା ଯେ ? ଗରିବମାନେ ଚାଷ କରି ଖାଆନ୍ତୁ । ସେମାନଙ୍କର ମଂଗଳ ହେଉ । ପଡ଼ିଆ ପଡ଼ିବା ଅପେକ୍ଷା ଧାନମୁଗ ଫଳୁ ତ !'

ତାଙ୍କର ଚାକିରି ଥିବା ପର୍ଯ୍ୟନ୍ତ ସବୁ ଠିକ୍ ଥିଲା । ପୁଅ ହେମକାନ୍ତ ଏମ୍.ବି.ଏ. ପାଶ୍ କରିବା ପରେ ଗୋଟେ କଂପାନୀରେ ଜଏନ୍ କଲା । ସେଇଠି ଅଙ୍କିତା ସହ ପରିଚୟ । ହେମକାନ୍ତର ଇଚ୍ଛାକୁ ଟାଳି ନପାରି ଦେବନାଥ ଅଙ୍କିତାକୁ ବୋହୂ କରି ଆଣିଲେ । ଏଇଠୁ ଆରମ୍ଭ ହେଲା ଅଶାନ୍ତି ପର୍ବ ।

ସେ ଜାଣନ୍ତି ହେମକାନ୍ତ ଯାହା କୁହେ ସେଇଟା ତା' କଥା ତା' ସ୍ୱର ନୁହେଁ । ଅଙ୍କିତାର କଥାକୁ ସେ କେବଳ ଦୋହରାଏ । ହେମକାନ୍ତ ଦିନେ ପ୍ରସ୍ତାବ ଦେଲା- ''ବାପା, ମୁଁ ବିଜିନେସ୍ କରିବାକୁ ଚାହେଁ ।''

'ତୋତେ ଯେମିତି ସୁବିଧା ହେବ କର ।' ସ୍ୱାଭାବିକ କଣ୍ଠରେ ଦେବନାଥ ଉତ୍ତର ଦେଲେ ।

'ତୋର କେତେ ଦରକାର ?' ସ୍ପଷ୍ଟ ଭାବେ ପ୍ରଶ୍ନ କଲେ ।

'ନିହାତି କମ୍‌ରେ ପଚାଶ ଲକ୍ଷ । '' ହେମକାନ୍ତ ଉତ୍ତର ଦେଲା ।

'ଏତେ ଟଙ୍କା, ଏତେଗୁଡ଼ାଏ କେଉଁଠୁ ଆସିବ ।' ଶ୍ୱାସରୁଦ୍ଧ ହେବା ପରି ତାଙ୍କୁ ମନେ ହେଲା ।

'ତୁମେ ବ୍ୟସ୍ତ କାହିଁକି ହେଉଛ । ଆମର ଯେତେ ଜମି ଅଛି, ତାକୁ ବିକ୍ରୀ କରିଦେଲେ ପଚାଶ ଷାଠିଏ ଲକ୍ଷ ବାହାରି ପଡ଼ିବ ।' ହେମକାନ୍ତ ଆଶ୍ୱାସନା ଭରା ହସ ହସି କହିଲା

'ଆମର ଏତେ ଜମି କାହିଁ ?' ସନ୍ଦେହରେ ପଡ଼ିଲେ ଦେବନାଥ ।'

'ରଏତମାନେ ଚାଷ କରୁଛନ୍ତି । ସେଇ ଜମିତ ଆମର ।' ଦୃଢ଼ଭାବେ ହେମକାନ୍ତ କହିଲା ।

'ହେଲେ ଗରିବଗୁଡ଼ାଙ୍କର ପେଟକ ଭାତଥାଳି, ଆମେ ଛଡ଼ାଇ ନେବା ଉଚିତ୍

ହେବ ନାହିଁ ।' ଦେବନାଥ ଭିତରେ ତରଳିଗଲେ ।

'ବାପା, ଆଜିର ଏ ଦୁନିଆରେ କେହି କାହା କଥା ଚିନ୍ତା କଲା ପରି ଅବସ୍ଥାରେ ଅଛନ୍ତି ବୋଲି ମନେ କରୁଛ ? ଆଜି ଯାହାକୁ ଦୟା କରୁଛ, କାଲି ସିଏ ତୁମ ମୁଣ୍ଡ ଉପରେ ଚଢ଼ିବେ । ତା'ପର ଏତେ ଜମି କାହିଁକି ଦାନ କରିବା ? ମୋର ପୁଣି ଭବିଷ୍ୟତ ଅଛି, କ୍ୟାରିୟର୍ ଅଛି ।' ହେମକାନ୍ତ ନିଜ ସପକ୍ଷରେ ଯୁକ୍ତି ବାଢ଼ିଲା ।

'କେମିତି ଏକଥା ହେବ ?' ଦେବନାଥ ଦ୍ୱନ୍ଦରେ ପଡ଼ିଲେ ।

'ମୁଁ ସେକଥା ବୁଝିବି । ତୁମେ ମୋ ନାଁରେ ପାୱାର୍ ଅଫ୍ ଆଟର୍ଣ୍ଣି କରିଦିଅ ।' ହେମକାନ୍ତର କଥାରେ ସେ ଚମକି ପଡ଼ିଲେ ।

ଇଏ କ'ଣ ସେଇ ହେମକାନ୍ତ, ଯିଏ ବାହା ହେବା ପର୍ଯ୍ୟନ୍ତ ଗୋଟାଏ ଶିଶୁ ଭଳି ତାଙ୍କ ପାଖରେ ଅଳି ଅର୍ଦ୍ଦଳି କରୁଥିଲା, ତାଙ୍କ କୋଳରେ ମଥା ଦେଇ ଶୋଉଥିଲା । ତାଙ୍କ ହାତ ଆଉଁସାରେ ନିଦ ଯାଉଥିଲା । ଆଉ ବାହା ହେବାପରେ ବାପାର ହାତରୁ ବଂଶର କ୍ଷମତା, ମର୍ଯ୍ୟାଦା, ଅଧିକାର ଛଡ଼େଇ ନେବାକୁ ଚାହୁଁଛି !

'ହେଉ, ମୁଁ ଚିନ୍ତା କରିବି ।' ଦେବନାଥ ଉଠି ଯାଇଥିଲେ ସେଠାରୁ ।

ପାୱାର ଅଫ୍ ଆଟର୍ଣ୍ଣିରେ ସାଇନ୍ କରିବା ପର୍ଯ୍ୟନ୍ତ ଯେଉଁ ମାସଟିଏ ବିତିଲା, ସେହି ସମୟ ମଧ୍ୟରେ ପୁଅବୋହୂ ସାତ ପର ପରି ବ୍ୟବହାର କଲେ । ଅଙ୍କିତା ଦିନେ ଶୁଣାଇଦେଲା -'ବାପାଙ୍କୁ ଯଦି ଆମ କଥା ଭଲ ନ ଲାଗୁଛି, ତେବେ ସେ ନିଜ କଥା ବୁଝନ୍ତୁ, ନିଜ ବ୍ୟବସ୍ଥା କରନ୍ତୁ ।'

'ହେଉ, ମୁଁ ତାଙ୍କୁ ଓଲଡ୍ଏଜ୍ ହୋମ୍‌ରେ ଛାଡ଼ିଦେବି । ସବୁ ଝାମେଲାରୁ ମୁକ୍ତି ମିଳିବ ।' ହେମକାନ୍ତ ଅତି ସାଦାରଣ ଭାବେ ଉତ୍ତର ଦେଲା, ଯେମିତି ଦେବନାଥଙ୍କର କୌଣସି ଗୁରୁତ୍ୱ ନାହିଁ ଏ ଘରେ, ଅଥବା ସେମାନଙ୍କ ଜୀବନ ବଳୟ ମଧ୍ୟରେ ।

ଦେବନାଥ ସେହିକ୍ଷଣି ପାୱାର ଅଫ୍ ଆଟର୍ଣ୍ଣି ପେପରରେ ସାଇନ୍ କରି ଟେବୁଲ ଉପରେ ରଖିଦେଲେ । ନିଜର କିଛି ପୋଷାକ, ଆବଶ୍ୟକ ଜିନିଷପତ୍ର ତଥା ଚଳିବା ପାଇଁ କିଛି ଟଙ୍କା ଧରି ଘରୁ ବାହାରି ଆସିଲେ ।

ଗୋଟେ ଷ୍ଟେସନ୍‌ରେ ଟ୍ରେନ୍ ରହିଲା । ଜାଣନ୍ତିନି କୁଆଡ଼େ ଓ କାହା ପାଖରେ ପହଞ୍ଚିବେ । ତେବେ ନିଜାମୁଦ୍ଦିନ୍ ଦେଖି ଦିଲ୍ଲୀ ପାଇଁ ଟିକେଟ କାଟିଥିଲେ । ପକେଟରେ ହାତ ମାରିଲେ । ଛୋଟ ଫୋନ୍ ଡାଏରୀଟା ଖୋଜି ଶିଳାଦିତ୍ୟର ନମ୍ବରଟା ବାହାର କଲେ । ସେ ଦିଲ୍ଲୀ ଯିବା ପାଇଁ ଅନେକଥର ନିମନ୍ତ୍ରଣ କରିଛି । ହେଲେ ଘରସଂସାର ଭିତରେ ଯିବା ସମ୍ଭବ ହେଉନଥିଲା । ଅଥଚ ଆଜି ଅଯାଚିତ ଭାବେ ତା' ପାଖରେ ପହଞ୍ଚିବେ ।

ଦେବନାଥ ଠିକ୍ କଲେ କିଛି ଦିନ ତା' ପାଖରେ ରହିବେ । ତା ପରଦିନ ଦିଲ୍ଲୀରେ ପହଞ୍ଚି ଫୋନ୍ କଲେ । ଶିଳାଦିତ୍ୟ ଷ୍ଟେସନରୁ ପାଛୋଟି ନେଲେ ।

"ଦେବୁ, ଆମ ପାଖରେ ନିଶ୍ଚୟ ମାସେ ରହିବୁ, ତାପରେ ଯୁଆଡ଼େ ଯିବୁ । ଅନେକ କଥା କହିବାର, ଗପିବାର ଓ ଶୁଣିବାର ଅଛି ।" ପିଲାଙ୍କ ଭଳି ଶିଳାଦିତ୍ୟ ଅଳି କଲେ ।

'ଠିକ୍ ଅଛି ।' ଦେବନାଥଙ୍କର ଅନ୍ୟ କିଛି ଚାରା ନଥିଲା ଅଥବା ଯିବାର ଯୋଜନା ମଧ ନଥିଲା ।

ଶିଳାଦିତ୍ୟଙ୍କର ପତ୍ନୀ କାନ୍ତା ଦେବାନଥଙ୍କର ଯତ୍ନ ନେଉଥିଲେ । ଦୁଇବଂଧୁଙ୍କ ପାଖେ ପାଖେ ରହୁଥିଲେ- 'ଦୁଇବଂଧୁଙ୍କର ପିଲାଦିନ କଥା, କଲେଜର ସ୍ମୃତି ଶୁଣିବାକୁ ମୋର ଖୁବ୍ ଇଚ୍ଛା । ତେଣୁ ସାଂଗ ଛାଡ଼ିଲେ କେମିତି ଶୁଣି ପାରିବି !'

ସେ ଦୁହେଁ ସଂଧ୍ୟାରୁ ବାହାରି ଯାଉଥିଲେ ଓ ବିଳମ୍ବିତ ରାତ୍ରିରେ ଘରକୁ ଫେରୁଥିଲେ । ଶିଳାଦିତ୍ୟ ଉଠୁ ଉଠୁ ଦିନ ଦଶ ଏଗାର । ଲଞ୍ଚ୍ ଟାଇମ୍‌ରେ ଦେଖାହୁଏ ଓ ଅପରାହ୍ନରେ ଗପସପ ହୁଅନ୍ତି । କୁହନ୍ତି-'ଏଇଟା ଆମର ବିଜ୍‌ନେସ୍ । ଏଇ ବିଜିନେସ୍ ପାଇଁ ତ ଚାକିରି ଛାଡ଼ି ଦେଇଛି ।'

ହେଲେ ଦେବନାଥ ବୁଝିପାରନ୍ତିନି ଇଏ କି ପ୍ରକାରର ବିଜିନେସ୍ ! ଅନୁଭବ କରନ୍ତି ଶିଳାଦିତ୍ୟ ଯେତେ ସୁଖୀ ବୋଲି ଦେଖାଇ ହୁଅନ୍ତି, ଭିତରେ କିନ୍ତୁ ସେତେ ନୁହେଁ । ପତ୍ନୀ କାନ୍ତାର ଚେହେରାରେ ଗୋଟେ ମୁଖା ଲାଗିଥିବା ପରି ମନେ ହୁଏ । ଦିନେ କାନ୍ତା ନଥିବାବେଳେ ଦେବନାଥ ପ୍ରଶ୍ନ କଲେ - 'ତୋ ଭିତରେ ଅନେକ ଦୁଃଖ ଥିବା ପରି ଲାଗୁଛି । ଏତେ ଭଲ ଚାକିରିଟା ଛାଡ଼ିଦେଲୁ । ପୁଣି ଅଚାନକ ବାହା ହେଲୁ । ବିଜିନେସ୍‌କୁ ଘୃଣା କରୁଥିଲୁ, ଅଥଚ ସେଥିରେ ହିଁ ପଶିଲୁ । କାରଣ କ'ଣ ?'

'ସେଇକଥା କହିବାକୁ ତ ଅନେକ ଥର ଚେଷ୍ଟା କରିଛି । ଭାବିଛି ଗୋଟେ ଦୁଃଖରୁ ମୁକୁଳି ଆସିବି ତୋତେ କହିଦେବା ପରେ । ହେଲେ.... ।' କଥା ଅଧା ରହିଗଲା । ଶିଳାଦିତ୍ୟର ।

କାନ୍ତା ଦୁହିଁଙ୍କ ନିକଟବର୍ତ୍ତୀ ହୋଇସାରିଥିଲା । ସେ ପାଖରେ ବସିଲା ଓ ପ୍ରଶ୍ନ କଲା- 'ପୁଣି ସେଇ ପିଲାଦିନ କଥା ?"

'ହଁ - ପିଲାଦିନକୁ ଛାଡ଼ିଦେଲେ ଜୀବନର ମଧୁର ସ୍ମୃତି କାହିଁ ।' ଶିଳାଦିତ୍ୟ କଥା ଛପାଇଲେ । ଦେବନାଥ ବୁଝିପାରିଲେନି ଏହାର କାରଣ କ'ଣ ହୋଇପାରେ !

ସେଦିନ ରାତିରେ ଦେବନାଥଙ୍କର ହଠାତ୍ ନିଦ ଭାଙ୍ଗିଗଲା । ପାଖ ରୁମ୍‌ରେ ଶିଳାଦିତ୍ୟ ଓ କାନ୍ତାଙ୍କର ସ୍ପଷ୍ଟ କଥାବାର୍ତ୍ତା ଶୁଣାଯାଉଛି ।

'ଆଜି ଅପରାହ୍ନରେ ତୁମେ କେତେବଡ଼ ଭୁଲ୍ କରିବାକୁ ଯାଉଥିଲ ଜାଣ ?' କାନ୍ତାର ବିରକ୍ତ କଣ୍ଠସ୍ୱର ଶୁଣାଗଲା ।

'କି ଭୁଲ୍ ?' ଶିଳାଦିତ୍ୟ ପ୍ରଶ୍ନ କଲେ ।

'ତୁମେ ବଂଧୁକୁ କ'ଣ କହିବାକୁ ଚାହୁଁଥିଲ ! ଆମ ବିଜିନେସ୍ ସଂପର୍କରେ ନା ?

ଆମ ଦୁହିଁଙ୍କ ସଂପର୍କରେ ?' ରାଗ ଜରଜର ହୋଇଉଠିଲା କାନ୍ତା ।

'ମୁଁ ମାନସିକ ଅବସାଦରୁ ମୁକ୍ତ ହେବାକୁ ଚାହେଁ, କାନ୍ତା । ବନ୍ଧୁ ଆଗରେ ଦୁଃଖ କହିଦେଲେ ମନୋବ୍ୟଥା ହାଲ୍‌କା ହୋଇଯାଏ ।'' ଶିଳାଦିତ୍ୟଙ୍କ କଣ୍ଠ ବ୍ୟଥିତ ଜଣାପଡ଼ିଲା ।

'ଥାଉ ତୁମ ମନସ୍ତତ୍ତ୍ୱ । କହିପାରିଥାନ୍ତ ଆମେ ଡ୍ରଗସ୍ ବିଜିନେସ୍ କରୁ ବୋଲି ! ଏ ବିଜିନେସ୍‌ରେ ଏ ମହାନଗରୀରେ ମୁଁ ଲେଡ଼ି ଡନ୍ ବୋଲି କହିପାରିଥାନ୍ତ ? କହିପାରିଥାନ୍ତ କି ଅଧିକାଂଶ ରାତ୍ରିରେ ଆମ ହାତ ରକ୍ତରଂଜିତ ହୁଏ, ଜୀବନ ସହ ଖେଳୁ ବୋଲି ? କହି ପାରିଥାନ୍ତ କି ତୁମ ମିଲିଟାରୀ ପୋଷାକ, ପଦମର୍ଯ୍ୟାଦାର ଆଡୁଆଳରେ ଏ କାମ ନିରଙ୍କୁଶ ଭାବେ କରିଆସୁଛି ଓ ସେହି କାରଣରୁ ତମକୁ ମୁ ବିବାହ କରିଛି ! ଏକଥା ସମ୍ଭବ ନୁହେଁ । ଶିଳାଦିତ୍ୟ । ଆଉ ଯେମିତି ଭୁଲ୍ ନ ହୁଏ ଦୃଷ୍ଟି ଦେବ ।' 'କାନ୍ତାର କଥାଗୁଡ଼ାକ ଧମକ୍ ଦେବା ପରି ଶୁଣାଗଲା ।

ଦେବନାଥଙ୍କ ମୁଣ୍ଡ ଭିତରେ ଝିମ୍‌ଝିମ୍ ହୋଇଗଲା । ସାରା ରାତି ନିଦ ହେଲା ନାହିଁ । ଶିଳାଦିତ୍ୟ ଓ କାନ୍ତା ହଠାତ୍ ଉଗ୍ରପନ୍ଥୀ ପରି ମହା ଭୟଙ୍କର ମନେହେଲେ । ନିଜକୁ ପଣବନ୍ଦୀ ପରି ଲାଗିଲା ।

ତା ପରଦିନ ଲଞ୍ଚ୍ ଆୱାରରେ ସେ ପ୍ରଶ୍ନ କଲେ- 'ଆମ ସାଂଗମାନଙ୍କ ମଧ୍ୟରୁ କିଏ କ'ଣ କରୁଛନ୍ତି ? ଆଚ୍ଛା ସୌମ୍ୟକାନ୍ତ କଥା ଜାଣୁ ?'

'ହଁ-ସିଏ ପରା ଋଷିକେଶ୍‌ରେ ଗୋଟେ ଆଦର୍ଶ ସ୍କୁଲ୍ ପ୍ରତିଷ୍ଠା କରିଛି । କି ନାଁ ତାର ସେଠି !' ଶିଳାଦିତ୍ୟ ଉତ୍ତର ଦେଲେ, ବଂଧୁର ପ୍ରତିଷ୍ଠା ସମ୍ମାନରେ ସେ ଆନନ୍ଦ ବିଭୋର ହୋଇଉଠିଲେ ।

'ତା' ଫୋନ୍ ନମ୍ବର ଅଛି ?' ପ୍ରଶ୍ନ କଲେ ।

ହଁ, ଦେଖା କରିବୁ କି ?' ଶିଳାଦିତ୍ୟ ମୁହଁ ଧୋଉ ଧୋଉ ପଚାରିଲେ ।

ଦେବନାଥ ଫୋନ୍ କରିବାରୁ ସେପଟୁ ଯିଏ ଉଠାଇଲେ ସେ ସୌମ୍ୟକାନ୍ତ ନଥିଲେ, ବରଂ ତାଙ୍କୁ ପୁଅ ସନ୍ଦୀପ କହୁଥିଲେ । ଦେବନାଥ ଜାଣିଲେ ଯେ ସୌମ୍ୟକାନ୍ତ କିଛିମାସ ହେବ ଅସୁସ୍ଥ ଅଛନ୍ତି ଓ ଦେବନାଥଙ୍କୁ ଭେଟିବାକୁ ଖୁବ୍ ଆଗ୍ରହୀ ।

'ମଉସା, ଆପଣ ଶୀଘ୍ର ଆସନ୍ତେ ନି ?'' ସନ୍ଦୀପ୍ ବ୍ୟାକୁଳ ଭାବେ ପ୍ରଶ୍ନ କଲା ।

'ହେଉ' -ଦେବନାଥ ଦୁଃଖୀ ହୋଇପଡ଼ିଲେ ।

ଦେବନାଥ ମଧ୍ୟ ଅନ୍ତଃକରଣରେ ଚାହୁଁଥିଲେ ଶିଳାଦିତ୍ୟ ଓ କାନ୍ତାଙ୍କ ଘର, ଆତିଥେୟତାର ଛଦ୍ମତା ମଧ୍ୟରୁ ଯଥା ସମ୍ଭବ ମୁକ୍ତି ପାଇବାକୁ । ସୌମ୍ୟକାନ୍ତକୁ ଭେଟିବାର ବାହାନା କରି ସେଇ ସାଂଗେ ସାଂଗେ ସେ ବାହାରିପଡ଼ିଲେ । ଋଷିକେଶ୍‌ର ବସ୍‌ରେ ବସି ପଡ଼ି ଆଶ୍ୱସ୍ତିଭରା ନିଃଶ୍ୱାସ ଛାଡ଼ିଲେ । ଭାବିଲେ - 'ଓଃ, ମଣିଷମାନେ କେତେ କେତେ ମୁଖା ପିନ୍ଧି ଦିନର ଆଲୋକକୁ ଅନ୍ଧାର ମନେ କରି ଅଭିନୟ କରିବାରେ ବ୍ୟସ୍ତ ରୁହନ୍ତି !'

ସୌମ୍ୟକାନ୍ତଙ୍କ ଘର ପାଇବାରେ କିଛି ଅସୁବିଧା ହେଲା ନାହିଁ । ଆଦର୍ଶ ବିଦ୍ୟାଳୟର

ପରିସରକୁ ଲଗିଥିଲା ତାଙ୍କର ଆଶ୍ରମ ପରି ସୁନ୍ଦର, ନିର୍ମଳ ଘରଟି । ସନ୍ଦୀପ୍ ତାଙ୍କ ପାଦସ୍ପର୍ଶ କରି ଭିତରକୁ ପାଛୋଟି ନେଲା ।

ସୌମ୍ୟକାନ୍ତ ବିଛଣାରେ ଶୋଇରହିଥିଲେ । ଦେବାନାଥ ତାଙ୍କ ମଥା ପାଖରେ ବସିଲେ । ତାଙ୍କ ମୁଣ୍ଡଟିକୁ ଥାଉଁସି ଦେଇ କହିଲେ - 'ସୋମୁ, ମୁଁ ଦେବନାଥ ଆସିଛି ।'

ସୌମ୍ୟକାନ୍ତ ଆଖି ଖୋଲିଲେ । ତାଙ୍କୁ ଦେଖିବା ମାତ୍ରକେ ଆଖି ଆନନ୍ଦରେ ଅଧୀର ହୋଇଉଠିଲା ଓ ଦୁଇଟୋପା ଆନନ୍ଦାଶ୍ରୁ ଗଡ଼ିପଡ଼ିଲା । ଦେବାନଥ ଲୁହ ପୋଛି ଦେଲେ ।

'ତୋ ଦେହ ଖରାପ କଥା ଶୁଣି ସମ୍ଭାଳି ହୋଇ ପାରିଲିନି । ପିଲା ଦିନେ ତୋତେ କେତେ ଅପମାନିତ କରିଛିରେ, କେତେ ଆକ୍ଷେପ କରିଛି । କେତେ କନ୍ଦାଇଛି । ରାଗିଛୁ ଏବେ ବି ?' ଦେବନାଥଙ୍କ ପ୍ରୌଢ଼ କଣ୍ଠ ଓଚ୍ଛନିଆ ହୋଇଉଠିଲା କୋହରେ ।

'ନାଇଁ ରାଗିନି ଛୋଟ ସାଆନ୍ତେ । ପିଲାଦିନେ ଏମିତି ସବୁ ଘଟେ, ସବୁ ପିଅନ୍‌ର ପୁଅମାନେ ସାଆନ୍ତଙ୍କ ଠାରୁ ଶୁଣିବାର ଭାଗ୍ୟଟେ ପାଇଥାନ୍ତି ।' ସୌମ୍ୟକାନ୍ତ ହସିଲେ ସ୍ମିତ ହସଟିଏ ।

'ସୋମୁ, ଛୋଟ ସାଆନ୍ତ ଡାକି ମୋତେ ଦୂରେଇ ଦେ'ନା । ତଥାପି ରାଗିଛୁ । ଆଚ୍ଛା, ତୋ ଦେହ କ'ଣ ହୋଇଛି କହିଲୁ ?'' ଜାଣିବାକୁ ସେ ଉତ୍କଣ୍ଠିତ ହୋଇପଡ଼ିଲେ ।

'ମଉସା, ଏତେ ବାଟ ଜର୍ଣ୍ଣିଂ ପରେ କ୍ଳାନ୍ତି ଲାଗୁଥିବ । ଚାଲନ୍ତୁ ଫ୍ରେସ୍ ହୋଇ ଖାଇନେବେ ।' ସନ୍ଦୀପ୍ କଥା ମଝିରୁ ଅଟକାଇ ଦେଲା ।

ଦେବନାଥ ଅଗତ୍ୟା ବାଧ ହୋଇ ଉଠିଲେ । ଏକ ପରିଷ୍କାର, ପରିଚ୍ଛନ୍ନ କୋଠରୀ ତାଙ୍କପାଇଁ ଥିଲା । ଚମ୍ପାଫୁଲର ବାସ୍ନା ମହକି ଉଠୁଥିଲା ସାରା କୋଠରୀ । ପିଲାଦିନେ ସେ ଚଂପାଫୁଲକୁ ଭାରି ଭଲ ପାଉଥିଲେ । ସୋମୁ ଆଜିଯାଏ ସେକଥା କ'ଣ ମନେ ରଖିଛି ଓ ସଜେଇ ଦେଇଛି ଚୀନା ପାତ୍ରରେ ସଦ୍ୟତୋଳା ଚଂପାଫୁଲ । ପାଦଦେବା ମାତ୍ରକେ ପ୍ରଶାନ୍ତଭାବ ତାଙ୍କ ମନ, ପ୍ରାଣ, ଚେତନାକୁ ଆହ୍ଲାଦିତ କଲା । ଅନୁଭବ କଲେ ଏଇ ଶାନ୍ତିର ଅନ୍ୱେଷଣରେ ସେ ଯେମିତି ଯାତ୍ରା କରିଥିଲେ ।

ରାତ୍ରିଭୋଜନ ବେଳେ ସେ ଜାଣିଲେ ଯେ ସୌମ୍ୟକାନ୍ତ ବ୍ଲଡ୍ କ୍ୟାନ୍‌ସରରେ ପୀଡ଼ିତ । ଦେବନାଥଙ୍କ ହାତ ଅଟକି ଗଲା । ମଧ୍ୟରାତ୍ର ପର୍ଯ୍ୟନ୍ତ ତା' ବିଛଣା ନିକଟରେ ବସି ରହିଲେ ।

ତାପରଦିନ ସକାଳେ ସନ୍ଦୀପ୍ ତାଙ୍କୁ ଚା' ଆଣିଦେଲା ଓ କହିଲା- 'ବାପା ଆପଣଙ୍କୁ ଖୋଜୁଥିଲେ ।'

ଦେବନାଥ ଚା' କପ୍ ଧରି ସୌମ୍ୟକାନ୍ତଙ୍କ ନିକଟରେ ବସିଲେ । ପଚାରିଲେ- 'ସୋମୁ, କ'ଣ ହେଲା ! କିଛି କହିବୁ ?'

'ଗୋଟେ ଅନୁରୋଧ କରିବି । ରଖିବେ ତ ?' ସ୍ମିତହସଟିଏ ପ୍ରାର୍ଥନା ମଧ୍ୟରେ ମିଶିଯାଇଥିଲା ।

'ତୋ ସବୁ ଅନୁରୋଧ ମୋର ଶିରୋଧାର୍ଯ୍ୟ, ସୋମୁ । କହ କ'ଣ ତୋ ଆଦେଶ ।' ଦେବନାଥ ମଥା ଆଉଁଷି ଦେଇ କହିଲେ ।

'ମୁଁ ଆଦେଶ ଦେବି ? ମୋର ପାପ ହେବ । ମୁଁ ଆଉ ଭଲ ହେବି ନାହିଁ । ଏତେ ବଡ଼ ଅନୁଷ୍ଠାନକୁ କିଏ ସମ୍ଭାଳିବ ? ସନ୍ଦୀପ୍ ତ ସାନପିଲା । ସେ ଅନୁଷ୍ଠାନ ଚଳାଇବାକୁ ଅସମର୍ଥ । ମୋ ସ୍ୱପ୍ନ ଅସଂପୂର୍ଣ୍ଣ ହୋଇ ରହିଗଲେ ମୋ ଆତ୍ମା କଷ୍ଟ ପାଇବ । ଆପଣ ଏ ବିଦ୍ୟାଳୟର ଅଧକ୍ଷ ଭାବେ ଦାୟିତ୍ୱ ଗ୍ରହଣ କରନ୍ତେ ନାହିଁ !' ସୌମ୍ୟକାନ୍ତ ଅଧିର ହୋଇଉଠିଲେ କହୁ କହୁ ।

'ମୁଁ ଦାୟିତ୍ୱ ନେବି ! ପାରିବ ତ ?' ନିଜ ସାମର୍ଥ୍ୟ ଉପରେ ସନ୍ଦେହ ପ୍ରକଟ କରି ଅସ୍ଥିର ହୋଇଉଠିଲେ ଦେବନାଥ ।

'ସବୁ ପାରିବେ ଆପଣ । ଆଜିଠୁ ଏଘର, ଏସ୍କୁଲ୍ , ଛାତ୍ରଛାତ୍ରୀ, ସନ୍ଦୀପ୍ ଓ ମୁଁ ସବୁ ଆପଣଙ୍କର । ଆପଣଙ୍କ ଛାତିତଳେ ଜମାଟ ବାଂଧି ରହିଥିବା ଅଜସ୍ର ସ୍ନେହ ଶ୍ରଦ୍ଧା ଆମ ସମସ୍ତଙ୍କୁ ବାଂଧି ରଖିବ ।' ସେ ଦୃଢ଼ ଭାବେ ଉତ୍ତର ଦେଲେ ।

'ଠିକ୍ ଅଛି, ସୋମୁ । ତୋ କଥା ରହୁ । ତୋ ସ୍ୱପ୍ନ ସଫଳ କରିବାର ଦାୟିତ୍ୱ ମୋର । ଜାଣେନା ମୋ ପାଖରେ କେତେ ଆୟୁଷ ଅଛି । ତଥାପି ଅବଶିଷ୍ଟ ଆୟୁଷର ପ୍ରତିଦାନରେ ତୋ ସ୍ୱପ୍ନକୁ ସାକାର ରୂପ ଦେବି ।' କହି ସୌମ୍ୟକାନ୍ତଙ୍କର କପାଳରେ ସ୍ନେହସ୍ପର୍ଶ ଦେଲେ ।

ତାଙ୍କ ଉତ୍ତରରେ ସୌମ୍ୟକାନ୍ତଙ୍କ ମୁହଁ ସକାଳର ସୂର୍ଯ୍ୟୋଦୟ ପରି ଉଜ୍ଜ୍ୱଳ, କୋମଳ ଦିଶିଲା । ସନ୍ଦୀପ୍‌ର ମୁହଁ ଖୁସିରେ ଛଳଛଳ ହୋଇଉଠିଲା ।

ଦେବନାଥଙ୍କର ଆଖିରୁ ଝରିପଡ଼ିଲା ଲୁହ ଦୁଇବିନ୍ଦୁ । ଆନନ୍ଦର ନା ପ୍ରାୟଶ୍ଚିତର ନା ଆଶ୍ରୟପ୍ରାପ୍ତିର, ତାହା ଜାଣିବା ତାଙ୍କ ପକ୍ଷେ ମଧ କଠିନ ଥିଲା । ତାଙ୍କୁ ମନେହେଲା ଯେମିତି ଅନେକ ଅନ୍ଧକାର ମଧ୍ୟରୁ ଗୋଟେ ସୁନ୍ଦର ସକାଳକୁ ଏବେ ସେ ଭେଟୁଛନ୍ତି, ଯେଉଁ ସକାଳର ସୁନେଲି କିରଣ ତାଙ୍କ ଦେହମନ ଆତ୍ମାକୁ ଶୁଭ୍ର, ସ୍ୱଚ୍ଛ, ନିର୍ମଳ କରି ଦେଉଛି ଓ ଅନେକ ବାଟ ଚାଲିବାର ସୁନ୍ଦର ରାସ୍ତାରେ ହାତ ଧରି ଚଲାଇ ନେଉଛି ।

# ଅବବାହିକା

ଅସ୍ତରାଗ ଭିଜା ଉପତ୍ୟକାଟି ଚମତ୍କାର ଦିଶୁଥିଲା । ଚମତ୍କାର ଦିଶୁଥିଲେ ନୀଳାଭ ଆକାଶର ରଂଗୀନ୍ ବାଦଲମାନେ । ମୁଁ ସ୍କୁଲ୍‌ର ଗେଟ୍ ବନ୍ଦ କରି ସାମ୍ନା ରାସ୍ତାରେ ଚାଲିବାକୁ ଆରମ୍ଭ କଲି । ଦଶମିନିଟ୍ ଚାଲିଲେ ପଡ଼ିବ 'ଗିବ୍ ଶ' ହସ୍ପିଟାଲ' ।

ହଁ-ମୁଁ ପ୍ରଥମେ ଏଠିକାର ଭୌଗଳିକ ପରିବେଶ କଥା କୁହେ । ଫାଦର ଗିବ୍ ଶ' ଜର୍ଜିଆର ଅଧିବାସୀ । ଚାଳିଶିବର୍ଷ ତଳେ ତେଲଖଣି ସଂଧାନକାରୀ ଦଳ ସହ ସରକାରଙ୍କ ନିମନ୍ତ୍ରଣ କ୍ରମେ ଆସିଥିଲେ । ତେଲ ମିଳିଲା ନାହିଁ । ସରକାର ନିଶ୍ଚୟ ନିରାଶ ହୋଇଥିବେ । ମାତ୍ର ଫାଦର୍ ଗିବ୍ ଶଙ୍କୁ ଭଲ ଲାଗିଲା ଏ ଉପତ୍ୟକା, ଉପତ୍ୟକାର ସବୁଜିମା ଓ ବିଭିନ୍ନ ପ୍ରକାର ଫୁଲ ବିମଣ୍ଡିତ ବସନ୍ତର ପାହାଡ଼ ।

ସେ ଏଠିକାର ସ୍ଥାୟୀ ଅଧିବାସୀ ହେବାକୁ ଆବେଦନ ଜଣାଇଲେ । ନାଗରିକତ୍ୱ ହାସଲ କରିବା ପରେ ଜର୍ଜିଆର ପୈତୃକ ଗୃହ ଓ ଜମିଦାରୀର ସମସ୍ତ ସଂପତ୍ତି ବିକ୍ରି କରି ଏଇ ଉପତ୍ୟକାର ଜମିତକ କିଣିଲେ । ଅନେକ କାଳରୁ ଜଣେ ଜମିଦାରଙ୍କର ଅଧିକାରରେ ଏ ଅଂଚଳଟି ଥିଲା । ସେ ସହରରେ ରହୁଥିବାରୁ ଏ ଜମିପ୍ରତି ତାଙ୍କର ମୋହ ନଥିଲା । ବରଂ ଶାଗମାଛ ଦରରେ ବିକ୍ରି କରିଦେଇ କିଛି ଟଙ୍କା ପାଇଗଲେ ।

ଫାଦର ଦୁଇଶହ ଏକରରୁ ଅଧିକ ଜମି କଣିଥିଲେ । ଜମିଟି ପୁରା ସମତଳ ନଥିଲା, ବରଂ ଦୁଇତିନୋଟି କୁନି କୁନି ପାହାଡ଼ ଥିଲେ ସେଥିରେ । ସେଇ ପାହାଡ଼କୁ ମନୋରମ ଆକୃତି ଦେଲେ । ଗୋଲାକାର ରାସ୍ତା କରି ଦୁଇପାର୍ଶ୍ୱରେ ଫୁଲ ଓ ଲେମ୍ବୁଗଛ ଲଗାଇଲେ । ଜମିର ଏକ ପାର୍ଶ୍ୱରେ ଅନାଥାଳୟ ଓ ସ୍କୁଲ, ଅପରପାର୍ଶ୍ୱରେ ହସ୍ପିଟାଲ୍ ପ୍ରତିଷ୍ଠା କଲେ, ଯେଉଁଠାରେ ପ୍ରାକୃତିକ ଉପାୟରେ ଚିକିତ୍ସା କରାଯାଉଥିଲା । ମଝି ଅଂଚଳରେ ସେ ପ୍ରସ୍ତୁତ କରିଥିଲେ ଗୋଟେ ହର୍ବାଲ୍ ଗାର୍ଡେନ ।  ବିଭିନ୍ନ ପ୍ରକାରର ବୃକ୍ଷଲତା, ଫଳଫୁଲ ଓ ଔଷଧୀୟ ବୃକ୍ଷଲତା ଲଗାଯାଇଥିଲା ।। ହସ୍ପିଟାଲ, ସ୍କୁଲ୍ ତଥା ଅନାଥାଳୟର ଦାୟିତ୍ୱରେ ପ୍ରାୟ ଶହେ ଲୋକ ଥିଲେ ।

ଏଥରକ ମୁଁ ମୋ କଥା କୁହେ । ଦୀର୍ଘ ପଚିଶବର୍ଷ ତଳେ ଫାଦର ଅନାଥାଳୟ ବାରଣ୍ଡାରେ ଏକ ଶୀତୁଆ ପାହାନ୍ତାରେ ମୋତେ ଆବିଷ୍କାର କରିଥିଲେ । ନିଜେ ମୋତେ କୋଳକୁ ନେଇ 'ଆର୍ଯ୍ୟା' ବୋଲି ସମ୍ବୋଧନ କରିଥିଲେ । ସେଇଦିନୁ ମୋ ନାଁ ଆର୍ଯ୍ୟା ରହିଲା ।

ଫାଦରଙ୍କ ହାତଗଢ଼ା ମଣିଷ ମୁଁ । ତାଙ୍କୁ ମୋ ପିତା, ବଂଧୁ ଓ ଦିଗ୍‌ଦର୍ଶକ ଭାବେ

ସ୍ୱୀକାର କରେ । ଗ୍ରାଜୁଏସନ୍ ପରେ ନିଜ ଗୋଡ଼ରେ ଠିଆ ହେବାକୁ ଜଣାଇଲି । ମୋ କଥାରେ ସେଦିନ ହସିଥିଲେ । ଅନୁଭବ କରିଥିଲି ସେହି ସ୍ନିଗ୍ଧ ହସ ହିଁ ତାଙ୍କ ଅନୁମତିର ଭାଷା ।

ମାତ୍ର ଇତି ମଧ୍ୟରେ ଦଶଟି ଚାକିରି ଛାଡ଼ିସାରିଛି । କୌଣସି ଗୋଟିଏ ବି ମୋ ପାଇଁ ସନ୍ତୋଷଜନକ ନଥିଲା । ଫାଦରଙ୍କ ସୁପାରିଶ କ୍ରମେ ଗୋଟେ କଲେଜର ଲାଇବ୍ରେରୀରେ ଲାଇବ୍ରେରିଆନ୍ କାମରେ ଯୋଗ ଦେଲି । ପ୍ରଥମ ସପ୍ତାହ ବେଶ୍ ଭଲ ଲାଗିଲା । ନୂଆ ପୁରୁଣା ବହି ଥାକ ଭିତରେ ବହି ଖୋଜିବା, ଦେବାନେବା ଓ ଅବସର ସମୟରେ ବହି ପଢ଼ିବା ଭଲ ଲାଗୁଥିଲା । ହେଲେ କାହିଁକି କେଜାଣି ପରବର୍ତ୍ତୀ ସମୟରେ ମନ ଭାରି ଉଦାସ ଓ ନିସ୍ପୃହ ଲାଗୁଥିଲା । ଲକ୍ଷ୍ୟ କରୁଥିଲି ବହି ପଢ଼ା ଛଳରେ ଛାତ୍ରଛାତ୍ରୀ ଗପ କରୁଥିଲେ ଓ ବହି ମଝିରୁ ଚିରି ନେଉଥିଲେ । ଏଭଳି ବିଶୃଙ୍ଖଳାରେ ମନେମନେ ବିରକ୍ତହୋଇ ସେ ଚାକିରି ଛାଡ଼ିଦେଲି । ।

ତାପରେ ଚାକିରି କଲି ଗୋଟେ ଡିପାର୍ଟମେଣ୍ଟାଲ୍ ଷ୍ଟୋରର କସ୍‌ମେଟିକ୍ସ ସେକ୍ସନ୍‌ରେ । ନିଜକୁ କଣ୍ଢେଇ ପରି ସଜେଇବାକୁ ପଡ଼େ । ଦେଖେ ସ୍ତ୍ରୀଲୋକମାନେ ଯେତେ ଅସୁନ୍ଦର ହେଲେ ମଧ୍ୟ ସୁନ୍ଦରୀ ହେବାର ପ୍ରବଳ ଲୋଭ ଓ ନିଶାରେ କସ୍‌ମେଟିକ୍ସ କିଣିନିଅନ୍ତି । ନିଜକୁ ଆଦୌ ନ ମାନୁଥିବା ବେଶରେ ଗର୍ବିତ ଭଂଗୀରେ ଆସନ୍ତି । ସତେ ଯେମିତି ସୁନ୍ଦରୀ ପ୍ରତିଯୋଗିତାର ଜଣେ ଜଣେ ପ୍ରତିଯୋଗିନୀ । ଏଭଳି ପରିବେଶରେ ଖୁବ୍ ଅବରୁଦ୍ଧ ମନେକଲି ଓ ଦେଢ଼ମାସ ପରେ ଛାଡ଼ିଦେଲି ।

ଫାଦରଙ୍କର ଜଣେ ବଂଧୁ ଥିଲେ ବ୍ରାଉନି ହେଓ୍ୱାର୍ଡ଼ । ତାଙ୍କର ବିରାଟକାୟ କଫି ହାଉସ୍ ଥିଲା । ସେଠି ମଧ୍ୟ କିଛିଦିନ କାମ କଲି । ଅନୁଭବ କଲି ପୁରୁଷଙ୍କ ଆଖିରେ ନାରୀର ସୌନ୍ଦର୍ଯ୍ୟ ଓ ଦେହପ୍ରତି କଫି ପିଇବା ଠାରୁ ଅଧିକ ତୀବ୍ର ନିଶା । ମୋ ପୂର୍ବରୁ ସେଠି ଅଧିକାଂଶ ମହିଳା କର୍ମୀ ଥିଲେ । କିଛି ସପ୍ତାହ ପରେ ସେ କାମ ବି ଛାଡ଼ିଦେଲି ।

ଇତି ମଧ୍ୟରେ ଛାଡ଼ିଥିଲି ସୁପରଭାଇଜର କାମ, କଂପୋଜିଂ, ଗଭର୍ଣ୍ଣେସ୍, କେକ୍ ଓ ପେଷ୍ଟ୍ରି କଂପାନୀର ଡେକୋରେଟର୍ କାମ ଇତ୍ୟାଦି । ଏସବୁ ପରେ ଫାଦର ଦିନେ ସଂଧ୍ୟାରେ କହିଲେ - ''ଆର୍ଯ୍ୟା ! ତୁମ ପାଇଁ ଭଲ ଚାକିରି ଖୋଜିଛି । ଗୋଟେ ନୁହେଁ ଦୁଇଟି । କରିବ ?

'ଦୁଇଟି, ମୋ ଭଳି ଅସ୍ଥିରମନା ମଣିଷ କରିପାରିବ ବୋଲି ଭାବୁଛନ୍ତି ?' ମୁଁ ନିଜ ଉପରେ ଅନାସ୍ଥା ଭାବ ପ୍ରକଟ କଲି ।.

'ତୁମେ ଅସ୍ଥିରମନା ନୁହଁ । ବରଂ ତୁମ ଅନ୍ତର୍ନିହିତ ଶକ୍ତି ପାଇଁ ସେ କାମ ଗୁଡ଼ିକ ଅତ୍ୟନ୍ତ ତୁଚ୍ଛ ଥିଲା । ଯାହା ତୁମକୁ ଆକର୍ଷିତ କରିପାରୁନଥିଲା । ଦେଖିବ, ଏ ଥରକର କାମ ତୁମକୁ ନିଶ୍ଚୟ ସନ୍ତୁଷ୍ଟ କରିପାରିବ । ଏତେ ଭଲଲାଗିବ ଯେ ତୁମେ ଛାଡ଼ିବାକୁ ଚାହିଁଲେ ମଧ୍ୟ ଛାଡ଼ିପାରିବ ନାହିଁ ।' ସେ ସ୍ମିତ ହସି ଉତ୍ତର ଦେଲେ ।

'ମୋତେ କ'ଣ କରିବାକୁ ହେବ ?' ଏତିକି ମାତ୍ର ପ୍ରଶ୍ନ କଲି । ହେଲେ ମୋ ମନର ପ୍ରଚଣ୍ଡ ଆଗ୍ରହ କଥାରେ ଫୁଟି ଉଠୁଥିଲା ।

'ତୁମେ ସକାଳ ଆଠଟାରୁ ବାରଟାଯାଏ ଆମ ସ୍କୁଲ୍‌ରେ ପଢ଼ାଇବ । ଅପରାହ୍ଣ ଚାରିଟାରୁ ରାତି ଦଶଟା ଯାଏ ହସ୍ପିଟାଲରେ ରୋଗୀଙ୍କ ଯତ୍ନନେବ । ସେଇଠି ସିଙ୍ଗଲ୍ ଫ୍ଲାଟ୍‌ରେ ତୁମ ରହିବା ବ୍ୟବସ୍ଥା କରିଛି । ହେଲା ? ଫାଦର ମୋ କର୍ତ୍ତବ୍ୟ ନିରୂପଣ କରିଦେଲେ ।

ଶୁଣିବା ମାତ୍ରକେ ମୋ ମନ ଖୁସି ହୋଇଗଲା । ମୁଁ ତ ବହୁତ ଦିନରୁ ଚାହୁଁଥିଲି ଛୋଟି ପିଲାଙ୍କୁ ପଢ଼ାଇବାକୁ ଓ ହସ୍ପିଟାଲର ଶାନ୍ତ ବାତାବରଣରେ ରୋଗୀଙ୍କ ସହ ସମୟକୁ ବିତାଇବାକୁ । ଓଃ-ଏଇ କଥା କେମିତି ମୋ ମନକୁ ଆସୁନଥିଲା ଯେ ? ଏଠିକାର ସୁନ୍ଦର ପରିବେଶକୁ ଛାଡ଼ିଯିବାରେ ମୋ ମନରେ ଅଜସ୍ର କୁଣ୍ଠାବୋଧ ଭର୍ତ୍ତି ହୋଇଥିଲା । ତେଣୁ ଅନ୍ୟକାମ ଯେତେ ଭଲ ହେଲେ ବି ମୋ ମନ ସନ୍ତୁଷ୍ଟ ହୋଇପାରୁନଥିଲା । ମୁଁ ତାଙ୍କୁ ଧନ୍ୟବାଦ ଜଣାଇ କହିଲି - 'କାଲି ଠାରୁ ମୁଁ କାମରେ ଲାଗିପଡ଼ିବି ।'

ଛ'ମାସ ହେଲା ସକାଳବେଳା ପିଲାଙ୍କୁ ପାଠ ପଢ଼ାଇବା ଓ ଅପରାହ୍ଣରୁ ରାତିଯାଏ ହସ୍ପିଟାଲ କାମ ବେଶ୍ ଭଲ ଲାଗୁଥିଲା । ଭାବୁଥିଲି ଫାଦରଙ୍କ ନିର୍ଣ୍ଣୟ ହିଁ ସଠିକ୍ ଥିଲା ।

ମୁଁ ଭାବୁ ଭାବୁ ଆସି ହସ୍ପିଟାଲ୍ ଗେଟ୍ ନିକଟରେ ପହଞ୍ଚିଯାଇଥିଲି । ମୋ ଫ୍ଲାଟ୍‌ର କବାଟ ଖୋଲିବା ସମୟରେ ଆଖିପଡ଼ିଲା ଫ୍ରଣ୍ଟ ସେଲ୍‌ଫରେ ଚିଠିଟିଏ ଅଛି । ହସ୍ପିଟାଲର ଏନ୍‌ଭଲପ୍ ଥିଲା । ଖୋଲି ଦେଖିଲି ଫାଦରଙ୍କ ହାତ ଲେଖା ଚିଠି । 'ଆର୍ଯ୍ୟା, ତୁମେ ସ୍ପେଶିଆଲ୍ ୟୁନିଟ୍‌ର କ୍ୟାବିନ୍ ଟୁ'ର ଦାୟିତ୍ୱ ନେବ ।'

ସ୍ପେଶିଆଲ୍ ୟୁନିଟ୍‌ର ଦାୟିତ୍ୱ ଖୁବ୍ କମ୍ ଓ ଦାୟିତ୍ୱବାନ୍‌ଲୋକଙ୍କୁ ଦିଆ ଯାଇଥାଏ । ହଠାତ୍ ଫାଦର ମୋତେ କାହିଁକି ଚୟନ କଲେ ବୁଝିପାରିଲି ନାହିଁ । ଏ ୟୁନିଟ୍‌ର କ୍ୟାବିନ୍ ଗୁଡ଼ିକରେ ଦୁଇଟି ରୁମ୍, ଆଟାଚଡ୍ ବାଥ୍ , ଲାଟିନ୍, ରୁମ୍‌ରେ ଟିଭି. ଖେଳ ସାମଗ୍ରୀ, ବହି, ପେପର ମାଗାଜିନ୍ ସହ ଫୁଲ ସୁସଜ୍ଜିତ ବାରଣ୍ଡାରେ ସକାଳ ସଂଧ୍ୟା ବିତାଇବାର ବ୍ୟବସ୍ଥା ଅଛି । ପ୍ରତ୍ୟେକ କ୍ୟାବିନ୍ ପରସ୍ପର ଠାରୁ ଭିନ୍ନ । ଛୋଟଛୋଟ କଟେଜ୍ ପରି ମନେହୁଏ । ବହୁ ପୂର୍ବରୁ ଏଗୁଡ଼ିକୁ ବୁକ୍ କରିବାକୁ ପଡ଼େ ।

ମୁଁ ବିଶ୍ରାମ ନେଇ ଯଥା ସମୟରେ ବାହାରିଲି । ସାଂଗରେ ନେଲି ମୋ ବଗିଚାର କିଛି ଗୋଲାପ ଓ କ୍ରିସେନ୍‌ଥମସ୍ । କ୍ୟାବିନ୍ ଟୁ'ର କବାଟରେ ନକ୍ କଲି । ଭିତରୁ ଶୁଣାଗଲା - 'କମ୍ ଇନ୍' ।

ଭିତରେ ପାଦ ଦେଲି । ବଡ଼ ରୁମଟିର ସଫେଦ୍ ବିଛଣାରେ ଶୋଇଥିଲେ ଜଣେ ବୟସ୍କ ଭଦ୍ରବ୍ୟକ୍ତି । କହିଲି - 'ଗୁଡ୍ ଆଫ୍‌ଟର ନୁନ୍ ।' । ଶୁଭେଚ୍ଛା । ଜଣାଇ ତାଙ୍କ ହାତକୁ ଫୁଲତକ ବଢ଼ାଇଦେଲି ।

ସେ ଧନ୍ୟବାଦ ଦେଇ ମୋ ହାତରୁ ନେଲେ ଓ ସାମାନ୍ୟ ଉଠିବସିଲେ । ବୟସ ପଞ୍ଚଷଠିରୁ ଊର୍ଦ୍ଧ୍ୱହେବ । ଦୀର୍ଘଦେହ, ଗୌରବର୍ଣ୍ଣ, ନୀଳଆଖି, ପ୍ରଶସ୍ତ କପାଳ ଲମ୍ବାନାକ, ସାମାନ୍ୟ ଦାଢ଼ୀରେ ଏକ ରାଜପୁରୁଷ ପରିମନେ ହେଲେ । ସେ ଆଖିରେ ହାତ ବୁଲାଇନେଇ କହିଲେ - 'ସିଷ୍ଟର, ମୋ ଚଷମାଟା ଦେବେ କି ?'

ଦେଖିଲି ଚଷମାଟି ତକିଆ ଆରପଟେ ରହିଛି । ଉଠାଇ ଆଣି ତାଙ୍କ ଆଖିରେ ପିନ୍ଧାଇ ଦେଲି । ସେ ଧନ୍ୟବାଦ ଦେଇ ମୋତେ ଚାହିଁଲେ । ଦେଖିବା ମାତ୍ରକେ ତାଙ୍କ ଆଖି ବିସ୍ମୟରେ ବିସ୍ତାରିତ ହୋଇଉଠିଲା । କପାଳରେ କୁଞ୍ଚିତ ରେଖା ଫୁଟିଉଠିଲା । ସେ କିଛି କହିବା ପୂର୍ବରୁ ନକ୍ କରି ପଶି ଆସିଲେ ଫାଦର ।

କହିଲେ- 'ମିଃ. ଜନ୍‌ସନ୍ ! ଅସମୟରେ ଆସି ହଇରାଣ କରିଥିବାରୁ ମୁଁ ଦୁଃଖିତ । ଇଏ ଆର୍ଯ୍ୟା । ମୋ କନ୍ୟା ସଦୃଶ । ଆପଣଙ୍କ ଅପରାହ୍ଣର ଦାୟିତ୍ୱରେ ଆଜିଠାରୁ ଆର୍ଯ୍ୟା ରହିବ । ଆପଣଙ୍କର କୌଣସି ତ୍ରୁଟି ହେବନାହିଁ ।'

'ଈଶ୍ୱର ମୋତେ ଆଉ କେତେଦିନ ଦେଇଛନ୍ତି ଯେ ? ତଥାପି ବାକିଦିନ ଏଠି ଶାନ୍ତିରେ ରହିପାରିବି - ଏହିକ୍ଷଣ ଠାରୁ ମୋର ହୃଦ୍‌ବୋଧ ହେଉଛି ।' ତାଙ୍କ କଥାରେ କିଛି ଅଭିମାନ, କିଛି ରହସ୍ୟ ଥିବା ପରି ମନେହେଲା ।

'ଆମେ ସମସ୍ତେ ଯିବା ମିଃ. ଜନ୍‌ସନ୍ । କିଏ ଆଗ କିଏ ପଛ । କେହି ଏ ନିୟମରୁ ବାଦ୍ ଯାଇନାହାନ୍ତି । ତଥାପି ଧୈର୍ଯ୍ୟ ଧରନ୍ତୁ । ଈଶ୍ୱରଙ୍କ କୃପାରେ ଏ ପୃଥିବୀ ତିଷ୍ଠିଛି ।' ଫାଦର ତାଙ୍କୁ ସାନ୍ତ୍ୱନା ଦେଇ ଫେରିବା ବେଳେ ମୋତେ ଇଶାରା କରି ବାହାରକୁ ଡାକିଲେ ।

କ୍ୟାବିନ୍‌ରୁ ବାରଣ୍ଡାକୁ ବାରଣ୍ଡାକୁ ଆସିଲୁ । ଫାଦର କ୍ଷୀଣ ଦୀର୍ଘଶ୍ୱାସଟିଏ ଛାଡ଼ି କହିଲେ - 'ଆର୍ଯ୍ୟା ! ମିଃ. ଜନ୍‌ସନ୍ ଜଣେ କୋଟିପତି । ପୃଥିବୀରେ ତାଙ୍କର କୋଡ଼ିଏଟି ସ୍ଥାନରେ ହୀରା ବ୍ୟବସାୟ ରହିଛି । ମାତ୍ର କେହି ନିଜର ନାହାନ୍ତି । ତୁମେ ତାଙ୍କର ସଠିକ୍ ଯତ୍ନନେବ ବୋଲି ଏ ଦାୟିତ୍ୱ ଦେଇଛି । ତାଙ୍କୁ ଲ୍ୟୁକୋମିଆ । ଅତି ବେଶିରେ ଆଉ ତିନି ଚାରିମାସ ବଂଚିପାରନ୍ତି । ତାଙ୍କ ସ୍ୱାସ୍ଥ୍ୟ ସଂପର୍କରେ ସେ ଜାଣନ୍ତି । ତାଙ୍କ ଶେଷ ସମୟରେ ତୁମ ସ୍ନେହ, ସେବା ନିଶ୍ଚୟ ଔଷଧ ପରି କାମ ଦେବ ।'

ଫାଦରଙ୍କ କଥାରେ ମୋ ଆଖିକୋଣରେ ଲୁହ ଜକେଇ ଆସିଲା । ସେ ବିଦାୟ ନେଇ ଫେରିଗଲେ ଓ ମୁଁ ଭିତରକୁ ଆସିଲି ।

ମିଃ. ଜନ୍‌ସନ୍ ମୋତେ ଦେଖି ସ୍ମିତ ହସିଲେ ଓ ମୋ ମୁହଁକୁ ଭଲ କରି ଦେଖିଲେ । ଭାବିଲି କ'ଣ ଖୋଜୁଛନ୍ତି ମୋ ମୁହଁରୁ ? ତାଙ୍କ ଦୃଷ୍ଟି ହଟାଇବାକୁ ଯାଇ କହିଲି- 'ମିଃ. ଜିନ୍‌ସନ୍ ! ଆପଣ କ'ଣ ପିଇବେ । ଚା' କଫି ହରଲିକ୍ସ ? ଭାବୁଛି ଏ ଶୀତ ସଂଧ୍ୟାରେ ହରଲିକ୍ସ ଦେହ ପାଇଁ ନିଶ୍ଚୟ ସ୍ୱାସ୍ଥ୍ୟପ୍ରଦ । କ'ଣ କହୁଛନ୍ତି ।''

ସେ ମୋତେ ବିମୁଗ୍ଧ ଦୃଷ୍ଟିରେ ଆଉଥରେ ଚାହିଁଲେ । ସେ ଦୃଷ୍ଟିରେ ସ୍ନେହର ଶୀତଳ ପ୍ରଲେପ ଥିବା ପରି ଅନୁଭବ କଲି । କହିଲେ - 'ତୁମ କଥା ନିଶ୍ଚୟ ଠିକ୍ ।'

ମୁଁ ତାଙ୍କୁ ହର୍‌ଲିକ୍ସ କରି ବଢ଼ାଇଦେଲି । ସେ ପିଇଲେ । ସଂଧ୍ୟା ହେବା ପୂର୍ବରୁ ମୁଁ କାଚଝରକା ବନ୍ଦ କରି ମୋଟା ସ୍କିନ୍ ପକାଇଦେଲି । ତାଙ୍କ ମେଡ଼ିସିନ୍ ଚାର୍ଟକୁ ଭଲଭାବେ ପଢ଼ିଲି । ରାତି ଆଠଟାରେ ସେ ରାତ୍ରିଭୋଜନ କରିବେ ଓ ଦୁଇଟା ଔଷଧ ଖାଇବେ । ରାତି ଦଶଟାରେ ହରଲିକ୍ସ ଓ ଗୋଟେ ଇଂଜେକ୍ସନ୍ ନେବେ । ଡଃ. ରାୟ ଆସି ଇଂଜେକ୍ସନ୍ ଦେବେ ।

ମୁଁ ମୋ ବ୍ୟାଗ୍ ଭିତରୁ ବାହାର କଲି ସ୍ୱେଟର ଓ ନୀଳରଂଗର ସିଲ୍କ ହେଡ୍‌ସ୍କାର୍ଫଟେ । ସ୍ୱେଟର ପିନ୍ଧିନେଇ ସ୍କାର୍ଫଟିକୁ ମଥାରେ ଢ଼ାଙ୍କି ନେଇ ମିଃ. ଜନ୍‌ସନ୍‌ଙ୍କ ପାଖରେ ପଡ଼ିଥିବା ଚେୟାରରେ ଆସି ବସିଲି । ଦେଖିଲି ସେ ଆଖିବନ୍ଦ କରିଛନ୍ତି । ମୁଁ ନୀରବରେ ବସି ରହିଲି ।

ପନ୍ଦର ମିନିଟ୍ ପରେ ସେ ଆଖି ଖୋଲିଲେ । ମୋତେ ଦେଖିବା ମାତ୍ରକେ ଧଡ଼ପଡ଼ ହୋଇ ବିଛଣାରେ ବସି ପଡ଼ିଲେ । ଦୀର୍ଘଶ୍ୱାସଟେ ନେଇ ବିସ୍ମୟରେ ଉଚ୍ଚାରଣ କଲେ କିଛି ଶବ୍ଦ, ଯାହା ମୋ ପାଇଁ ସମ୍ପୂର୍ଣ୍ଣ ଅବୋଧ ଥିଲା । ମୁଁ ଉଠିଯାଇ ତାଙ୍କ କାନ୍ଧରେ ହାତ ରଖିଲି । ପଚାରିଲି -'ମିଃ. ଜନ୍‌ସନ୍, ଆପଣ ଠିକ୍ ଅଛନ୍ତି ତ ? କିଛି ଦୁଃସ୍ୱପ୍ନ ଦେଖିଲେ କି ?'

ସେ ମୋତେ ଆବାକାବା ହୋଇ କିଛିକ୍ଷଣ ଦେଖିଲେ । ଥରଥର ଗଳାରେ କହିଲେ- 'ଦୁଃସ୍ୱପ୍ନ ? ବୋଧେ ସେଇଆ ।'

ରାତି ଦଶଟା ପର୍ଯ୍ୟନ୍ତ ମୁଁ ମୋ କାମ ଠିକ୍‌ରେ କଲି । ଡଃ ରାୟ ଆସି ଇଂଜେକ୍‌ସନ ଦେଇଗଲେ । ଜାଣିଛି ଏବେ ମଃ.ଜନ୍‌ସନ୍ ସକାଳଯାଏ ବେଶ୍ ଆରାମରେ ଶୋଇ ଯିବେ । ମୁଁ ଯିବା ପୂର୍ବରୁ ତାଙ୍କୁ ଶୁଭରାତ୍ରି ଜଣାଇଲି ।

ସ୍ମିତ ହସି ସେ ଉତ୍ତର ଦେଲେ - 'ଗୁଡ଼୍‌ନାଇଟ୍ ସିଷ୍ଟର । ତୁମକୁ ଗୋଟେ ଅନୁରୋଧ । ଏଇ ସ୍କାର୍ଫଟା ବାନ୍ଧିକରି ସବୁଦିନ ଆସିବ । ତୁମକୁ ବେଶ୍ ମାନୁଛି ।'

ମୁଁ ପ୍ରତ୍ୟୁତ୍ତରରେ ସାମାନ୍ୟ ହସିଲି ମାତ୍ର ।

ସେଇ ପ୍ରଥମ ସପ୍ତାହରୁ ମିଃ. ଜନ୍‌ସନ୍‌ଙ୍କର ବଂଧୁ ହୋଇଗଲି । ଦିନେ ପଚାରିଲେ- 'ତୁମକୁ ସିଷ୍ଟର ନ ଡାକି ନାଁ ଧରି ଡାକିବି କି ?'

'ହଁ-ତାହାହିଁ ସୁନ୍ଦର ହେବ । ଫାଦର ମୋ ନାଁ ଧରି ଡାକନ୍ତି । ଆପଣଙ୍କୁ ମୁଁ ମଧ୍ୟ ଫାଦରଙ୍କ ଭଳି ପିତୃତୁଲ୍ୟ ମନେକରେ ।' ବିନମ୍ର ଭାବେ ଉତ୍ତର ଦେଲି ।

'ଆର୍ଯ୍ୟା !' ତାଙ୍କ ସମ୍ବୋଧନ ଭାରି ଆତ୍ମୀୟଭରା ଲାଗିଲା । କହିଲେ - 'ମୋର ତ ଦିନକାଳ ସରି ଆସୁଛି ! ତୁମେ ମୋ ପାଇଁ ଗୋଟେ କାମ କରିବ ?'

'କୁହନ୍ତୁ । ଯେତେ କଷ୍ଟ ହେଲେ ବି ନିଶ୍ଚୟ କରିବି ।' ଦୃଢ଼ କଣ୍ଠରେ ପ୍ରତିଶ୍ରୁତି ଦେଲି ।

'ଅତି କଷ୍ଟକର ନୁହେଁ ନିଶ୍ଚୟ । ମୋ ଜୀବନର ଅନୁଭୂତି ତୁମକୁ କହିବି । ସେ ସବୁ ସଜାଇ ଲେଖିବାର ଦାୟିତ୍ୱ ତୁମର । ପାରିବ ?' ତାଙ୍କ ଅନୁରୋଧରେ କେମିତି ଏକ କାତର ଭାବଥିଲା ।

'ନିଶ୍ଚୟ । କାଲିଠାରୁ ଲେଖାକାମ ଆରମ୍ଭ ହେବ ।' ତାଙ୍କୁ ସାନ୍ତ୍ୱନା ଦେଲି ।

'ତେବେ ଆଜି କିଛି କଥା ଶୁଣ ।' କହି ସେ କଥା ଆରମ୍ଭ କଲେ । ସେ ଅନାଥ ଥିଲେ । ପିତୃମାତୃ ପରିଚୟହୀନ । ଭାରତକୁ ଏକ ନିଗ୍ରୋ ଦଂପତି ପର୍ଯ୍ୟଟନରେ ଆସି ଏକ ଅନାଥାଶ୍ରମରୁ ତାଙ୍କୁ ନେଇଥିଲେ । ସେତେବେଳେ ସେ ଥିଲେ ପାଞ୍ଚବର୍ଷର ଶିଶୁ । ଆଫ୍ରିକାରେ ଦୁଇବର୍ଷ ଭଲରେ ଶିକ୍ଷାଦୀକ୍ଷା ଓ ସ୍ନେହ ମଧ୍ୟରେ ବଢୁଥିବା ବେଳେ ସେହି ଦଂପତି ନିଜର ସଂପତ୍ତି ପାଇଁ ଶତ୍ରୁଦ୍ୱାରା ନିହତ ହେଲେ । ଶତ୍ରୁ ନିଜ କୁଟୁମ୍ବର ଥିଲେ । ନିଃସନ୍ତାନ ଦର୍ଶାଯାଇ ତାଙ୍କର ସମସ୍ତ ସଂପତ୍ତି ସେମାନେ ନେଇଗଲେ । ହତ୍ୟାକାଣ୍ଡ ରାତ୍ରିରେ କ୍ରୀତଦାସ ଭାବେ ମିଃ. ଜନ୍‌ସନ୍‌କୁ ଶତ୍ରୁମାନେ ବିକ୍ରି କରିଦେଲେ । ସାତ ଆଠବର୍ଷ ବୟସରେ ନିଜକୁ ଭାଗ୍ୟ ହାତରେ ସମର୍ପି ଦେବା ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନଥିଲା

ମାଲିକର ତାଙ୍କ ଭଳି ଷାଠିଏରୁ ଉର୍ଦ୍ଧ୍ୱ କ୍ରୀତଦାସ ଥିଲେ । ସେମାନେ ବିଭିନ୍ନ ବୟସର ସ୍ତ୍ରୀ-ପୁରୁଷ, ଯୁବକଯୁବତୀ, ବାଳକ ବାଳିକା ଥିଲେ । ଏମାନେ ସମସ୍ତେ ମକା କ୍ଷେତ୍ରରେ ପଶୁଙ୍କ ପରି ଦିନରାତି କାମ କରନ୍ତି । ରାତିରେ ମିଳେ ମକା ରୁଟି ଦୁଇଖଣ୍ଡ ଓ ମଗେ କଫି । ମାସକୁ ଥରେ ଅଧେ ଘୁଷୁରୀ ମାଂସ ସିଝା ଦୁଇ ଚାରିଖଣ୍ଡ ମିଳେ । ଏମିତି ବିତିଗଲା ପାଞ୍ଚ ଛ'ବର୍ଷ । ମାଲିକଟି କୌଣସି ଏକ ଅଜ୍ଞାତ ରୋଗରେ ଅଚାନକ ମୃତ୍ୟୁ ବରଣ କଲା । ତା'ର ପୁଅଟି ଭିନ୍ନ ପ୍ରକୃତିର ଥିଲା । ବାପ ବଂଚିଥିବା ବେଳେ ସେ ଅତ୍ୟାଚାରର ବିରୋଧ କରୁଥିଲା ।  ବାପ ମରିଗଲା ପରେ ସମସ୍ତଙ୍କୁ ମୁକ୍ତ କରିଦେଲା । ଯିଏ ଚାହିଁଲା ତା' ପାଖରେ ଶ୍ରମିକ ଭାବେ କାମ କଲା । ନଚେତ୍ ଯିଏ ଗାଁକୁ ଫେରିଯିବାକୁ ଚାହିଁଲା, ତାକୁ କିଛି ଟଙ୍କା ଦେଇ ବିଦା କରିଲା ।

ମିଃ. ଜନ୍‌ସନ୍‌ଙ୍କର ଫେରିବାର କୌଣସି ରାସ୍ତା ନଥିଲା । ସେତେବେଳକୁ ସେ ତେର ଚଉଦ ବର୍ଷର ବାଳକ । ଦିନେ ଗୋଟେ ଛକ ନିକଟସ୍ଥ ଷ୍ଟାଚ୍ୟୁ ପାଦତଳେ ସକାଳୁ ବସି ଥାନ୍ତି । ଶୀତରେ ଦେହ ଥରୁଥାଏ । ସେଇ ବାଟ ଦେଇ ଗୋଟେ ଘୋଡ଼ାଗାଡ଼ିରେ ଜଣେ ଭଦ୍ରଲୋକ ଯିବାବେଳେ ଅଟକି ଗଲେ । ତାଙ୍କୁ ଅଳ୍ପ ସମୟ ଲକ୍ଷ୍ୟ କରି ନିଜ ସାଂଗରେ ନେଇଗଲେ । ସେ ଥିଲେ ଗୋଟେ ଛୋଟ ହୀରା ଦୋକାନର ଅଂଶୀଦାର । ତାଙ୍କରି ନିକଟରେ ବଦଳି ଗଲା ଭାଗ୍ୟ । ପ୍ରଥମେ ଘୋଡ଼ାଗାଡ଼ିର କଚୁଆନ୍, ପରେ ତାଙ୍କ

ଅଂଗରକ୍ଷକ, ତାପରେ ଦୋକାନର ଦାୟିତ୍ୱ ଓ ଶେଷରେ ବ୍ୟବସାୟୀ । ନିଜ ପରିଶ୍ରମ ବଳରେ ସେ ହୋଇପାରିଛନ୍ତି କୋଡ଼ିଏଟି ହୀରା ବ୍ୟବସାୟ ସ୍ଥଳର ମାଲିକ । ଅକ୍ଳାନ୍ତ ପରିଶ୍ରମ, ଅନୁଭୂତି, ନିଷ୍ଠା ତାଙ୍କୁ ଏଠି ପହଞ୍ଚାଇଛି । ମିଃ. ଜନ୍‌ସନ୍ ଆଖି ବନ୍ଦ କରି ସ୍ମୃତି ଚାରଣ କରୁଥାନ୍ତି ।

ମୁଁ ବିସ୍ମିତ ଚମତ୍କୃତ ହୋଇଉଠୁଥିଲି ତାଙ୍କ କଥା ଶୁଣିବାବେଳେ । ସତେ ଯେମିତି ତାଙ୍କ ଜୀବନ କଥା ନୁହେଁ, ବରଂ ଏକ ଲୋମହର୍ଷଣକାହାଣୀ ଶୁଣୁଥିଲି । 'ଟମ୍‌କକାଙ୍କ କୁଟୀର' ପିଲାଦିନେ ପଢ଼ିଥିଲି । ଗପ ପଢ଼ି କାନ୍ଦିଥିଲି । ହେଲେ ମିଃ. ଜନ୍‌ସନ୍‌ଙ୍କ ଜୀବନର ସତ୍ୟକାହାଣୀ ତା' ଠାରୁ ଆହୁରି ଯନ୍ତ୍ରଣାପୂର୍ଣ୍ଣ, ଦୁଃଖଦାୟକ । ଦୁଇଧାର ଉଷ୍ଣ ଅଶ୍ରୁ ବହିଗଲା ।

ସେଦିନ ମୋ କାମ ସାରି ଫେରିଲି । ଦୀର୍ଘରାତି ଯାଏ ବସିବସି ତାଙ୍କ ଅନୁଭୂତିକୁ ଗୋଟେ ଡାଏରୀରେ ଲେଖିଲି । ତାପର ଦିନ ଯଥା ସମୟରେ ତାଙ୍କ ପାଖରେ ପହଞ୍ଚିଲି । କିଛି ଫୁଲ ବଢ଼ାଇଦେଇ ବ୍ୟାଗରୁ ଡାଏରୀ ବାହାର କଲି । କହିଲି - 'ଏ ଡାଏରୀରେ ଆପଣଙ୍କ କଥା ଲେଖିବା ଆରମ୍ଭ କରିଛି ।'

'ହଁ, କାଲିତ ଆରମ୍ଭ ହୋଇଛି ମାତ୍ର ।' କହି ସେ ମୋତେ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଦେଖିଲେ ।'ତାପରର କଥା ଶୁଣ ।'

'ଶୁଣିବି । ମାତ୍ର ପ୍ରଥମେ ମୋ କର୍ତ୍ତବ୍ୟ କରେ ।' କହି ହର୍ଲିକ୍ସ କରି ପିଆଇଦେଲି । କେତୋଟି ମେଡ଼ିସିନ୍ ଦେଲି । ରୁମ୍‌ର ବହିପତ୍ର, ସାର୍ଟ ଭାଂଗି ସେଲ୍‌ଫରେ ରଖିଲି ।

କାମ ସାରି ପାଖରେ ବସିପଡ଼ି କହିଲି - 'କୁହନ୍ତୁ ତାପରର କଥା । ହଁ- ଏତେ କଥା ମଧ୍ୟରେ ଆପଣଙ୍କ ପରିବାର କଥା ତ କହିନାହାନ୍ତି ।'

'ବ୍ୟବସାୟୀର ପରିବାର ଓ ସ୍ୱପ୍ନ ହେଉଛି ତା'ର ବ୍ୟବସାୟ । କେତେବେଳେ ମୋତେ ଚାଳିଶବର୍ଷ ହୋଇଗଲା । ମୁଁ ଜାଣିପାରିଲି ନାହିଁ । ହୀରା ବ୍ୟବସାୟର ନିଶା ମୋତେ ସଂପୂର୍ଣ୍ଣ ଗ୍ରାସି ଯାଇଥିଲା । ଛୋଟ ଦୋକାନରୁ ବଡ଼ ଦୋକାନ, ସବୁଠୁ ବଡ଼ ଦୋକାନ, ପୁଣି ଖଣିର ଅଂଶୀଦାର, ଖଣିମାଲିକର ସ୍ୱପ୍ନ ଭିତରେ ମୁଁ ହଜି ଯାଇଥିଲି । ଅବଶ୍ୟ କିଛି ସୁନ୍ଦରୀ କେତେ ରାତ୍ରିର ଆମୋଦସଂଗୀନୀ ହୋଇଥିଲେ । ସେମାନଙ୍କ ଦେହର ବାସ୍ନାରେ କିଛି ମୁହୂର୍ତ୍ତର କ୍ଳାନ୍ତିକୁ ଭୁଲିଛି । ହେଲେ ଭୁଲି ପାରିନି ହୀରାର ଶୁଭ୍ର ଚମକକୁ, ନିଶାକୁ ।

ଥରେ ଗୋଟେ ହୀରାମେଳାକୁ ମୋ ଖଣିର ମୂଲ୍ୟବାନ୍ ହୀରା ନେଇ ଏ ଦେଶକୁ ଆସିଥିଲି । ଦିନେ ସଂଧ୍ୟାରେ ଭେଟିଥିଲି ଜଣେ ଯୁବତୀଙ୍କୁ । ସେ ଜଣେ ବୟସ୍କା ଭଦ୍ରମହିଳାଙ୍କୁ ଚାଲିବାରେ ସାହାଯ୍ୟ କରି ତାଙ୍କ ହାତ ଧରି ନେଉଥାନ୍ତି । ସାଧାରଣ ବେଶଭୂଷା ଅଥଚ ଦୟାପୂର୍ଣ୍ଣ ମୁଖମଣ୍ଡଳର କାନ୍ତି ଅସାଧାରଣ ମନେ ହେଉଥିଲା । ବୟସ୍କା ଭଦ୍ରମହିଳା ଏକ

ହୀରା ଦୋକାନୀଙ୍କ ପତ୍ନୀ ଥିଲେ । ସାହାଯ୍ୟକାରିଣୀ ଯୁବତୀ ଥିଲେ ତାଙ୍କର ଜଣେ ଦୂର ସଂପର୍କୀୟାଙ୍କ ଝିଅ । ଦାରିଦ୍ର୍ୟ ପାଇଁ ଭଦ୍ରମହିଳାଙ୍କ ଘରେ କାମ କରି ରହୁଥିଲେ ।

ହୀରା ଦୋକାନୀ ମୋତେ ନିମନ୍ତ୍ରଣ କଲେ ରାତ୍ରି ଭୋଜନ ପାଇଁ । ମୋର ଯିବାର ଏକମାତ୍ର କାରଣ ଥିଲା ସେହି ଯୁବତୀକୁ ସାକ୍ଷାତ କରିବା ପାଇଁ । ରାତ୍ରି ଭୋଜନ ବେଳେ ସେ ଆମକୁ ଖାଦ୍ୟ ପରିବେଷଣ କରୁଥିଲେ । ଦେହରେ ଥିଲା ଧଳାଲାଲ୍ ଛିଟ ଫୁଲବାଲା ଗାଉନ୍ । ମଥାରେ ବନ୍ଧା ଯାଇଥିଲା ସେହି ରଂଗର ସ୍କାର୍ଫ । ଲମ୍ବା ବେଣୀ ହୋଇଥିଲା ତାଙ୍କ ଆଖି ଦିଓଟି ଅତ୍ୟନ୍ତ ସୁନ୍ଦର ଥିଲା, ସତେ ଯେମିତି ନୀଳହ୍ରଦ ।

ମୁଁ ତାଙ୍କ ପ୍ରେମରେ ପଡ଼ିଗଲି । ଏ ହୀରାଭଳି ଶକ୍ତ ହୃଦୟଟା କେମିତି ବରଫ ଭଳି ତରଳି  ଗୋଟେ ଉଚ୍ଛ୍ୱସିତ ଜଳହ୍ରଦ ହୋଇଗଲା । ମୁଁ ଜାଣିପାରିଲି ନାହିଁ ।

ଏହାର ଦୁଇଦିନ ପରେ ତାଙ୍କ ସହ ମୋର ଅଚାନକ ଏକ ମାର୍କେଟରେ ଦେଖା ହେଲା । ସେ ଘର ପାଇଁ କିଛି ପରିବା କିଣୁଥିଲେ । ମୁଁ ସେଇ ରାସ୍ତା ଦେଇ ନିଜ ଗାଡ଼ିରେ ଯାଉଥିଲି । ଭିଡ଼ ପାଇଁ ଗାଡ଼ିର ଗତି ମନ୍ଥର ଥିଲା । ସେ ପରିବା ବ୍ୟାଗ୍ ଧରି ମୁହାଁଇବା ମାତ୍ରକେ ତାଙ୍କ ପାଖକୁ ଯାଇ ଗାଡ଼ିରେ ବସିବାକୁ ଅନୁରୋଧ କଲି । ସେ ବସିଲେ । ସେ ପର୍ଯ୍ୟନ୍ତ ମୁଁ ତାଙ୍କ ନାଁ ଜାଣି ନଥିଲି ।

ନାଁ ପଚାରିବାରୁ ସେ ଉତ୍ତର ଦେଲେ ଫଲଗୁ । ଜାଣିଲି ଇଏ ନଦୀର ନାଁ । ସତରେ ସେ ଫଲଗୁ ନଦୀ ପରି ପ୍ରେମମୟୀ ଥିଲେ । ଆମ ସାକ୍ଷାତ ଆମକୁ ଆକର୍ଷିତ କଲା । ମୋ ନୀରସ ଜୀବନ ଓ ତାଙ୍କର ଅନ୍ୟର ଦୟାରେ ବିତାଉଥିବା କରୁଣ ମୁହୂର୍ତ୍ତ ପରସ୍ପର ସହ ଯୋଡ଼ି ହୋଇଗଲା । ମୁଁ ସ୍ୱପ୍ନ ଦେଖିବାକୁ ଲାଗିଲି ଫଲ୍‌ଗୁଙ୍କୁ ନେଇ । ଅନୁଭବ କଲି ଏଇ ନାରୀଟିକୁ ଏତେ ବର୍ଷ ଅପେକ୍ଷା କରିଥିଲି ଓ ଏହାରି ପ୍ରେମରେ ମୋ ଜୀବନପୂର୍ଣ୍ଣ ହୋଇଯିବ । ଅପେକ୍ଷା କଲି ମୋ ମନ କଥା ତାଙ୍କୁ କହିବି ।

ଦୁଇଦିନ ପରେ ପୁଣି ପୂର୍ବୋକ୍ତ ରାସ୍ତାରେ ତାଙ୍କସହ ସାକ୍ଷାତ ହେଲା । ତାଙ୍କୁ ଛାଡ଼ିବା ବେଳେ ପଚାରିଲି - 'ଆପଣଙ୍କ ସହ କଥା ଥିଲା । କେବେ ସାକ୍ଷାତ ହେବ ?'

ସେ ସଲ୍ଲଜ ହସି କହିଲେ - ''ମୋ ଭଳି ତୁଚ୍ଛ ମଣିଷ ସହ କି କଥା ହେବେ ? କାଲି ପରିବାରର ଲୋକେ ଦିନକ ପାଇଁ ବିବାହ ଉତ୍ସବରେ ଯୋଗ ଦେବାକୁ ଯାଉଛନ୍ତି । ହୁଏତ କାଲି ସାକ୍ଷାତ ହୋଇପାରିବ ।'

ମୁଁ ସାକ୍ଷାତ ହେବାର ସମୟକୁ ଅପେକ୍ଷା କରୁଥିଲି । ସାରାରାତି ଅନିଦ୍ରା ରହିଲି ଗୋଟେ ଉଷ୍ମ ଆବେଗ ଓ ଭାବପ୍ରବଣତାରେ ବିଭୋର ହୋଇ । ସକାଳୁ ମୁଁ ତାଙ୍କୁ ଅପେକ୍ଷା କଲି ପୂର୍ବ ସ୍ଥାନରେ ଗୋଛାଏ ଗୋଲାପ ଧରି । ସେ ପହଞ୍ଚିବା ମାତ୍ରକେ ତାଙ୍କୁ ଗାଡ଼ିରେ ବସାଇ ମୁଁ ରହୁଥିବା ଘରକୁ ନେଇ ଆସିଲି ।

ଶୀତଦିନ ଥିଲା । ତାଙ୍କ ପାଇଁ ସୁନ୍ଦର ପୋଷାକ, ସ୍ୱେଟର ଓ ନୀଳରଂଗର

ସ୍କାର୍ଫଟିଏ ରଖିଥିଲି । ପିନ୍ଧିବାକୁ ଅନୁରୋଧ କଲି । ସେ ସଂକୋଚ ସହକାରେ ଅନୁରୋଧ ରକ୍ଷା କଲେ । ରୂପାସୂତାରେ ଫୁଲପକା ପୋଷାକ ପିନ୍ଧି ପରୀଟିଏ ପରି ଦିଶିଲେ । ତାଙ୍କୁ ମୋ ମନ କଥା କହିଲି - 'ଫଲ୍‌ଗୁ, ତୁମ ଜୀବନରେ ଯଦି କେହି ପୁରୁଷ ନଥାନ୍ତି, ତେବେ ମୁଁ ତୁମକୁ ବିବାହ କରିବାକୁ ଚାହେଁ ।'

ସେ ମୋତେ ଚାହିଁଲେ ଅବିଶ୍ୱାସଭରା ଦୃଷ୍ଟିରେ । କହିଲେ-'ମୋତେ ପରିହାସ କରନ୍ତୁ ନାହିଁ ।'

'ପରିହାସ ନୁହେଁ । ଇଏ ମୋ ପ୍ରେମ, ମୋ ହୃଦୟର କଥା । ତୁମେ ଅସ୍ୱୀକାର କର ନାହିଁ । ଈଶ୍ୱରଙ୍କ ନାଁରେ ଶପଥ କରି କହୁଛି ତୁମେ ହିଁ ମୋ ପତ୍ନୀ ହେବ ।' କହି ଗୋଟେ ସୁନ୍ଦର ହୀରାମୁଦି ବାହାର କଲି । ସେଥିରେ ଛୋଟ ଛୋଟ ହୀରାରେ ଫଲ୍‌ଗୁ ବୋଲି ଲେଖାଯାଇଥିଲା ।

ତାଙ୍କୁ ସେଇ ମୁଦିଟି ପିନ୍ଧାଇ ଦେଲି ଓ ନୀଳ ସ୍କାର୍ଫଟି ମଥାରେ ଢାଙ୍କି ଦେଇ କହିଲି 'ଏମିତି ମଥାରେ ଓଢ଼ଣା ଦେଇ ତୁମେ ମୋ ଘରକୁ ନବବଧୂ ହୋଇ ଆସିବ, ଫଲ୍‌ଗୁ ! ହେଲେ ତୁମେ ଆଜିଠାରୁ ମୋ ପତ୍ନୀ ।'

ମୋ କଥାରେ ସେ କାନ୍ଦି ପକାଇଲେ । ତାଙ୍କ ଲୁହ ପୋଛି ଦେଇ ସାନ୍ତ୍ୱନା ଦେଲି ଓ ଭାବପ୍ରବଣ ହୋଇ ଛାତିରେ ଜଡ଼େଇନେଲି । ଅନୁଭବ କଲି ପରିପୂର୍ଣ୍ଣ ହୋଇଉଠୁଛି ମୋ ଆତ୍ମା ଫଲ୍‌ଗୁଙ୍କର ସ୍ପର୍ଶରେ ।

ଆମ ହୀରା ମେଳା ସରିବାର ସପ୍ତାହରେ ମୁଁ ଯୋଜନା କଲି ଶେଷ ଦିନ ସର୍ବ-ସମକ୍ଷରେ ମୁଁ ଫଲ୍‌ଗୁଙ୍କୁ ମୋ ପତ୍ନୀ ଭାବେ ଘୋଷଣା କରି ବିବାହ କରିବି ଓ ସମସ୍ତଙ୍କୁ ଭୋଜିରେ ଆପ୍ୟାୟିତ କରି ମୋ ସହ ନେଇଯିବି । ଏହା ବୋଧେ ବିଧି ନିର୍ଦ୍ଦିଷ୍ଟ ନଥିଲା । ମେଳା ସରିବାର ଚାରି ଦିନ ପୂର୍ବରୁ ଦିନେ ସକାଳୁ ଫୋନ୍ ପାଇଲି ଯେ ହୀରାଖଣିର ଗୋଟେ କୋଣ ଭାଂଗିପଡ଼ିବାରୁ ପାଞ୍ଚ ଜଣ ଶ୍ରମିକଙ୍କର ଶୋଚନୀୟ ମୃତ୍ୟୁ ଘଟିଛି । ସେମାନଙ୍କ ପରିବାର ମୋ ନାଁରେ କେଶ୍ କରିଛନ୍ତି । ମୋତେ ଶୀଘ୍ର ଯିବାକୁ ପଡ଼ିବ । ଏ ଘଟଣାରେ ଏତେ ବ୍ୟସ୍ତ ଓ ବ୍ୟଥିତ ହୋଇପଡ଼ିଲି ଯେ ଫଲ୍‌ଗୁଙ୍କୁ ସାକ୍ଷାତ କରିବାକୁ ଇଚ୍ଛା ଥାଇ ବି ସମୟ ପାଇଲିନାହିଁ ।

ଠିକ୍ କଲି ସେଠିକାର କାମ ସାରି ଫଲ୍‌ଗୁଙ୍କୁ ଆସି ନେଇଯିବି । ବିଧିର ବିଧାନ ଭିନ୍ନ ଥିଲା । ଶ୍ରମିକଙ୍କ ମୃତ୍ୟୁ ପାଇଁ ମୋତେ ଦୋଷୀ କରି ଦୁଇବର୍ଷ କାରାଦଣ୍ଡ ହୋଇଗଲା । ଫଲ୍‌ଗୁଙ୍କ ସହିତ ଯେତେ ଚେଷ୍ଟା କଲେ ବି ଯୋଗାଯୋଗ ରକ୍ଷା କରିପାରିଲିନି । ଜେଲ୍‌ରୁ ଫେରି ଏଠିକୁ ଆସିଲି । ତାଙ୍କ ଆଶ୍ରୟଦାତ୍ରୀଙ୍କ ଘରେ ପହଞ୍ଚି ଶୁଣିଲି ଯେ ସେ କୁଆଡ଼େ ଚାଲିଯାଇଛନ୍ତି । ଯିବାବେଳେ ଅନ୍ତଃସତ୍ତ୍ୱା ଥିଲେ । ମୋ ଯିବା ପରେ ଏ ଘଟଣା ଘଟିଥିଲା ।

ସେଇଦିନ ଠାରୁ ଆଜି ପର୍ଯ୍ୟନ୍ତ ମୁଁ ନିଜକୁ ଦୋଷୀ ମନେ କରୁଛି । ଫଲ୍‌ଗୁଙ୍କ

ସନ୍ତାନର ପିତା ନିଶ୍ଚିତ ଭାବେ ମୁଁ । ପାଗଳଙ୍କ ପରି ଖୋଜିଛି । ପେପରରେ ତାଙ୍କ ଫଟୋ ଛପାଇ ମୋ ପାଖକୁ ଫେରିବାକୁ ଅନୁରୋଧ କରିଛି । କୁଆଡ଼େ ସେ ହଜିଗଲେ କେଜାଣି !'

ମିଃ. ଜନ୍‌ସନ୍ ପିଲାଙ୍କ ପରି କାନ୍ଦି ପକାଇଲେ । ତାଙ୍କ କଥାରେ ମୋତେ ବି ଭାରି କାନ୍ଦ ଲାଗିଲା । ନିଜର କୋହ ଚାପି ନେଇ କିଛି ସମୟ ପରେ ପ୍ରଶ୍ନ କଲି - 'ଏତେ ଚେଷ୍ଟା ବ୍ୟର୍ଥ ହୋଇଗଲା ? ତାଙ୍କ ଫଟୋ ରଖିଛନ୍ତି ?'

'ନା'-ହେଲେ ମୋ ମନରେ ସେଇକାଳୁ ଆଙ୍କି ହୋଇ ରହିଛନ୍ତି ।' ସେ କାନ୍ଦୁରା ସ୍ୱରରେ ଉତ୍ତର ଦେଲେ । ମୋ ମୁହଁକୁ ଗଭୀର ଦୃଷ୍ଟିରେ ଚାହିଁ କହିଲେ -'ତୁମକୁ ଚାହିଁ ଦେଲେ ଫଲ୍‌ଗୁ ଫେରିବା ପରି ମୋର ଅନେକ ଥର ଭ୍ରମ ହୋଇଛି ।'

ମୁଁ ସଚେତନ ହୋଇ ଉଠିଲି । ତାଙ୍କୁ ଏତେଟା ଭାବପ୍ରବଣ କରିବା ଅନୁଚିତ୍ । ଘଣ୍ଟାକୁ ଚାହିଁଲି । ରାତ୍ରିଭୋଜନର ସମୟ ହୋଇଗଲାଣି । ତାଙ୍କର ସମସ୍ତ କାମ ସାରି ଫେରିଲି ।

କ୍ରମଶଃ ମୋ ମନ ଉଦାସ, ବିଷଣ୍ଣ ହୋଇଉଠୁଥିଲା ତାଙ୍କ ଡାଏରୀ ଲେଖିବା ବେଳେ । ଭାବୁଥିଲି ମଣିଷର ଇଚ୍ଛା ଅପୂର୍ଣ୍ଣ ରହିବା ବୋଧେ ବିଧିନିର୍ଦ୍ଦିଷ୍ଟ । ମିଃ. ଜନ୍‌ସନ୍‌ଙ୍କ ପ୍ରେମକାହାଣୀକୁ ଅସଂପୂର୍ଣ୍ଣ ରଖି ଈଶ୍ୱର ଅନ୍ୟାୟ କରିଛନ୍ତି । କୁଆଡ଼େ ଗଲେ ଫଲ୍‌ଗୁ ! ସେ ନିରୀହାଟି କ'ଣ କରିଥିବେ ଏତେ ବଡ଼ ନିଷ୍ଠୁର ସଂସାରରେ ? ଲୋକେ କେତେ ଅପମାନ ଦେଇଥିବେ । ଯଦି ସନ୍ତାନ ଜନ୍ମ ହୋଇଥିବ ତେବେ ସଂସାରରେ କି ପରିଚୟ ନେଇ ବଂଚିଥିବ ! ଲୋକମାନେ ତାକୁ ବଂଚିବାକୁ ଦେଉଥିବେ ତ ?? ଦୀର୍ଘଶ୍ୱାସରେ ମୋ ଛାତି ଥରି ଉଠିଲା ।

ଇତି ମଧ୍ୟରେ ଡାଏରୀ ଲେଖା ସରିଯାଇଥିଲା । ସରି ଆସୁଥିଲା ମିଃ. ଜିନ୍‌ସନ୍‌ଙ୍କ ଜୀବନ ସଳିତାର ଅବଶିଷ୍ଟ ଶିଖା ।

ସେଦିନ ପ୍ରଚଣ୍ଡ ଶୀତ ପଡ଼ିଥାଏ । ସଂଧ୍ୟାରୁ ଶୋଇପଡ଼ିଲେ ମିଃ. ଜନ୍‌ସନ୍ ।

ମଧ୍ୟାହ୍ନରେ ନାକବାଟେ ସାମାନ୍ୟ ରକ୍ତସ୍ରାବ ହୋଇଥିଲା । ଅପରାହ୍ନରେ ମୋ ଯିବା ସମୟରେ ତାଙ୍କ ରୁମ୍‌ରୁ ଫାଦର ଓ ଓକିଲ ମହାଶୟ ବାହାରୁ ଥିବାର ଦେଖିଲି । ଭାବିଲି ସମ୍ଭବତଃ ତାଙ୍କୁ ଭେଟିବାକୁ ଆସିଥିଲେ ।

ମିଃ.ଜନ୍‌ସନ୍ ଶୀଘ୍ର ଖାଇପିଇ ଓ ଇଂଜେକ୍ସନ୍ ନେଇ ରାତି ଆଠଟା ବେଳକୁ ଶୋଇପଡ଼ିବାରୁ ମୁଁ ମଧ୍ୟ ଫେରି ଆସିଲି । ଦେଖିଲି ଫାଦର ଓ ଓକିଲ ମହାଶୟ ମୋ ଫ୍ଲାଟ୍ ସାମ୍ନାରେ ଠିଆ ହୋଇଛନ୍ତି ।

'ଆର୍ଯ୍ୟା ! ଓକିଲ ମହାଶୟ ତୁମକୁ ଗୋଟେ ଖବର ଶୁଣାଇବେ ।' ଯଥାସମ୍ଭବ ସ୍ୱର ଶାନ୍ତ କରି ଫାଦର କହିଲେ ।

କବାଟ ଖୋଲି ତାଙ୍କୁ ବସାଇଲି । ଓକିଲ ମହାଶୟ ଗୋଟେ କାଗଜ ମୋ ହାତକୁ

ବଢ଼ାଇ ଦେଇ କହିଲେ - 'ମି଼. ଜନ୍‌ସନ୍ ତୁମକୁ ଦେବାକୁ କହିଛନ୍ତି । ପଢ଼ିଲେ ଜାଣିବ ।'

ମୋତେ ପ୍ରଶ୍ନ କରିବାର ସୁଯୋଗ ନ ଦେଇ ଫାଦର ଉଠିପଡ଼ିଲେ । ପକେଟ୍‌ରୁ ଗୋଟେ ପ୍ୟାକେଟ୍ ମୋ ହାତରେ ଧରାଇଦେଲେ । କହିଲେ- 'ଏଇଟି ତୁମର ପରିଚୟ । ତୁମ ସହ ଏଇଟିକୁ ପାଇଥିଲି । ଅନେକ ଦିନରୁ ଏହାକୁ ଯକ୍ଷ ପରି ସାଇତି ରଖିଥିଲି । ଗୋଟେ ବଡ଼ ଦାୟିତ୍ୱରୁ ଆଜି ମୁକ୍ତ ହେଲି । ଈଶ୍ୱର ତୁମକୁ ସୁଖୀ ରଖନ୍ତୁ ।'

ସେମାନେ ବିଦାୟ ନେଇଗଲେ । ମୁଁ କାଗଜ ପଢ଼ିଲି । ତାହା ଥିଲା ମି଼. ଜନ୍‌ସନ୍‌ଙ୍କ ଉଇଲ୍ । ସମସ୍ତ ସଂପତ୍ତି, ହୀରାଖଣି ଓ ବ୍ୟବସାୟର ଉତ୍ତରାଧିକାରୀ ଭାବେ ମୋତେ ଘୋଷଣା କରିଥିଲେ । ସେ ମୋର ପିତା ଭାବେ ପରିଚିତ ହେବାକୁ ଶେଷଇଚ୍ଛା ପ୍ରକାଶ କରିଛନ୍ତି । ଉଇଲ୍‌ଟିକୁ ପଢ଼ି ଖୁସି ହେବି କି କାନ୍ଦିବି ବୁଝିପାରିଲିନି ।

ଟେବୁଲ ଉପରେ ଉଇଲ୍‌ଟିକୁ ରଖିଦେଇ ଫାଦର ଦେଇଥିବା ପ୍ୟାକେଟ୍‌ଟିକୁ ଖୋଲିଲି । ଅନେକ ବର୍ଷ ତଳର ଖବରକାଗଜରେ ପ୍ୟାକେଟ୍ ହୋଇଛି । ଦେଖିଲି ନୀଳରଂଗର ସ୍କାର୍ଫଟିଏ । ଟେକିଦେବା ମାତ୍ରକେ ଠନ୍ କରି କ'ଣ ଗୋଟାଏ ଚଟାଣରେ ଛିଟିକି ପଡ଼ିଲା । ଟେବୁଲ୍ କନ୍ଦିରୁ ଗୋଟାଇ ଆଣି ଦେଖିଲି ମୁଦିଟିଏ । ଓଲଟାଇ ଦେଲି । ଝଲସିଗଲା ମୋ ଆଖି । ଝଲମଲ୍ କରି ଉଠୁଥିଲା ମୁଦିର କୁନିକୁନି ପଥର । କିଛି ଲେଖାଥିବା ଜଣାପଡ଼ିଲା । ପଢ଼ିଲି ଲେଖାଥିଲା - 'ଫଲ୍‌ଗୁ ।'

ନୀଳସ୍କାର୍ଫ, ହୀରାମୁଦି, ଫଲ୍‌ଗୁ, ମି଼.ଜନ୍‌ସନ୍ ମୁଁ ଓ ଉଇଲ୍ । କ୍ଷଣକ ମଧ୍ୟରେ ମୋ ମୁଣ୍ଡଟା ଗୋଳମାଳିଆ ହୋଇଗଲା । ଭିନ୍ନଭିନ୍ନ କାହାଣୀ ଓ ଚରିତ୍ର ସବୁ ଗୋଟାଏ ତ୍ରିଭୂଜରେ ପରିଣତ ହୋଇଗଲା । ମୋ ମନ ଭିତରେ । ଦୁଇ ବାହୁରେ ମି. ଜନ୍‌ସନ୍ ଓ ଫଲ୍‌ଗୁ । ସଂଯୋଗ ସ୍ଥଳରେ ମୁଁ । ମନେହେଲା ମୁଁ ଗୋଟେ ନଦୀ ପରି ବହିଯାଉଛି । ଧାଇଁ ଯାଉଛି ଆଗକୁ ଆଗକୁ । ସବୁଜ ଦୁଇ ପାର୍ଶ୍ୱକୁ ହରେଇବାର ଭୟ ମୋତେ ଗ୍ରାସିଯାଉଛି । ମି଼. ଜନ୍‌ସନ୍ ଓ ଫଲ୍‌ଗୁ ଦୁଇପାର୍ଶ୍ୱର ଶୁଷ୍କ ଅବବାହିକାରେ ପରିଣତ ହୋଇ ବହୁ ପଛରେ ରହିଯାଉଛନ୍ତି । ଦୁଃଖରେ ଦୁଇହାତରେ ମୁହଁ ଢ଼ାଙ୍କି ଦେଲି । ଭାବିଲି ତା'ମାନେ ମୁଁ କ'ଣ...

କବାଟ ଖୋଲି ମୁଁ ଦୌଡ଼ିଲି ପବନ ବେଗରେ । ବିଜୁଳି ପରି ପଶିଗଲି ମି଼. ଜନ୍‌ସନ୍‌ଙ୍କ ରୁମ୍‌ରେ । ତାଙ୍କ ନିଦ୍ରିତ ଦେହକୁ ଜାବୁଡ଼ି ଧରି ଗୋଟେ ଆବେଗରେ ପ୍ରଚଣ୍ଡ ସ୍ନେହ ଓ କୋହରେ ଚିତ୍କାର କଲି - 'ବାପା ।'

# ମୁହଁ

ହଠାତ୍ ଦିବାକରକୁ ପଚାରି ଦେଲି - ''ମର୍ଣ୍ଣିଂ ୱାକ୍‌ରେ ତୁମେ ଯାଅ ?

ଚାଲୁଚାଲୁ ସେ ଠିଆ ହୋଇଯାଇ ବିସ୍ମିତ ଦୃଷ୍ଟିରେ ମୋତେ ଚାହିଁଲା । ଧୀରଗଳାରେ କ୍ଷଣଟିଏ ପରେ ପ୍ରଶ୍ନ କଲା ''ମର୍ଣ୍ଣିଂୱାର୍କ କ'ଣ?''

ସେ ମୋ ପ୍ରଶ୍ନରେ ଯେମିତି ବିସ୍ମିତ ହୋଇଥିଲା, ମୁଁ ଅନୁରୂପ ତା' ପ୍ରଶ୍ନରେ ହତଚକିତ ହୋଇଉଠିଲି । ମନର ଭାବ ଚାପି ଦେଇ କହିଲି- ''ଏଇ ଖୁବ୍ ସକାଳୁ ଉଠି ବୁଲିଯିବା ।''

ତା' ମୁହଁର ବିସ୍ମୟରେଖା ସବୁ ଅପ୍ରତିଭ ଓ କ୍ରମଶଃ ହସନ୍ତ ହେବାକୁ ଲାଗିଲା । ଆଙ୍ଗୁଳିରେ ମୁଣ୍ଡ କୁଣ୍ଡାଇ ଉତ୍ତରଦେଲା -''ଏଠି ସେକଥା ଆମ ପାଇଁ ନୂଆ ।''

''ଠିକ୍ ଅଛି, ମୁଁ କାଲି ଠାରୁ ଏଇ ପାହାଡ଼ ତଳ ରାସ୍ତାରେ କିଛି ସମୟ ବୁଲିଯିବି । ଯିବକି ମୋ ସଙ୍ଗେ ?'' ପଚାରିଲି ।

ସେ ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ଏଠିକି ବଦଳି ହେବାର ଦୁଇମାସ ହେଲାଣି । ଘରେ ବାପା, ମା ଓ ଷ୍ଟାଣ୍ଡାର୍ଡ଼ ଟୁରେ ପଢୁଥିବା ପୁଅ ଓଁକାର ସହ ସୁନୀତି ଶାଶୁ ଶ୍ୱଶୁରଙ୍କୁ ଛାଡ଼ି ଏ ପାହାଡ଼ିଆ ଅଞ୍ଚଳରେ ମୋ ପାଖରେ ରହିବାକୁ ଚାହାନ୍ତି ନାହିଁ । ରୋଷେଇ, ଘରଦ୍ୱାର, ଲୁଗାପଟା ସଫା, ପ୍ରେସ୍ ଇତ୍ୟାଦି କାମ ପାଇଁ ଅଫିସ୍ ବଡ଼ବାବୁ ଦିବାକରକୁ ହିଁ ଠିକ୍ କରି ଦେଇଥିଲେ । ତାକୁ ଅତି ବେଶିରେ ସତର ଅଠର ହେବ । ଖୁବ୍ କାମିକା ଓ ଶାନ୍ତ ପିଲାଟିଏ ।

ସେ ସିନା ସମ୍ମତି ଜଣାଇଲା ମର୍ଣ୍ଣିଂୱାକ୍‌ରେ ଯିବାପାଇଁ, ହେଲେ ପ୍ରାୟତଃ ସମ୍ଭବ ନଥିଲା ସେ ସକାଳ ଛ'ଟାରେ ପହଞ୍ଚି ଦଶଟାଯାଏ କାମ କରେ । ମୁଁ ଅଫିସ୍ ବାହାରିଲେ ସେ ତା' ଘରକୁ ଯାଏ ଓ ପୁଣି ପାଞ୍ଚଟାରୁ ନ'ଟା ଯାଏ ରହେ । ସେ ମୋ ସହିତ ମର୍ଣ୍ଣିୱାକ୍‌ରେ ଗଲେ କାମ ଠିକ୍ ସମୟରେ ଆଦୌ ହୋଇପାରିବ ନାହିଁ ।

ଦିବାକରକୁ ନନେଇ ତା' ପରଦିନ ଭୋର୍‌ରୁ ମୁଁ ମର୍ଣ୍ଣିଂୱାକ୍‌ରେ ବାହାରିଗଲି । ସାମ୍ନାରେ ଥିଲା ପତଳା ବୃକ୍ଷଲତା ପରିବେଷ୍ଟିତ ହାତ ଧରାଧରି ହୋଇଠିଆ ହୋଇଥିବା ତିନୋଟି ପାହାଡ଼ । ସେମାନଙ୍କ ସାମ୍ନାରେ ଆଉ ଦୁଇଟି ଲଣ୍ଡା ପାହାଡ଼ । ଠିକ୍ କଲି ପାହାଡ଼ ଆରପଟକୁ ଯାଇ ବୃତ୍ତାକାରରେ ଫେରିବି ।

ପୂର୍ବାକାଶ ନୀଳାଭ ଦିଶୁଥାଏ । ଡେଙ୍ଗା ଡେଙ୍ଗା ଗଛ ସବୁ ଯେମିତି ପାଉଁଶିଆ ଚାଦର ଘୋଡ଼ାଇ ହୋଇ ପରମ ଶାନ୍ତିରେ ଶୋଇଯାଇଛନ୍ତି । ପାଖ ବସ୍ତିରୁ ଶୁଣାଯାଉଥାଏ କୁକୁଡ଼ାର ପ୍ରଥମ ଡ଼ାକ । ଥଣ୍ଡା ପବନରେ ଚାଲିବାକୁ ଲାଗିଲି । କ୍ରମଶଃ ପାର ହେଲି ସାମ୍ନାର ପାହାଡ଼କୁ ଓ ଅଦୃଶ୍ୟ ହୋଇଗଲେ ପଛରେ ଛାଡ଼ି ଆସିଥିବା ଘରଦ୍ୱାର ଇତ୍ୟାଦି ।

କେବଳ ଦେଖାଗଲା ଖୁବ୍ ତଳେ ଥିବା ରାସ୍ତାର କିଛି ଅଂଶ, ବିଲବାଡ଼ି ଓ ଦୂର ଜଙ୍ଗଲଭରା ବଡ଼ ପାହାଡ଼ ।

ମୋ ପାଦଶବ୍ଦରେ ଛୋଟଛୋଟ ବୁଦାମୂଳରେ ବସା ବାନ୍ଧିଥିବା ଚଢ଼େଇମାନେ ଅଳସ ଭାଙ୍ଗି ଦୂରକୁ ଉଡ଼ିଗଲେ । ସଦ୍ୟ ଫୁଟନ୍ତା କୁରେଇ ଫୁଲର ମହକ ଚତୁର୍ଦ୍ଦିଗକୁ ସୁରଭିତ କରୁଥାଏ । ତଥାପି ସୂର୍ଯ୍ୟୋଦୟ ହୋଇନଥାଏ । ସାମ୍ନାରେ ଦିଶିଲା ସରୁ ପାଦଚଲା ରାସ୍ତା । ଆରମ୍ଭ ହେଲା ଶାଳଗଛର ସୁନ୍ଦର ଜଙ୍ଗଲ । ଝରାପତ୍ର ଧୂସରିଆ ଗାଲିଚାର ଭ୍ରମ ସୃଷ୍ଟି କରୁଥାଏ । ଶାଳଗଛରୁ ଅନବରତ ଝରୁଥାଏ ଈଷଦ୍ ସବୁଜ ଓ ହଳଦିଆ ମିଶ୍ରିତ ରଙ୍ଗର କୁନିକୁନି ପାଖୁଡ଼ା । ଝରାପତ୍ର ଓ ସରୁ ରାସ୍ତା ଝରାଫୁଲର ଆସ୍ତରଣରେ ଚମତ୍କାର ଦିଶୁଥାଏ ।

ବିସ୍ମରି ଗଲି ବାହାର ପୃଥିବୀକୁ, ଦୁଃଖଶୋକ, ଜଞ୍ଜାଳ, ଅବସାଦ ଓ ନିଜସ୍ୱ ସଂସାରକୁ । ସତେ ଯେମିତି ଗୌତମବୁଦ୍ଧଙ୍କ ପରି ସକଳ ମୋହ ତ୍ୟାଗ କରି ନୂତନ ପୃଥିବୀରେ ପଦାର୍ପଣ କରୁଛି । ହଠାତ୍ ବାଁ ପଟେ ଦିଶିଲା ଖପରଲି ଘର ବେଷ୍ଟିତ ଛୋଟ ପଲ୍ଲୀଟିଏ । ଘରଗୁଡ଼ିକ ବିକ୍ଷିପ୍ତ ଭାବେ ଅବସ୍ଥିତ । ସିଲହଟ୍ ପରି ଦୂରୁ ଗାଁଟି ଦିଶୁଥାଏ । ହେଲେ କୌଣସି ଲୋକ ଦିଶୁ ନଥାନ୍ତି । ଅଖଣ୍ଡ ନୀରବତା ମଧ୍ୟରେ କେବଳ ନିଜ ପାଦଶବ୍ଦ ପ୍ରତିଧ୍ୱନିତ ହେଉଥାଏ । କୋଡ଼ିଏ ପଚିଶ ମିନିଟ୍ ଚାଲିବା ସତ୍ତ୍ୱେ ସରୁ ନ ଥାଏ ପାଦଚଲା ।

ଦିବାକର କହିଥିଲା - ''ଗୋଟେ ସରୁ ପାଦଚଲା ରାସ୍ତା ଏ ପାହାଡ଼ମାନଙ୍କୁ ଘେରି ରହିଛି । ସେଇ ରାସ୍ତାରେ ଚାଲିଲେ ମୂଳରେ ଆସି ପହଞ୍ଚି ହେବ ।''

ପ୍ରଥମ ଥର ପାଇଁ ଆସିଥିବା ସତ୍ତ୍ୱେ କୌଣସି ପ୍ରକାରର ବିବ୍ରତ ନ ହୋଇ ଚାଲିବାକୁ ଲାଗିଲି । ରାସ୍ତାଟି କ୍ରମଶଃ ଉର୍ଦ୍ଧ୍ୱାଭିମୁଖୀ ହେଲା । ଝରା ଶାଳଫୁଲର ବହଳ ଆସ୍ତରଣ ଉପରେ ଚାଲୁଚାଲୁ ଅପରୂପ ଶାନ୍ତ ପ୍ରକୃତିକୁ ଉପଭୋଗ କରିବାକ ଲାଗିଲି । ରାସ୍ତା ଏଥରକ ନିମ୍ନକୁ ଲମ୍ବିଗଲା ଓ ତଳକୁ ଓହ୍ଲାଇଲି । ଦେଖିଲି ମାଟିବନ୍ଧଟିଏ ତିଆରି ହୋଇଛି ଓ କଡ଼େ କଡ଼େ ଲମ୍ବି ଯାଇଛି ପାହାଡ଼ିଆ ଜଳସ୍ରୋତକୁ ଏକାଠି କରିବା ପାଇଁ କେନାଲଟିଏ । ସେଇଠାରୁ ଅଧକିଲୋମିଟର ଦୂରରେ ସେଇ ପଲ୍ଲୀଟି ସ୍ପଷ୍ଟ ଦିଶୁଛି ।

ମଥା ଟେକି ଉପରକୁ ଚାହିଁଲି । ସୂର୍ଯ୍ୟୋଦୟର ପ୍ରଥମ କିରଣରେଖା ଏପର୍ଯ୍ୟନ୍ତ ସ୍ପର୍ଶ କରିନାହିଁ ଉଚ୍ଚ ଉଚ୍ଚ ଶାଳ, ଶାଗୁଆନ ଗଛ ମାନଙ୍କୁ । ତଳକୁ ଦୃଷ୍ଟି କରି ଆଗକୁ ପାଦ ବଢ଼ାଇଲି । ଅଚାନକ ଆଖିରେ ପଡ଼ିଲା ସେଇ ମାଟି ବନ୍ଧ ନିକଟରେ ପଥର ଉପରେ ବସିଛନ୍ତି ତିନୋଟି ମଣିଷ । ଆଦୌ ଲୋକବାକ ଦିଶୁ ନଥିବା ସ୍ଥାନରେ ଏଇ ତିନୋଟି ମଣିଷଙ୍କୁ ଦେଖି କୌତୁହଳୀ ହୋଇ ଉଠି ଚିନ୍ତାକଲି ସେମାନଙ୍କ ପାଖକୁ ଯାଇ ସେ ପଲ୍ଲୀର ନାଁ ବୁଝିବି । ପାଦଚଲା ରାସ୍ତାରୁ ଦୂରେଇ ଆସି ସେମାନଙ୍କ ପାଖକୁ ଗଲି । ଶୁଖିଲା ପତ୍ର ପାଦତଳେ ମସ୍‌ମସ୍ ଶବ୍ଦ କରୁଥା'ନ୍ତି ।

ପାଖରେ ପହଞ୍ଚି ଦେଖିଲି ସେମାନେ ବାର୍ଦ୍ଧକ୍ୟରେ ଉପନୀତ । ପରସ୍ପର ସାମ୍ନାସାମ୍ନି ହୋଇ ଚୁଲି ଝିଙ୍କା ପରି ବସିଛନ୍ତି ତିନୋଟି ବଡ଼ ବଡ଼ ପଥର ଉପରେ । ଦରମଇଳା ଧୋତିରେ ଦେହ ଢାଙ୍କିଛନ୍ତି ।

"ମଉସା, ନମସ୍କାର । ଏଇବାଟେ ଗଲାବେଳେ ଆପଣମାନଙ୍କୁ ଦେଖି ଭାବିଲି , ପଲ୍ଲୀର ନାଁ କ'ଣ ପଚାରି ବୁଝିବି । ଆପଣମାନଙ୍କୁ କଷ୍ଟ ଦେଲିନି ତ ?" ପ୍ରଶ୍ନ କଲି ।

ତିନିବୃଦ୍ଧ ଏକାସାଙ୍ଗରେ ମୋତେ ଚାହିଁଲେ । ମୁହଁ ସାରା ବୟସର ରେଖା, କେଶ ଅଧା ଝୋଟ । ଆଖି ପାଣିଚିଆ ଦିଶୁଥିଲା । ବୟୋଜ୍ୟେଷ୍ଠ ବୃଦ୍ଧ ଉତ୍ତର ଦେଲେ- "କଷ୍ଟ କ'ଣ ବାବୁ ! ଏ ଗାଁ ନାଁ 'କୁନ୍ତୀପରା' । ତୁମେ କୁଆଡ଼େ ଯିବ ?"

"ମୁଁ ଏ ପାହାଡ଼ର ଆରପଟେ ରହେ । ଦୁଇମାସ ହେବ ଏଠିକୁ ବଦଳି ହୋଇ ଆସିଛି ।" ଉତ୍ତର ଦେଲି ।

ସେମାନେ ମୋତେ ଭଲ କରି ଚାହିଁଲେ । "ମଉସା, ଆପଣମାନେ ଗପସପ କରନ୍ତୁ । ମୁଁ ଆସୁଛି ।" କହି ଘଣ୍ଟାକୁ ଚାହିଁଲି । ଆଜି ଶୀଘ୍ର ଅଫିସ୍ ଯାଇ ଗୋଟେ ପ୍ରୋଜେକ୍ଟ କାମରେ ମିଟିଂ କରିବାକୁ ହେବ ।

ସେମାନଙ୍କ ଠାରୁ ବିଦାୟ ନେଇ ପୂର୍ବ ରାସ୍ତାରେ ଆସି ଘରେ ପହଞ୍ଚି ଗଲି । ଦେଖିଲି ଦିବାକର କାମ ସାରିଲାଣି । ମୋତେ ଦେଖି ପ୍ରଶ୍ନ କଲା - "ଆପଣଙ୍କର କିଛି ଅସୁବିଧା ହୋଇନି ତ ?"

"ନାଁ"- ସଂକ୍ଷେପରେ କହି ଯୋତା ଓହ୍ଲାଇ ମୁହଁ ହାତ ପରିଷ୍କାର କରି ମିଟିଂ ଫାଇଲ ଖୋଲିଲି । ଅନ୍ୟ ଦିନର ସକାଳ ଅପେକ୍ଷା ଏ ସକାଳ ବେଶ୍ ଚମତ୍କାର ମନେ ହେଲା ।

ତା' ପରଦିନ ଯଥା ସମୟରେ ପୁଣି ମର୍ଣ୍ଣିଂୱାକ୍‌ରେ ବାହାରିଲି । ଝରା ଶାଳଫୁଲର ବାସ୍ନାରେ ମହକି ଯାଉଥିବା ଥଣ୍ଡା ପବନରେ ସେଇ ସରୁ ପାଦଚଲା ରାସ୍ତାରେ ଚାଲିଲି । ଶୁଣାଯାଉଥିଲା ଦୂର ଆମ୍ବ ବଗିଚାରୁ ଗୀତ ଗାଉଥିବା କୋଇଲିର ମିଠା ସ୍ୱର । ଛାତି ଭର୍ତ୍ତି ଲମ୍ୱା ପ୍ରଶ୍ୱାସଟେ ନେଲି । ପ୍ରଶାନ୍ତିରେ ସାରା ମନ ହୃଦୟ, ଆତ୍ମା ପରିପୂର୍ଣ୍ଣ ହୋଇ ଉଠିଲା । ସେଇ ଗଡ଼ାଣିଆ ରାସ୍ତାରେ ତଳକୁ ଓହ୍ଲାଇବା ମାତ୍ରକେ ଦେଖିବାକୁ ପାଇଲି ପୂର୍ବୋକ୍ତ ତିନି ବୃଦ୍ଧଙ୍କୁ । ପୂର୍ବପରି ବସିଥିଲେ ।

ପାଖକୁ ଯାଇ ଶୁଭ ସକାଳ ଜଣାଇ ପଚାରିଲି- "ମଉସା, ଆପଣମାନେ ବୋଧେ ମର୍ଣ୍ଣିଂୱାକ୍‌ରେ କ୍ଳାନ୍ତ ହୋଇ ଏଠି ବସିଛନ୍ତି ?"

"ତୁମେ ବସିବକି ବାବୁ ?" ସେଇ ବୟୋଜ୍ୟେଷ୍ଠ ବୃଦ୍ଧ ପ୍ରଶ୍ନ କଲେ ଖୁବ୍ ଆଗ୍ରହରେ ।

"ଠିକ୍ ଅଛି ।" କହି ଝରାପତ୍ର ଉପରେ ଦୁଇଗୋଡ଼ ଜାକିଜୁକି ବସିପଡ଼ିଲି । ବସିବା ମାତ୍ରକେ ଆରାମ ଲାଗିଲା ।

"ଆପଣମାନେ କ'ଣ ଏଇ କୁନ୍ତୀପରାର ?" ସେମାନଙ୍କୁ ଚାହିଁ ପ୍ରଶ୍ନ କଲି ।

"ହଁ-ବାବୁ ।" ଏକାସ୍ୱରରେ ଉତ୍ତର ଦେଲେ ।

"ଆପଣମାନେ ଆରାମରେ ବସି କଥା ହେଉଥିଲେ । ମୋ ଆସିବାରୁ କଥା ବନ୍ଦ ହେଲା ନା ମଉସା ?" ସଙ୍କୁଚିତ ଭାବେ ପଚାରିଲି ।

"ନାଁ - କଥା ବନ୍ଦ ହୋଇନାହିଁ । ତା'ପରେ ଏ ବୟସରେ କ'ଣ ବା କଥା ହେବୁ

ଯେ ? ସେଇ ଘର କଥା ତ । ଏବେ ଶୁକ୍ରୁ ତା' କଥା କହୁଥିଲା ।'' ବୟୋଜ୍ୟେଷ୍ଠ ବୃଦ୍ଧ କହିଲେ ।

''କେଉଁ ବା ନୂଆ କଥା ଭାଇ । ଜାଣ ବାବୁ, ମୋତେ ମାତ୍ର ଆଠ ବର୍ଷ ତଳେ ମୋ ବାପା ମା' ମରିଗଲେ । ଯାହା ସାମାନ୍ୟ ଜମିବାଡ଼ି ଥିଲା, ତାହା ମୋ କାକା ଚକ୍ରାନ୍ତ କରି ନେଇଗଲେ । ଗାଁ ସାରାର ଗୋରୁଗାଈ ଜମି ପାଳି କରି ସମସ୍ତଙ୍କ ଘରେ ଖାଇ ବଡ଼ ହେଲି । ତା'ପରେ ପର ଜମି ଚାଷ କରି କିଛି ପଇସା ହାତରେ ରଖି ସରକାରଙ୍କ ଠାରୁ ଖଣ୍ଡେ ଜମି ପାଇବା ପରେ ଘର ଖଣ୍ଡେ କଲି । ବାହା ହେଲି ଆରପଟ ବଡ଼ପାହାଡ଼ ତଳ ଗାଁର ଦଶମୀକୁ । ସେ ମୋ ଘରର ଲକ୍ଷ୍ମୀ ଥିଲା । ସେ ଆସିବା ପରେ ଘର ଭରିଗଲା । ହଳବଳଦ, ଗାଈଗୋରୁ, ଜମିବାଡ଼ି, ଧାନଚାଉଳରେ ଅଭାବ ରହିଲା ନାହିଁ । ଦୁଇପୁଅ ଦୁଇ ଝିଅ ମୋର । ସମସ୍ତଙ୍କୁ ଭଲ ଘରେ ବାହା କରିଦେଲି ।

ଦିନେ ହଇଜାରେ ଆମ ଗାଁରୁ ଅଧେ ଲୋକଙ୍କ ସହ ବୁଢ଼ୀଟା ମୋର ମରିଗଲା । ଲକ୍ଷ୍ମୀ ଯେମିତି ତା' ସାଙ୍ଗରେ ଘର ଛାଡ଼ିବାକୁ ବସିଲେ । କିଛିଦିନ ପରେ ମଡ଼କରେ ଅଧେ ଗୋରୁଗାଈ ଚାଲିଗଲେ । ପୁଅ ଦି'ଟା ଅଳସୁଆ ପ୍ରକୃତି ଧରିଲେ । ଚାଷବାସରେ ମନ ଦେଲେ ନାହିଁ । ବୁଢ଼ୀ ଥିଲାବେଳେ ବୋହୂ ଦି'ଟା ମନ ଦେଇ କାମ କରୁଥିଲେ । ବୁଢ଼ୀ ପରେ କିଏ ମାଲିକାଣୀ ହେବ ସେଥିପାଇଁ ଦୁହିଁଙ୍କ ଭିତରେ ମନ ଫଟାଫଟି, କଳି ଝଗଡ଼ାରେ ଘର କମ୍ପିଲା । ସମାଧାନ କରିବାକୁ ଯାଇ ଦୁଇ ପୁଅ ଅଲଗା ହୋଇଗଲେ । ମୋ କଥା ଶୁଣିବାକୁ କେହି ରାଜି ନଥିଲେ । ଘରର ମୁରବିପଣିଆ ମୋଠାରୁ ଛଡ଼େଇ ନେଲେ । ଦୁଇବୋହୂ ପାଳିକରି କିଛି ଦିନ ଖାଇବାକୁ ଦେଲେ । ପରେ ଇଚ୍ଛା ହେଲେ ଦିଅନ୍ତି ନ ହେଲେ ନାହିଁ ।'' ସେ ଧୋତି କାନିରେ ଆଖି ପୋଛିଲେ ।

ଦୀର୍ଘଶ୍ୱାସଟେ ମୋ ଛାତି ଥରାଇ ବାହାରି ଆସିଲା । ସନ୍ତାନମାନେ ବୁଢ଼ା ବାପାମା' ମାନଙ୍କୁ କାହିଁକି ବୋଝ ଭାବନ୍ତି ଯେ ! ସେମାନଙ୍କର କ'ଣ ବାର୍ଦ୍ଧକ୍ୟ ଆସିବନି ନା ସେମାନେ ଏଭଳି ଅବସ୍ଥା ଭୋଗ କରିବେ ନାହିଁ ?

''ଏବେ ବି କ'ଣ...।'' ମୋ ପ୍ରଶ୍ନ ତଣ୍ଟିରେ ଛନ୍ଦି ହୋଇ ଅଧା ରହିଗଲା ।

ସେ ହସିଲେ । ଝରି ପଡ଼ିଲା ଅଜସ୍ର ବେଦନା, ଦୁଃଖ, କାରୁଣ୍ୟ । କହିଲେ - ''ବଞ୍ଚିଥିବା ଯାଏ ଦୁଃଖର ଅନ୍ତ ନାହିଁ । ମରିଗଲେ ମଣିଷ ତରି ଯାଏ ।''

ପଲକହୀନ ପାଣିଚିଆ ଆଖି ଓ ବିବର୍ଣ୍ଣ ମୁହଁ କହୁଥିଲା ତାଙ୍କ ଦୁଃଖଭୋଗର ଦୀର୍ଘ କାବ୍ୟକୁ ।

''ହଁ-ଦୁଃଖର ଅନ୍ତ ହୁଏ ନାହିଁ । ମୋ କଥା ଶୁଣିବେ ବାବୁ ।'' ଅନ୍ୟ ଜଣେ ବୃଦ୍ଧ କହିଲେ ।

''ତାଙ୍କୁ ଚାହିଁ ପଚାରିଲି - '' କୁହନ୍ତୁ ମଉସା, ଦୁଃଖ କହିଦେଲେ ମନ ହାଲ୍କା ହୋଇଯାଏ ।''

''ମୋ ନାଁ ଧରମା । ବାପା ଥରେ ମା'କୁ ନେଇ ପୁରୀ କୋଣାର୍କ ଯାଇଥିଲେ । ସେଇ ବର୍ଷ ମୋ ଜନ୍ମ ହେବାରୁ ବାପା ଅତି ଶ୍ରଦ୍ଧାରେ ମୋ ନାଁ ଧର୍ମପଦ ରଖିଥିଲେ । ହେଲେ ମା' ଡାକେ ଧରମା । ଅନ୍ୟମାନେ ବି ସେଇ ନାଁରେ ଡାକୁଥିଲେ । ଆମର ଚଳନ୍ତି

ଘର ଥିଲା । ମୋ ଜନ୍ମବେଳକୁ ଇଂରେଜ ସରକାର ଶାସନ କରୁଥିଲେ । ପଞ୍ଚମରେ ପଢ଼ିବା ବେଳକୁ ଆମେସବୁ ବାନର ସେନାରେ ଯୋଗଦେଲୁ । ତା'ର ତିନିବର୍ଷ ପରେ ଦେଶ ସ୍ୱାଧୀନ ହେଲା । ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଗୋଟେ ସେବାଶ୍ରମରେ କାମ କଲି । ବାଲ୍ୟବିଧବାକୁ ବିବାହ କରି ଘରକୁ ଆସିବା ମାତ୍ରକେ ଗାଁ, ଜାତି, ସମାଜ ସମସ୍ତେ ମୋତେ ଓ ଆମ ଘରକୁ ବାସନ୍ଦ କଲେ । ବାପା ଦାନ୍ତରେ ତିରଣ ଧରି କ୍ଷମା ପ୍ରାର୍ଥନା କଲେ । ଜାତିଆଣ ଭୋଜି ଓ ଜୋରିମାନା ଦେଇ ଜାତିରେ ପୁଣି ମିଶିଲୁ ।

ପରବର୍ତ୍ତୀ ନିର୍ବାଚନରେ ମୁଁ ପ୍ରାର୍ଥୀ ହୁଏ ବୋଲି ସମସ୍ତେ ଜୋର୍ କରି ମୋତେ ଠିଆ କରାଇଲେ । ଏ ଅଞ୍ଚଳରୁ ଦୁଇଥର ମୁଁ ଜିତିଛି । ଗରିବ ଚାଷୀ ମୂଲିଆଙ୍କ ପାଇଁ ନିଃସ୍ୱାର୍ଥପର ଭାବେ କାମ କରିଛି । ହେଲେ କ'ଣ ପାଇଛି ଜୀବନରେ ? ମୋ ପାଖରେ ଯେଉଁମାନେ କାମ କରୁଥିଲେ ଦେଶମାତୃକା ପାଇଁ ଜୀବନ ଉତ୍ସର୍ଗ କରିବେ ବୋଲି ଶପଥ ନେଇଥିଲେ, ସେଇମାନେ ମୋ ପତନର କାରଣ ହେଲେ । ମୋତେ ଗରିବଙ୍କ ଡକ୍ଷିକଟା, ଦେଶଦ୍ରୋହୀ, ଲାଞ୍ଚୁଆ ଭାବେ ପ୍ରଚାର କରି ମୋ ବିରୁଦ୍ଧରେ ଲୋକଙ୍କୁ ମତାଇ ନିର୍ବାଚନ ବେଳେ ଟଙ୍କା ଲାଞ୍ଚ ଦେଇ ନିର୍ବାଚନରେ ଜିତିଗଲେ ।

ଘରେ ପୁଅଝିଅମାନେ ଅବହେଳା କଲେ । ସେମାନେ ନିଃସ୍ୱାର୍ଥପର ବାପଟିଏ ଅପେକ୍ଷା ଲାଞ୍ଚୁଆ, କ୍ଷମତାଲୋଭୀ ବାପକୁ ପସନ୍ଦ କରୁଥିଲେ । ସେଥିପାଇଁ ମୋତେ ଅଯୋଗ୍ୟ ଆଖ୍ୟା ଦେଲେ । ଅପାରଗ କହି ଅପମାନିତ କଲେ । ଏଇ କୁନ୍ତୀପରାରେ ଦିନେ ଗୋଟେ ବୃଦ୍ଧାଶ୍ରମ ତିଆରି କରିଥିଲି । ସେଇଠିକୁ ଶେଷକାଳ ବିତାଇବାକୁ ଚାଲିଆସିଲି ।''

ଧରମାଙ୍କ କଥା ଶୁଣିବା ମାତ୍ରକେ ଦେହମନ ଜଳି ଉଠି ବିବଶ ହୋଇଗଲା ମୁଠାଏ ନିଥର ପାଉଁଶ ପରି । ଆଖି ଆଗରେ ନାଚିଉଠିଲା । କୋଟିକୋଟି ଭାରତୀୟଙ୍କ ଚେତନାକୁ ସ୍ଥବିର, ଚିନ୍ତାଧାରାକୁ ବିଭ୍ରାନ୍ତ ଓ ହୃଦୟକୁ କଳୁଷିତ କରୁଥିବା ଦୂଷିତ, ନୀତି ବିହୀନ ଅନ୍ଧ ରାଜନୀତି କଥା । ଆହା ! ଦେଶ, ଜାତିର ଉତ୍ସର୍ଗୀକୃତ ଦେଶସେବକମାନେ କ୍ଷମତାଲୋଭୀ, ନୀତିଭ୍ରଷ୍ଟ ସ୍ୱାର୍ଥପର ନେତାଙ୍କ ଦ୍ୱାରା କିଭଳି ପରାଜିତ, ଅବହେଳିତ ହେଉଛନ୍ତି ! ଇଚ୍ଛା ହେଉଥିଲା ଚିତ୍କାର କରି ଆକାଶ ପାତାଳ ଛିନ୍‌ଭିନ୍ କରି ରାଜନୀତି ତଥା ସ୍ୱାର୍ଥପର ନେତାଦଳଙ୍କୁ ଅଭିଶାପ ଦେବାକୁ ।

''ବାକି ରହିଲା ମୋ କଥା ।'' ବୟୋଜ୍ୟେଷ୍ଠ ବୃଦ୍ଧ ମଥା ଟେକି କହିଲେ- ''ମୋ ନାଁ ବ୍ରଜମୋହନ ।'' କ୍ଷଣେ ନୀରବ ଗଲେ ।

''ଜୀବନଟା ଶିକ୍ଷକତାରେ କଟିଗଲା । ପାଞ୍ଚ ପୁଅଝିଅଙ୍କୁ ମଣିଷ କରିବାର କଷ୍ଟ ମୁଁ ଭୋଗ କରିଛି । ପୁଅଝିଅଙ୍କୁ ବାହାଦେଇ ଆମେ ବୁଢ଼ାବୁଢ଼ୀ ଦୁହେଁ ଗାଁର ନଡ଼ାଛପର ଘରେ ଦିନ ବିତାଇଲୁ । ପେନ୍‌ସନ୍ ଟଙ୍କାରେ ଦିନ କଟିଯାଉଥିଲା ।

ଦିନେ ଆସି ପୁଅ କହିଲା - ''ବାପା ! ଏ ଗାଁ ଘର ଓ ଜମିବାଡ଼ି ବିକ୍ରି କରିଦେଇ ଆମେ ସହରରେ ଗୋଟେ କୋଠା କରିବା । ସେଠି ଭଲରେ ସମସ୍ତେ ରହିବା ।''

ତା' ମା' କିଛି ଉତ୍ତର ଦେଲାନି । ନିରୁତ୍ତର ରହିବାର କାରଣ ମୁଁ ବୁଝୁଥିଲି । ମୁଁ ବି ନୀରବ ରହିଲି । ପୁଅ ଗୁଡ଼ାଏ ବିରକ୍ତ ହୋଇ ଆମକୁ ମଫସଲିଆ, ପଛୁଆ ଗାଳି ଦେଇ ଯେମିତି ହେଉ ସହରରେ ଘର ହେବ ବୋଲି ନିଷ୍ପତ୍ତି ଶୁଣାଇ ଦେଇ ଚାଲିଗଲା ।

ସେ ମୋର ଏକମାତ୍ର ପୁଅ ଥିଲା । ତା' ମନରେ ଦୁଃଖ ନ ଦେବାକୁ ତା' ଇଚ୍ଛାନୁଯାୟୀ ବାହା ଦେଇଥିଲି ତା' କଲେଜପଢ଼ା ସାଙ୍ଗ ସହ । ପ୍ରେମ ବିବାହର ଯାହା ପରିଣତି ହୁଏ, ତାହା ଆମେ ଭୋଗିଲୁ । ବିବାହ ପୂର୍ବରୁ ଉପରକୁ ଶାନ୍ତ, ସୁଧୀର ଦିଶୁଥିବା ଝିଅଟି ଆମ ଘରକୁ ବୋହୂ ହୋଇ ଆସିବା ପରେ ରଣଚଣ୍ଡୀ, ଉଦଣ୍ଡୀରେ ପରିଣତ ହୋଇଗଲା । କଥାକଥାକେ ପୁଅକୁ ଶାସନ କରେ । ଦୁହେଁ ଚାକିରି ପାଇ ସହରକୁ ଚାଲିଯିବା ପରେ ଆମେ ଶାନ୍ତିରେ ନିଃଶ୍ୱାସ ମାରିଲୁ । ହେଲେ ପୁଅର ଘର କରିବା ନିଶା ଆମକୁ ବ୍ୟତିବ୍ୟସ୍ତ କରି ପକାଇଲା । ବୋହୂ ପାଖରେ ପୁଅଟା ଚଳିପାରୁନି । ଆମେ କେମିତି ଚଳିବୁ ?

ପୁଅର ଜିଦ୍ ବଢ଼ି ଚାଲିଲା । ବୋହୂ ଆସି ଗାଳିମନ୍ଦ କରେ । ଯେଉଁଦିନ ଘର ବିକ୍ରିର କାଗଜଟା ଆଣି ପୁଅ ବୋହୂ ସାମ୍ନାରେ ରଖିଦେଲେ ତା' ମା' ବେହୋସ ହୋଇଗଲା । ଚେତା ଫେରିଲାନି, ଏକାକୀ କରି ଦେଇ ସେ ଆରପୁରକୁ ଚାଲିଗଲା । ଦାହ ସଂସ୍କାର କରି ଫେରିବା ପରେ ପୁଅ ମୋ ଠାରୁ ଦସ୍ତଖତ କରାଇନେଲା ।

ଜମିବାଡ଼ି, ଘର ବିକ୍ରି ହେବା ପରେ ଅନାବଶ୍ୟକ ବୋଝ ପରି ତାଙ୍କ ଘରେ ଆଶ୍ରା ନେଲି । ପେନସନ୍ ସପ୍ତାହରେ ବୋହୂ ବଡ଼ ଆଦର ଯତ୍ନ କରେ । ଭଲରେ ମୁଠାଏ ବାଢ଼େ । ବାକି ତିନି ସପ୍ତାହ ମୁଁ ମରିଥାଏ କି ବଞ୍ଚିଥାଏ, ଚିନ୍ତା ନଥାଏ । ପେନ୍‌ସନ୍ ଆଣିବା ମାତ୍ରକେ ବୋହୂ ଘରର ବିଭିନ୍ନ ଧାର ଉଧାର କଥା କହି କୌଶଳରେ ସବୁଟଙ୍କା ନେଇଯାଏ ।

କିଛି ମାସ ପରେ ମୋ ଦେହରେ ଗୋଟେ ଆବୁ ବାହାରିଲା । ବେଳେବେଳେ ଭାରି କଷ୍ଟ ହୁଏ । ପୁଅକୁ ମେଡ଼ିକାଲ ଯିବା କଥା କହିଲେ କୁହେ - ''ବୁଢ଼ା ବୟସରେ ଏମିତି ସବୁ ବାହାରେ । ତୁମେ ତ ବୁଢ଼ା ହେଲଣି, ବ୍ୟସ୍ତ କାହିଁକି ହେଉଛ ? ଡାକ୍ତର ମୁଠାମୁଠା ପଇସା ନେବ, କିଏ ଦେବ ଯେ ?''

ମୁଁ ଚୁପ୍ ରହେ । ମନେ ପଡ଼େ ଏଇ ପୁଅକୁ ମାସ ମାସ ଜ୍ୱର ହେଉଥିଲା ବୋଲି ଦି' ମାଣ ଜମି ବିକ୍ରି କରି ସହରରେ ମାସେ ରହି ତାକୁ ଭଲ କରିଥିଲି । ଆବୁରେ ଯନ୍ତ୍ରଣା ବଢ଼ିବାରୁ ଦିନେ ଚୁପଚାପ୍ ମେଡ଼ିକାଲ ଯାଇ ଟେଷ୍ଟ କରାଇଲି । ସପ୍ତାହକ ପରେ ଜାଣିଲି କ୍ୟାନ୍‌ସର । ଅପରେସନ୍ କଥା କହିବାରୁ ବୋହୂ ରାଗିଯାଇ ମୋତେ ଠେଲି ଦେଲା । ପାହଚରୁ ତଳକୁ ପଡ଼ି ଗଲି । ମୁଣ୍ଡରୁ ପ୍ରବଳ ରକ୍ତସ୍ରାବ ହେଲା ଓ ଚେତା ହରାଇଲି । ଦେଖନ୍ତୁ କପାଳରେ କେତେ ବଡ଼ କ୍ଷତଦାଗ ।'' କହି ନିଜ କପାଳକୁ ଆଉଁସି ପକାଇଲେ ।

ମୋ ଆଖିରୁ ଲୁହ ଝରି ପଡ଼ିଲା । ଆହା - ସନ୍ତାନମାନଙ୍କ ବ୍ୟବହାର କେତେ ନିଷ୍ଠୁର ! ପିତାମାତାଙ୍କୁ ବୋଝ ଭାବି ହତାଦର କରୁଛନ୍ତି ।

''ଏବେ କେଉଁଠି ରହୁଛନ୍ତି ?'' ନିଜ କୋହ ଚାପି ନେଇ ପ୍ରଶ୍ନ କଲି ।

''ସେମାନଙ୍କ ପାଖରେ ନାହିଁ ।'' ଉଦାସ କଣ୍ଠରେ ଉତ୍ତର ଦେଲେ ସେ ।

''ତେବେ ଏଇ ମଉସାଙ୍କ ସହ କ'ଣ ବୃଦ୍ଧାଶ୍ରମରେ ରହୁଛନ୍ତି ?'' ପଚାରିଲି ।

''ଈଶ୍ୱରଙ୍କ ରାଜ୍ୟରେ ସେଭଳି ପରମଶାନ୍ତି ସ୍ଥଳ କାହିଁ । ବେଶ୍ ଶାନ୍ତିରେ ଅଛୁ ।'' ବିଷଣ୍ଣତା କ୍ରମଶଃ କଟିଗଲା ପରି ଜଣାଗଲା ।

ବେକଭାଙ୍ଗି ଦୂରକୁ ଚାହିଁଲି । ସୂର୍ଯ୍ୟୋଦୟ ହେବାର ସୂଚନା ମିଳିଲା ରକ୍ତିମ ଆଭାରୁ । କହିଲି - ''ମଉସା, ଆପଣମାନେ ଗପସପ ହୁଅନ୍ତୁ । ଆଜି ଶୀଘ୍ର ଅଫିସ୍ ଯିବାକୁ ହେବ । ମୋତେ ବିଦାୟ ଦିଅନ୍ତୁ ।''

ସେମାନେ ଅପଲକ ନୟନରେ ଚାହିଁ ସ୍ମିତ ହସିଲେ । ମୁଁ ବିଦାୟ ନେଇ ପୂର୍ବ ରାସ୍ତାରେ ଫେରିଲି । ସେଦିନ ରାତିରେ ମୋତେ ଠିକ୍‌ରେ ନିଦ ହେଲା ନାହିଁ । ଠିକ୍ କଲି ଯେତେ ଟଙ୍କା ଲାଗୁ ପଛେ ତାଙ୍କର ଅପରେସନ କରାଇବି । ମୋ ସାନଭାଇଟି ଡାକ୍ତର । ସେ ମଧ୍ୟ ଯଥେଷ୍ଟ ସାହାଯ୍ୟ କରିବ ।

ତା' ପରଦିନ ଭୋରରୁ ଉଠି ମର୍ଣ୍ଣିଂୱାକ୍‌ରେ ବାହାରି ପଡ଼ିଲି । ଦେଖିଲି ସେମାନେ ପୂର୍ବଭଳି ବସି ଗପସପ ହେଉଛନ୍ତି । ମୋତେ ଦେଖିବା ମାତ୍ରକେ ହସି ହସି ହାତ ଠାରି ପାଖକୁ ଡାକିଲେ । ମୁଁ ସାମାନ୍ୟ ଦୌଡ଼ି ଦୌଡ଼ି ତାଙ୍କ ପାଖରେ ପହଞ୍ଚି ବସିପଡ଼ିଲି ।

ପଚାରିଲି - ''କେମିତି ଅଛନ୍ତି, ଆପଣମାନେ ? ମଉସାଙ୍କ ଆବୁ ଅପରେସନ ମୁଁ କଟକରେ କରାଇବି । ମୋ ସାନଭାଇଟି ଡାକ୍ତର । କିଛି ଅସୁବିଧା ହେବନି । କାଲି ଶନିବାର । ମଉସାଙ୍କୁ ନେଇ ରବିବାର ସକାଳୁ ବାହାରି ଯିବି । ଆପଣମାନେ ଚାହିଁଲେ ସାଙ୍ଗରେ ମଧ୍ୟ ଯିବେ ।''

''ପୁଅ ! ଏ ବୁଢ଼ା ବୟସରେ ଆଉ କି ଅପରେସନ ଯେ ? ଆଉ ବା କେତେ କାଳ ଆମ ଭାଗ୍ୟରେ ଅଛି ?'' ଉଦାସିଆ ସ୍ୱର ଆମ ଚାରିପଟକୁ ଭାରି କରିପକାଇଲା ।

''କେବେ ଦିନେ ମରିବା ବୋଲି ଆଜି ଠାରୁ କନ୍ଥା ଘୋଡ଼ି ହୋଇ ମଶାଣିରେ ଶୋଇବା କି, ମଉସା ? ମନା କରନ୍ତୁନି । ଅପରେସନ ପରେ ଆପଣ ସଂପୂର୍ଣ୍ଣ ସୁସ୍ଥ ହୋଇଯିବେ ।'' ତାଙ୍କୁ ବୁଝାଇବାକୁ ଚେଷ୍ଟା କଲି ।

ସେ ନୀରବରେ ହସିଲେ । କ୍ଷଣକ ପାଇଁ ସେ ହସ ଅତି ଦୁର୍ବୋଧ ଭଳି ମନେ ହେଲା । ମୁଁ ସେମାନଙ୍କ ଠାରୁ ବିଦାୟ ନେଲି ।

ଶନିବାର ଦିନ ରାତିରେ ବ୍ରିଫ୍‌କେଶ୍ ସଜାଡ଼ିଲି । ସାନଭାଇକୁ ଫୋନ୍ କରି ସବୁ କଥା ଜଣାଇଦେଲି । ଦିବାକରକୁ ପାଖକୁ ଡାକି ପଚାରିଲି - ''ଆଚ୍ଛା, କୁନ୍ତୀପରାରେ ଗୋଟେ ବୃଦ୍ଧାଶ୍ରମ ଅଛି ନା ?''

''ହଁ - ବାବୁ । ତାକୁ ପରା ଧରମା ମଉସା ତିଆରି କରିଥିଲେ । ତାଙ୍କ ପରି ଦେବତା ମଣିଷ ଏ ଅଞ୍ଚଳରେ କେହି ନାହାନ୍ତି ।' ଦିବାକର ଅତି ଆଗ୍ରହରେ ଉତ୍ତର ଦେଲା ।

''କାଲି ସକାଳୁ ଆମେ ସେଠିକୁ ଯିବା । ତୁମେ ଘରୁ ଶୀଘ୍ର ଆସିବ ।''

''କାମ କିଛି ଅଛି କି ?'' ଦୋଦୋପାଞ୍ଚ ହୋଇ ସେ ପଚାରିଲା ।

''ବ୍ରଜ ମଉସାଙ୍କ ଅପରେସନ୍ ପାଇଁ ତାଙ୍କୁ କଟକ ନେବି ବୋଲି ଠିକ୍ କରିଚି । ଗତକାଲି ସକାଳେ ତାଙ୍କୁ କହିଥିଲି । ସାଙ୍ଗରେ ଧରମା ମଉସା ଓ ଶୁକ୍ରୁ ମଉସା ମଧ୍ୟ ଯିବେ ।'' ଆଖିରୁ ଚଷମା ପୋଛି ନେଇ କହିଲି ।

ଦିବାକର ମୋ କଥା ଶୁଣୁଶୁଣୁ ଥରିଥରି ଭୂମି ଉପରେ କଚାଡ଼ି ହୋଇପଡ଼ିଲା । ଆଁ କରି ବଡ଼ବଡ଼ ଆଖିରେ ମୋତେ ଚାହିଁଲା ।

"ଦିବାକର, ତୁମର କ'ଣ ହେଲା ? ଦେହ ଠିକ୍ ଅଛି ତ ?" ମୁଁ ବ୍ୟସ୍ତ ହୋଇ ତା' ପାଖରେ ବସିପଡ଼ିଲି ।

ସେ ସମସ୍ତ ସାହସ ସଞ୍ଚୟ କରି ପ୍ରଚଣ୍ଡ ରଡ଼ିଟେ କଲା, ଯେଉଁଥିରେ କେବଳ ମୁଁ ନୁହେଁ ବରଂ ସେଠାକାର ସାହିପଡ଼ିଶାମାନେ ଶୁଣିବା ମାତ୍ରକେ ଆତଙ୍କିତ ହୋଇ ଅଗଣାରେ ଜମା ହୋଇଗଲେ ।

"କ'ଣ ହେଲା ଦିବାକର ?" ସମସ୍ତେ ବ୍ୟସ୍ତ ହୋଇ ପ୍ରଶ୍ନ କଲେ ।

"ଭୂତ ।" ଏତିକି କହି ସେ ଚେତା ହରାଇଲା ।

"ଭୂତ କାହିଁ ??" ମୁଁ ଆଶ୍ଚର୍ଯ୍ୟ ହୋଇ ଉଠିଲି ।

"ଦିବାକର ମୁହଁରେ ପାଣିଛାଟି ତାକୁ ହୋସ୍‌କୁ ଆଣିଲୁ । ପଚାରିଲି- "ଆରେ, ଭୂତ କେଉଁଠୁ ଆସିଲା ?"

"ବାବୁ, ଆପଣ ଯାହାଙ୍କ ସହିତ କଥା ହେଉଥିଲେ ଓ ଯାହାଙ୍କର ଅପରେସନ ପାଇଁ ବ୍ୟସ୍ତ ହୋଇ କଟକ ନେବେ ବୋଲି ଠିକ୍ କରିଛନ୍ତି, ସେ ଚାରିପାଞ୍ଚ ବର୍ଷ ପୂର୍ବରୁ ମରିଯାଇଛନ୍ତି । ଅନ୍ୟ ଦୁଇଜଣ ମଧ୍ୟ କେତେ ପୂର୍ବରୁ ସ୍ୱର୍ଗବାସୀ ହୋଇଛନ୍ତି ।" ଆଖି ତରାଟି ଦିବାକର କହିଲା ।

"ହେଲେ..." ମୋ କଥା ଅଧା ରହିଲା । ଲୋମମୂଳ ଟାଙ୍କୁରି ଉଠିଲା ।

"ବାବୁ, ସେଇଟା ଗୋଟେ ସମାଧି ଜାଗା । ନ ଜାଣି ସେପଟେ ମର୍ଣ୍ଣିଓ୍ୱାକ୍‌ରେ ଯାଇ ସେମାନଙ୍କୁ ଭେଟିଛ । ଆଉ ଯିବ ନାହିଁ ସେଠିକି ।" ମୁରବୀଟିଏ ପରି ଦିବାକର ଚେତାଇ ଦେଲା ।

ରାତିରେ ଆଉ ଖାଇପାରିଲିନି । ଆଖି ଆଗରେ ନାଚିଉଠିଲା ତିନି ବୃଦ୍ଧଙ୍କର ଉଦାସିଆ ମୁହଁ, ପ୍ରତିଧ୍ୱନିତ ହେଲା ସେମାନଙ୍କ ବେଦନାଭରା ଜୀବନକାହାଣୀ ।

ସକାଳ ହେବାପୂର୍ବରୁ ନିଦ ଭାଙ୍ଗିଗଲା । ମର୍ଣ୍ଣିଂଓ୍ୱାକ୍‌ରେ ପୂର୍ବପରି ସେଇ ରାସ୍ତାରେ ବାହାରିଲି । ଯିବା ପୂର୍ବରୁ ତୋଳିଲି ତିନୋଟି ସଦ୍ୟ ପ୍ରସ୍ଫୁଟିତ ରକ୍ତ ଗୋଲାପ । ପୂର୍ବୋକ୍ତ ସ୍ଥାନରେ ପହଞ୍ଚି ଦେଖିଲି କେହି ନଥିଲେ । ବରଂ ସେମାନେ ଯେଉଁଠାରେ ବସନ୍ତି, ସେଠାରେ ଥିଲା ତିନୋଟି ବିବର୍ଣ୍ଣ ସମାଧି । ଉପରେ ଲଦି ହୋଇଥିଲା ଝରାପତ୍ର ଓ ଝରା ଶାଳଫୁଲର ଶୁଖିଲା ଆସ୍ତରଣ । ପାଖକୁ ଯାଇ ହାତରେ ସଫା କଲି ପତ୍ରମାନଙ୍କୁ ଓ ପକେଟ୍‌ରୁ ଫୁଲ ତିନୋଟିକୁ ବାହାର କରି ପ୍ରତି ସମାଧି ଉପରେ ଗୋଟିଏ ଗୋଟିଏ କରି ରଖିଲି । ଆଖି ବନ୍ଦ କରି ସେମାନଙ୍କ ଅଶାନ୍ତ ଦୁଃଖୀ ଆତ୍ମାର ସଦ୍‌ଗତି କାମନା କଲି ।

ଅଚାନକ ଅନୁଭବ କଲି ସ୍ନେହଭରା କେତୋଟି ସାମାନ୍ୟ ହାଡୁଆ ହାତ ମୋ ମଥା ସ୍ପର୍ଶ କରୁଛନ୍ତି । ନୀରବରେ ସେଇ ସ୍ପର୍ଶକୁ ଅନୁଭବ କରିବାକୁ ଲାଗିଲି ।

---

'ବର୍ଷା, ପକ୍ଷୀ ଓ ସ୍ୱପ୍ନ' ସାହିତ୍ୟ ଅକାଦେମିର 'ନବୋଦୟ' ଯୋଜନା ଆନୁକୂଲ୍ୟରେ ପ୍ରକାଶିତ । ଅଧ୍ୟାପିକା ସୁପ୍ରିୟା ପାଲ ଏହାର ସ୍ରଷ୍ଟା । ସୁପ୍ରିୟା ପାଲ ଓଡ଼ିଆ ସାହିତ୍ୟର ନବପ୍ରଜନ୍ମର ଶକ୍ତିଶାଳୀ କଥାଶିଳ୍ପୀ । ତାଙ୍କର ଗଳ୍ପଗୁଡ଼ିକ ଭବିଷ୍ୟତର ଅଜସ୍ର ସମ୍ଭାବନାରେ ପରିପୂର୍ଣ୍ଣ । ଜୀବନର ଅନେକ ରଂଗରାଗରେ ଏହି ଗଳ୍ପଗୁଡ଼ିକ ଜୀବନ୍ତ । ଏହି ସଂକଳନରେ ବାରଗୋଟି ଗଳ୍ପ ସ୍ଥାନିତ । ପ୍ରଥମ ଗଳ୍ପ 'ବର୍ଷା, ପକ୍ଷୀ ଓ ସ୍ୱପ୍ନ'ର ନାମ ଅନୁସାରେ ସଂକଳନଟିର ନାମକରଣ କରାଯାଇଛି । ଏହି ଗଳ୍ପ ୧୯୯୩ରେ ଦୈନିକ 'ସମ୍ବାଦ'ର ଗଳ୍ପ ପ୍ରତିଯୋଗିତାରେ ପ୍ରଥମ ହୋଇ ପୁରସ୍କୃତ ହୋଇଥିଲା ।

ଏ ସଂକଳନର ଅଧିକାଂଶ ଗଳ୍ପ ପ୍ରଥମ ପୁରୁଷରେ ରଚିତ । ଲେଖିକା ବିଦେଶର ପୃଷ୍ଠଭୂମିରେ ମଧ୍ୟ ଗଳ୍ପ ଲେଖିବାର ପ୍ରୟାସ କରିଛନ୍ତି । ବୟସର ଅସହାୟତା, ଶିଶୁର ମନସ୍ତତ୍ତ୍ୱ, ରୁଗ୍ଣ, ଦରିଦ୍ର ଓ ଅସହାୟର ଚିନ୍ତା ସହିତ ଧନୀର ଆଡ଼ମ୍ବର, ମିଥ୍ୟା ଆଡ଼ମ୍ବରପୂର୍ଣ୍ଣ ଜୀବନର ଅନ୍ତସାରଶୂନ୍ୟତା ଇତ୍ୟାଦିକୁ ଖୁବ୍ ସନ୍ତର୍ପଣରେ ରୂପ ଦେଇଛନ୍ତି । ତାଙ୍କ କଲମରୁ ଓଡ଼ିଆ ସାହିତ୍ୟ ଅନେକ ଗୁଣାତ୍ମକ ଗଳ୍ପ ଆଶା କରୁଛି । ବୃତ୍ତିରେ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପନା କରୁଥିବା ସୁପ୍ରିୟାଙ୍କ ଏହି ନିର୍ବାଚିତ ଗଳ୍ପଗୁଡ଼ିକରୁ ପାଠକେ ତାଙ୍କ ଗଳ୍ପମାନସକୁ ଚିହ୍ନିବାର ସୁଯୋଗ ଅବଶ୍ୟ ପାଇବେ ।

ପ୍ରଚ୍ଛଦ : ରାଜେଶ ନାୟକ

ମୂଲ୍ୟ : ୮୦ ଟଙ୍କା
ISBN : 81-260-2456-9